ମହାଯାତ୍ରା
ସରୋଜିନୀ ସାହୁ

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଭୌମ ନଗର
ଭୁବନେଶ୍ୱର - ୭୫୧ ୦୦୧

ପ୍ରଥମ ପ୍ରକାଶ
୨୦୦୧

ପ୍ରଚ୍ଛଦ
ଅସୀମ ବସୁ

ଟାଇପ ସେଟିଂ
ସ୍ପେକ୍‌ଟ୍ରମ୍ ପ୍ରିଣ୍ଟର୍ସ
୭୧ ଏ, ଫରେଷ୍ଟ ପାର୍କ୍
ଭୁବନେଶ୍ୱର - ୭୫୧୦୦୯

ମୁଦ୍ରଣ
ଶୋଭନ୍
ଆଚାର୍ଯ୍ୟବିହାର
ଭୁବନେଶ୍ୱର

ପଞ୍ଚସ୍ତରୀ ଟଙ୍କା ମାତ୍ର

**Mahajatra**
by
**Sarojini Sahoo**

Published by
**LARK BOOKS**
Subarnarekha Chambers
Bhauma Nagar
Bhubaneswar -751 001

First Edition
2001

Cover
Asim Basu

Type Setting
**Spectrum Printers**
71A, Forest Park
Bhubaneswar-751009

Printing by
**Shovan**
Acharya Vihar
Bhubaneswar

Rupees Seventyfive only

ISBN - 81-7375-095-5

# ମହାଯାତ୍ରା

ଆଖି ଧାଇଁ ଯାଉଥିବା ସମସ୍ତ ଇଲାକା ବ୍ୟାପୀ ରହିଥିଲା ସବୁଜ ଶ୍ୟାମଳିମା । ବିସ୍ତୀର୍ଣ୍ଣ ସମତଳ ଭୂଇଁ ଗୋଟେ ସରଳ ଶିଶୁର ନିଷ୍କପଟ ମନ ପରି ମନେ ହେଉଥିଲା । ବସ୍ ସଙ୍ଗେ ତାଳ ଦେଇ ଧାଇଁ ଯାଉଥିଲା ପ୍ରକୃତି ଯେମିତି । ଆଖି ପିଛୁଳାକେ ମୟୂର ଦିଟା ପୁଚ୍ଛ ମେଲେଇ ଖେଳୁଥିବାର ସେ ଦେଖି ପାରିଲେ । ବସ୍‌ର ଝରକାରୁ ଡେଇଁ ପଡ଼ି ଛୋଟ ପିଲାଟେ ପରି ମୟୂର ପଛେ ପଛେ ସେ ଧାଇଁ ଯାଆନ୍ତେ କି ! ହଳଦିଆ ରଂଗର ସୋରିଷ ଫୁଲର କିଆରୀର କଡ଼ ଦେଇ ଚାଲିଗଲା ବସ୍ । ଛାତରେ ମେଞ୍ଚେ ହଳଦିଆ ଫୁଲ ଗୁଞ୍ଜି ହେଇଗଲା ଯେମିତି । କ୍ରମଶଃ ପ୍ରକୃତି ସହ ଏକାତ୍ମ ହେଇ ଯାଉଥିଲେ ସେ । ଜୀବନଟା ହଳଦିଆ ସୋରିଷ ଫୁଲ ପରି, ମୟୂର ପୁଚ୍ଛ ପରି ସୁନ୍ଦର ମନେ ହେଉଥିଲା । ସବୁ କିଛି ପୁରୁଣା କଥା ବିସ୍ମୃତ ହେଇ ଯାଉଥିଲେ ସେ । ସରି ଆସୁଥିବା ସିଗାରେଟ୍‌ର ଶେଷ ଦମକା ପରି ଅବଶିଷ୍ଟ ରହିଥିଲା ଜୀବନ ।

ସେ ଆଶ୍ଚର୍ଯ୍ୟ ହେଉଥିଲେ, ଏତେଥର ଆସିଛନ୍ତି ସେ ଏଇ ରାସ୍ତାରେ । ସମତଳ ଭୂଇଁର ବୁକୁ ଚିରି, କେତେଥର ସେ ଧାଇଁ ଆସିଛନ୍ତି ଦିଲ୍ଲୀ, ଜୟପୁର, ଚଣ୍ଡିଗଡ଼, ହିମାଚଳ, ଉତ୍ତରାଖଣ୍ଡ ଆହୁରି କେଉଁଆଡ଼େ କେତେ କାମରେ । କୌଣସି ଥର କେମିତି ତାଙ୍କ ଦୃଷ୍ଟିରେ ପଡ଼ିନି ପ୍ରକୃତିର ଏଇ ଅପରୂପ ସୌନ୍ଦର୍ଯ୍ୟ ? ସେତେବେଳେ କଣ ଏମିତି ସୁନ୍ଦର ନଥିଲା ପୃଥିବୀ ? ଅଥବା ନିଦ୍ରା ଭିତରେ କଟେଇ ଦେଇଥିଲେ ସେ ପୁରାଟା ଜୀବନ ? ହୁଏତ ଏଥର ସେ ନ ଆସିଥିଲେ, ଏମିତି ନିଦ ନିଦରେ ହିଁ ପାର୍ ହୋଇ ଯାଇଥାନ୍ତା ପରା ଅବଶିଷ୍ଟ ଆୟୁଷତକ । ଯେଉଁ ନିଦରେ କେବଳ ଜୀବନର ଅସଂଗତ ଛିଣ୍ଡା ଛିଣ୍ଡା ସ୍ୱପ୍ନ ଛଡ଼ା ଆଉ କିଛି ଆସେ ନାହିଁ ବା ଆସି ନଥାନ୍ତା । ଅନ୍ୟମନସ୍କ ଭାବରେ କାଣି ଆଙ୍ଗୁଠିର ନଖ ନିଶୋଉ ଛିଣ୍ଡୋଉ ଦସିଟିଏ ଟାଣି ନେଇଥିଲେ ସେ ଦାନ୍ତରେ । ସ୍ୱାଭାବିକ ଯନ୍ତ୍ରଣାରେ ଉଃ ବୋଲି ଶବ୍ଦଟିଏ ବାହାରି ଆସିଥିଲା ତାଙ୍କ ମୁହଁରୁ । ସେ ବୁଝିପାରିଲେ ସେ ସ୍ୱପ୍ନ ଦେଖୁ ନାହାନ୍ତି । ଏମିତି ଅନେକ କିଛି ଅଦେଖା ରହିଯାଇଛି ଜୀବନରେ । ବାଲ୍ୟକାଳଟା ଆଦର୍ଶ ଓ ଅନୁଶାସନରେ ବିତିଥିଲା ତାଙ୍କର । ଚାରିକାନ୍ଥ ବାହାରର ମୁକ୍ତ ଜୀବନ ସହ ସେ ଥିଲେ ସଂପର୍କହୀନ । ସ୍କୁଲରେ ମାର୍‌ପିଟ୍ କରି ଦିଟା କେସ୍ ଆଣି ନାହାନ୍ତି କେବେ କି ଆଡ୍‌ଭେଞ୍ଚରରେ ବାହାରି ପାହାଡ଼ ଚଢ଼ି ନାହାନ୍ତି । ଏତେ ସୁସଜ୍ଜିତ ଓ ଆକଟ କଟକଣା ଭିତରେ ସେ ବଢ଼ିଥିଲେ ଯେ ପିଲାଦିନେ, ଭାବୁଥିଲେ ସେ ଅଲଗା ଅନ୍ୟ

ସବୁ ଝିଅଙ୍କ ଅପେକ୍ଷା ଅଧିକ ମାର୍ଜିତ ଓ ସଭ୍ୟ । ଟିକିଏ ବଡ଼ ହେଲା ପରେ ପିଞ୍ଜରାବଦ୍ଧ ପକ୍ଷୀପରି ଲାଗିଲା ତାଙ୍କୁ ଜୀବନଟା । କେବଳ ପିଞ୍ଜରା ଭିତରେ ଡେଣା ପିଟି ପର ଛିଣ୍ଡେଇବା ଛଡ଼ା, ଅନ୍ୟ କିଛି କରି ପାରିନଥିଲେ । ବାହାରକୁ ବାହାରି ଆସି, ନୀଳ ଆକାଶ ପାର୍ ହେଇ କ୍ଷିଶଜ ଛୁଇଁବା ଭଳି ସାହସ ତାଙ୍କର ନଥିଲା । ତାଙ୍କର ଭିତରର ବିଦ୍ୟାର୍ଥୀଟି ଜୀଇଁଲା ବେଳେ କିଶୋରଟି ମରି ମରି ଯାଉଥିଲା । କିଛି ପରିମାଣର ସ୍ୱାଧିନତା ତାଙ୍କୁ ମିଳିଥିଲା ଏମ୍.ଏ. କଲାବେଳକୁ । ଘରଠୁଁ ଯଥେଷ୍ଟ ଦୂରରେ ବାପାଙ୍କର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଚାହାଣିଠୁଁ ଜାଣି ଦୂରରେ ରହି ଲାଗୁଥିଲା ଜୀବନଟା ଖୋଲା ପଡ଼ିଆଟେ ପାଲଟି ଯାଇଛି ପରା । କିନ୍ତୁ ମନଇଚ୍ଛା ଖର୍ଚ୍ଚ କଲା ଭଳି ଟଙ୍କା ପଠାଉନଥିଲେ ବାପା । ତାଛଡ଼ା କୌଣସି ନିୟମ ବର୍ହିଭୂତ କାମଟିଏ କଲାବେଳେ ତାଙ୍କର ମନେ ହେଉଥିଲା ସତେ ଯେମିତି ବାପାଙ୍କର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଆଖି ଦିଟି ତିରସ୍କାର କରୁଛି । ଏତେଦିନ ଧରି କଟକଣା ଭିତରେ ଜୀଇଁ ଆସିଥିବାରୁ ହଠାତ୍ ଶୃଙ୍ଖଳ କାଟି ବାହାରିବା ବେଳେ ବିବେକର ଦଂଶନ ସହିବାକୁ ପଡୁଥିଲା । ବିଭାଜିତ ବ୍ୟକ୍ତିର ଲଢ଼େଇ ଭଳି ଲଢ଼ିବାକୁ ପଡୁଥିଲା ପ୍ରତିଟି ଇଚ୍ଛା ଅନିଚ୍ଛା ପାଇଁ ।

ଏବେ ଜୀବନ ସରି ଆସୁଛି । ବୃନ୍ତଚ୍ୟୁତ ହେବା ବେଳରେ, ପୁଣି ଗଛରେ ଲଟକି ରହି, ପୁଣି ଥିରି ଥିରି ପବନର ଦୋଳିରେ ଝୁଲିବାର ଆଶା କରିବା କେବଳ ନିର୍ବୋଧତା । ଏମିତି ଅଙ୍କବନ୍ତି ଭାବନା ଭିତରେ ଯେତେବେଳେ ସେ ବୁଡ଼ି ଯାଇଥିଲେ, ବସ୍‌ର ଚକା ଖାଲ ଭିତରକୁ ପଶିଯାଇ ଦୋହଲି ଯାଇଥିଲା ଜୋର୍‌ରେ । ଡ୍ରାଇଭରଟି ଅନୁଭବି ଡ୍ରାଇଭର୍ ହେଇଥିବାରୁ ବେଶ ସନ୍ତର୍ପଣରେ ବସ୍‌ଟିକୁ ସମତଳ ରାସ୍ତାକୁ ଉଠେଇ ଆଣିଥିଲା ପୁଣିଥରେ । ତଥାପି ଲୋକଙ୍କ ଉଃ, ଆଃ ଚିତ୍କାର ଓ ଅଭିଯୋଗ ଶୁଣିବାକୁ ପଡ଼ିଥିଲା ତାକୁ । ବସ୍ ଭିତରେ ଥିବା ନବେ ଭାଗ ଯାତ୍ରୀ ଥିଲେ ପଚାଶୋତ୍ତୀର୍ଣ୍ଣ । ତେଣୁ ମାନସିକ ବାର୍ଦ୍ଧକ୍ୟଗ୍ରସ୍ତ ତ ଜରୁର୍ । ଶର୍ମିଷ୍ଠା ଖୁବ୍ ବଡ଼ ପାଟିରେ ଗାଳି ଦେଉଥିଲା ଡ୍ରାଇଭର୍‌କୁ । ଏମିତି ଗୋଟେ ଡ୍ରାଇଭର୍‌କୁ ରଖିଛନ୍ତି ଯେ ଗାଡ଼ି ଚଳେଇ ଜାଣିନାହିଁ । ତୀର୍ଥଯାତ୍ରୀ ବସ୍‌ରେ ଭଲ ଡ୍ରାଇଭର୍ ରଖିବା ଉଚିତ୍ । ଥରଟେ ପାଇଁ ଭଜନ କ୍ୟାସେଟ୍ ଲଗେଇ ଦେଇ, ତା ପରଠୁ ଫିଲ୍ମିଗୀତର କ୍ୟାସେଟ୍ ବଜେଇ ଚାଲିଛି । ସତେ ଯେମିତି ଏ ଗାଡ଼ିରେ ତୀର୍ଥଯାତ୍ରୀ ଯାଉ ନାହାନ୍ତି ଯେ ହନିମୁନ୍ ଯୋଡ଼ି ଯାଉଛନ୍ତି । ଶର୍ମିଷ୍ଠା ବଡ଼ ପାଟି କରି ଡ୍ରାଇଭର୍‌କୁ ଡାକିଥିଲା, ଓ ଡ୍ରାଇଭର୍ ବାବୁ ଦେଖିକରି ଚଲାଅ । ମୋ ପଞ୍ଚସ୍ତରୀ ବର୍ଷ ବୟସର ବୁଢ଼ାବାପାଙ୍କ କଥା ଟିକିଏ ଭାବ । ବୁଢ଼ା ଲୋକ, ରାସ୍ତାରେ କିଛି ହେଇଗଲେ ମୁଁ କଣ କରିବି ? ମୁଁ ପୁଣି ଏକୁଟିଆ ସ୍ତ୍ରୀ ଲୋକଟା । ସହଜେ ମୋ ଆଖିକୁ ଭଲ ଦେଖାଯାଉ ନାହିଁ । ନୂଆ ଜାଗାରେ ମୁଁ

କାହାକୁ ସାହାଯ୍ୟ ମାଗିବି ? ବାପାଙ୍କର ସେଥର ହାର୍ଟଆଟାକ୍ ହେଲା, ଭାଗ୍ୟକୁ ଘର ଭିତରେ ହେଲା ବୋଲି ସିନା ସଙ୍ଗେ ସଙ୍ଗେ ତାଙ୍କୁ ହସ୍ପିଟାଲକୁ ନେଇଗଲୁ । ମୋ ବାପାଙ୍କର କିଛି ହେଇଗଲେ ମୋର କ୍ଷତି ହେବ ସିନା ଆଉ କାହାର କଣ ଯାଉଛି ଯେ ? ମେଜର ଦାସ ବଡ଼ ଅସହାୟ ଭାବେ ଚାହିଁଥିଲେ ଶର୍ମିଷ୍ଠାକୁ । ଶର୍ମିଷ୍ଠାକୁ କେମିତି ଚୁପ୍ କରେଇ ହେବ ସେଇକଥା ହିଁ ବୋଧହୁଏ ଭାବୁଥିଲେ । ଆହା ବିଚରା ଦାସ, କଣ କରିବ ଆଉ, ଭାବିଥିଲେ ବରୁଣ । ଅବଶ୍ୟ ବସ୍‌ର ଏଇ ଧକଡ଼ ଚକଡ଼ରେ ତାଙ୍କ ଅଣ୍ଟାଟା ମଧ ଯନ୍ତ୍ରଣାରେ ରଟ୍‌ରଟ୍ କରୁଥିଲା । ସତେ ଯେମିତି କେହି ପଂଝା ମେଲେଇ ଜାବୁଡ଼ି ଧରିଛି । ବାର୍ଦ୍ଧକ୍ୟ ଏମିତି ଧିରେ ଧିରେ ଓହ୍ଲେଇ ଆସେ ବୁଝି ହୁଏନା ଆଦୌ । ଯଦିଓ ତାଙ୍କୁ ଦେଖିଲେ ତାଙ୍କ ବୟସ କେତେ ବୋଲି ଜଣା ହୁଏନା । ତାଙ୍କ ଯୁବ ସୁଲଭ ଚାଲିଚଳଣ ଓ ସପ୍ରତିଭତା ଦେଖିଲେ ପଚାଶରୁ ଉର୍ଦ୍ଧ୍ୱ ବୋଲି କେହି କହିବ ନାହିଁ । କିନ୍ତୁ ଥରେ ଅଣ୍ଟା ବ୍ୟଥା ବାହାରିଲେ, ହୁଏତ ତାଙ୍କୁ ଯାତ୍ରା ରୋକି ଦେବାକୁ ପଡ଼ିବ ଅଥବା ଘରକୁ ଲେଉଟି ଆସିବାକୁ ପଡ଼ିବ । ଅବଶ୍ୟ ତାଙ୍କ ପାଖରେ ଚୁମ୍ବକ ଚିକିତ୍ସା ପଦ୍ଧତିର କମର ବେଲ୍ଟଟିଏ ଅଛି ଯାହା ବାନ୍ଧିଲେ, ଅନେକ ପରିମାଣରେ ଯନ୍ତ୍ରଣା ଉପଶମ ହେଇଥାଏ । ଆସିବାବେଳେ ସେ ଖଣ୍ଡକ ମଧ ସୁଟ୍‌କେସ୍‌ରେ ଧରିଥିଲେ ସେ । କିନ୍ତୁ ସୁଟ୍‌କେସ୍‌ଟି ଏବେ ବସ୍‌ର ଛାତରେ ବନ୍ଧା ହେଇ ରହିଛି । ବସ୍ ନରହିବା ଯାଏ କିଛି କରିହେବ ନାହିଁ ।

ତାଙ୍କର ମନେ ପଡ଼ିଯାଇଥିଲା, ଘରୁ ବାହାରିବା ବେଳେ, ଜିନିଷପତ୍ର ସଜାଡ଼ିବାକୁ ପଡ଼ିଥିଲା । ସେ ଜିନିଷ ସଜାଡ଼ିବା ବେଳେ, ବୈଶାଳୀର ସେ କି ହସ । ବେଶ୍ ଯତ୍ନରେ ସବୁକିଛି ସଜାଡ଼ିଥିଲେ ସେ ବାକ୍ସରେ । ବାହାରକୁ ବାହାରିଲେ ଯାହା ଯାହା ଲୋଡ଼ା ଓ ନେଇ ହେବ ପ୍ରଥମେ ସେ ସବୁର ତାଲିକାଟିଏ କରିଥିଲେ । ବୈଶାଳୀ ତାଲିକାଟି ପଢ଼ି ହସି ହସି ଗଡ଼ି ଯାଇଥିଲା । ସତେ ଯେମିତି କୁଳୁ କୁଳୁ ଝରଣାଟେ, ପଥର ଚଟାଣରେ ନାଚି ନାଚି ଗଡ଼ି ଯାଉଛି । ବଡ଼ ଅପ୍ରସ୍ତୁତ ହେଇ ଯାଇଥିଲେ ସେ ତା ହସରେ । ସେ ବେଶ୍ ସନ୍ତର୍ପଣରେ ଲକ୍ଷ୍ୟ କରିଥିଲେ ସେ ହସରେ ବିଦ୍ରୁପ ଅଛି କି ନାହିଁ ? ବୈଶାଳୀ ହସି ହସି ଛାତି ପେଟ ଚାପି ଧରୁଥିଲା । ବହୁ ସମୟ ପରେ ଥମିଥିଲା ତା ହସର ଝଡ଼ । କହିଥିଲା, ବୁଢ଼ା ହେଇଗଲେ ମଣିଷ ପ୍ରକୃତି ଏମିତି ହୁଏ ? ତା କଥା ଶୁଣି ବିକଳ ଭାବରେ ହସିଥିଲେ ସେ । ବୈଶାଳୀ ଉପରେ ତାଙ୍କର ରାଗ ଆସୁଥିଲା । ସେ କହିଥିଲେ ଠିକ୍ ଅଛି ମୁଁ ଯିବି ନାହିଁ । ବୈଶାଳୀର ଥମିଯାଇଥିବା ହସ ପୁଣି କଳ କଳ ଝରଣା ପାଲଟି ଯାଇଥିଲା । ହସୁ ହସୁ ସେ କହିଥିଲା, ମୁଁ ଆପଣଙ୍କୁ ଯିବା ପାଇଁ ମନାକଲି କେତେବେଳେ ? ମହାଯାତ୍ରାରେ ବାହାରିଥିବା

ଲୋକ ତା ସାଙ୍ଗରେ ସାରା ସଂସାର ଉଠେଇ ନଉଛି ଦେଖି ହସିଥିଲି ନା ।

ଏସବୁ ରାସ୍ତାରେ ଦରକାର ପଡ଼ିବ, କହିଥିଲେ ସେ । ସାଙ୍ଗରେ ନ ନେଲେ ବାଟରେ ହଇରାଣ ହେବି ନାହିଁ ? ବୈଶାଳୀର ଯେ ଏ ବାବଦରେ ଅଭିଜ୍ଞତା ନାହିଁ ଜଣେଇ ଦେବା ପାଇଁ କହିଥିଲେ କଣ କଣ ସବୁ ଯା ଭିତରୁ ଅଦରକାରୀ କହିଲ ? ଛୋଟ ମୋଟ ଅସୁସ୍ଥତା ପାଇଁ ଔଷଧ ? ଅଣ୍ଟାବ୍ୟଥା ପାଇଁ କମର ବେଲ୍ଟ ? ସ୍ଲିପର, ନାଇଟ୍ ସୁଟ୍ ? ଦୁଇସାର ଚଷମା, ସେଭିଂସେଟ୍ କେଉଁଟା ଅଦରକାରୀ ଏଥିରୁ ? ବୈଶାଳୀ କହିଥିଲା କାହିଁକି ଏ ଭିଟାମିନ୍ ଟାବ୍‌ଲେଟ ସବୁ ? ଏଇ ତିନି ବୋତଲ ହ୍ୱିସ୍କି ? ଫୋଲ୍ଡିଂ ଛତା ଆଉ ଟର୍ଚ୍ଚ ?

ଏସବୁ ମଧ୍ୟ ରାସ୍ତାରେ ଦରକାର, କହିଥିଲେ ସେ । କୋଟ୍, ସ୍ୱେଟର, ଗ୍ଲୋବ୍‌ସ୍‌କୁ ଦେଖେଇ ସେ କହିଥିଲେ ଏଗୁଡାକ ମଧ୍ୟ ନେଇ ଯାଉଛି, ସେପଟେ ବେଶି ଥଣ୍ଡା କି ନା ।

ଆଉ ଏଇ ସେଫ୍ଟିପିନ୍, ନେଲ୍‌କଟର୍, ଟୁଥ୍‌ପିକ୍ ? ପଚାରିଥିଲା ବୈଶାଳୀ ।

ଏବେ ସିନା ଜଣାପଡୁନି, ଏଇ ଛୋଟିଆ ଜିନିଷ ପାଇଁ କେତେ ହଇରାଣ ହେବାକୁ ପଡେ ତମେ ଜାଣିନ । କହିଥିଲେ ସେ । ରାସ୍ତା ଲାଗି ଗଗଲସ୍, ଏଇ ଚାରିସାର ମୋଜା, ଆଉ ଫୋଲଡିଂ ବାଡ଼ିଟିକୁ ଫିଟ୍ କରି ଦେଖେଇ ଥିଲେ ବରୁଣ ବେଶ୍ ତିନି ଫୁଟିଆ ବାଡ଼ିରେ ପରିଣତ ହେଇ ଯାଉଛି କେମିତି ।

ସବୁ ଶୁଣି ସାରି ବୈଶାଳୀ କହିଥିଲା ଆପଣ ତୀର୍ଥଯାତ୍ରାରେ ଯାଉଛନ୍ତିଟି, ତୁଳସୀମାଳି କେରାଏ ଧରିଛନ୍ତି କି ନାହିଁ କହିଲେ ? ବୈଶାଳୀର ବିଦ୍ରୁପ ତାଙ୍କୁ ଭଲ ଲାଗିଲା ନାହିଁ । ତମେ ଯଦି ଏମିତି ଥଟ୍ଟା କରିବ ତେବେ ମୁଁ ଆଦୌ ଯିବିନାହିଁ, କହିଥିଲେ ସେ । ବୈଶାଳୀ ଚୁପ୍ ହେଇଯାଇଥିଲା କିଛି ସମୟ ତାପରେ କହିଥିଲା ଆପଣ ଯାଆନ୍ତୁ । ଜୀବନରେ ବିଭିନ୍ନ ପ୍ରକାର ଅନୁଭୂତି ରହିବା ଭଲ । ଫେରିଆସି ତୀର୍ଥଯାତ୍ରା ଉପରେ ଆପଣଙ୍କର ଭଲ ବହିଟେ ବି ହେଇଯିବ । ଖାଲି ବାବାଜୀ ହେଇ ଯିବେନି, ଆପଣ ବାବାଜୀ ହେଇଗଲେ ମୋ ଅବସ୍ଥା କଣ ହେବ କହୁ ନାହାନ୍ତି ?

ସେ ଲକ୍ଷ୍ୟ କରିଥିଲେ ବୈଶାଳୀ ଏଥର ବିଦ୍ରୁପ କରୁନାହିଁ । କିନ୍ତୁ କେବଳ ତୀର୍ଥଯାତ୍ରା ଉପରେ ବହି ଖଣ୍ଡେ ହେଇଯିବ ବୋଲି ବୈଶାଳୀ ଚାହୁଁଛି, ସେ ଯାଆନ୍ତୁ । ସେ ଭାବିଥିଲେ ବୈଶାଳୀ ପାଖରୁ ଏଇ ତୀର୍ଥଯାତ୍ରା ଖବରଟି ଲୁଚେଇ ରଖିଥିଲେ ଭଲହେଇଥାନ୍ତା । କିନ୍ତୁ ବୈଶାଳୀ ପାଖରୁ କୌଣସି କଥା ଲୁଚେଇ ରଖି ପାରନ୍ତି ନାହିଁ ସେ । ଲୁଚେଇ ରଖି ପାରନ୍ତି ନାହିଁ ଅଥବା ବୈଶାଳୀ କଥା ଆଦାୟ କରିନିଏ ତାଙ୍କୁ ଜଣାନାହିଁ । ତେବେ ଜିନିଷପତ୍ର ସଜାଡ଼ିବା ଆଗରୁ ସେ ବୈଶାଳୀକୁ ଫୋନ୍ କରି ଡାକିଥିଲେ ସାହାଯ୍ୟ କରିବା ପାଇଁ । ବୈଶାଳୀ ତାଙ୍କ ସାର୍ଟ, ପ୍ୟାଣ୍ଟ ଇସ୍ତ୍ରୀ

କରିଥିଲା, ଆଉ ସେ ରୋଷେଇ ଘରକୁ ଯାଇ ଖେଚୁଡ଼ି ରାନ୍ଧିଥିଲେ । ବୈଶାଳୀ କୁହେ, ଆପଣ ଯାହା କାମ କହିବେ କରି ଦେଇ ପାରେ କିନ୍ତୁ ଆପଣଙ୍କ ରୋଷେଇ ଘରକୁ ଯିବା କଥା କହନ୍ତୁ ନାହିଁ । ମୋତେ ଘରଟା ଭିତରେ ଭୂତ ଥିଲା ପରି ଲାଗେ । ଏତେବଡ଼ ରୋଷେଇ ଶାଳଟେ, ପୁଣି ପୁରୁଣାକାଳିଆ ଡାଆଣର । ଆପଣଙ୍କ ପୂର୍ବ ପୁରୁଷଙ୍କର ଏମିତି କେତେ ବଡ଼ ପରିବାରଟେ ଥିଲା କି ? ଗୋଟେ ଡାଇନିଂ ଟେବୁଲ୍ ପକେଇଛନ୍ତି ଯେ ସେଇଟା ଡାଇନିଂ ଟେବ୍ଲ ନା ରାଜାମହାରାଜାଙ୍କ ବିଲିୟାର୍ଡ ଟେବ୍ଲମ । ଆପଣଙ୍କ ରୋଷେଇ ଘରର ଯେଉଁ ଐଶାନ କୋଣ ରହିଛି, ମୋତେ ଲାଗେ ସେଇଠି ସବୁ ପୂର୍ବପୁରୁଷଙ୍କ ଆତ୍ମାମାନେ ମୋତେ ଦେଖି ପାରନ୍ତି । ଭାରି ଡରମାଡ଼େ ସେ ଅନ୍ଧାରିଆ କୋଣକୁ ଚାହିଁବାକୁ । ବରୁଣ କିଛି କୁହନ୍ତି ନାହିଁ ଜବାବ୍‌ରେ । କେବଳ କୁହନ୍ତି, ଠିକ୍ ଅଛି ମୁଁ ରାନ୍ଧି ଦେଉଛି ତମେ ବସି ରୁହ ।

ଅସଲରେ ଏତେବଡ଼ ଅଟ୍ଟାଳିକାଟି ସେତେବେଳେ ନିର୍ଜନ ନଥିଲା ଏମିତି । ବଂଶର ସବୁ ଲୋକ ରହୁଥିଲେ । ପ୍ରେସ୍‌ର ଲୋକଙ୍କ ଯିବା ଆସିବା ଚାଲିଥିଲା । ରୋଷେଇ ଶାଳର ଚୁଲି ଲିଭୁନଥିଲା କେବେ । ଯିଏ ଯେତେବେଳେ ଆସୁଥିଲା ପୂଝାରୀ ତା ପାଇଁ ବାଢ଼ି ଦଉଥିଲା ଭାତ, ଡାଲି, ତରକାରୀ । ଗାଁଗଣ୍ଡାରୁ ଆସିଥିବା ଗୋଟେ ଅଧେ ରିପୋଟର ମଧ ହୋଟେଲରେ ମିଲ୍ ଖାଇଲା ଭଳି, ଖାଇଦେଇ ଯାଆନ୍ତି ଦି ମୁଠା । ରୋଷେଇ ଘର, ଠାକୁର ଘର ଓ ପ୍ରେସ୍ ତଳ ମହଲାରେ, ଉପରେ ବଂଶର ସବୁ ଲୋକଙ୍କ ରହିବା ଘର । କିଏ କୁଆଡ଼େ ପଳେଇଲେ ବିଚ୍ଛିନ୍ନ ହେଇଗଲେ ନିଜ ଅଂଶ ଖଣ୍ଡିକ ବିକି ଦେଇ କିମ୍ୱା ତାଲା ପକେଇ । ସେ ଗଲେ ନାହିଁ ରହିଗଲେ । ସେଇଥିପାଇଁ କି କଣ ଘରଟାରେ ପ୍ରାଚୀନ ଭୂତଟେ ମାଡି ବସେ ତାଙ୍କ ଉପରେ ଏକଲା ରହିଲା ବେଳେ ।

ଜିନିଷପତ୍ର ସଜାଡ଼ି ସାରି ବୈଶାଳୀ କହିଥିଲା: ମୁଁ ଘରକୁ ଯାଉଛି । ଆପଣ ଖାଇନେଇ ସହଜ ଶୋଇ ଯାଆନ୍ତୁ । କାଲି ସକାଳୁ ସକାଳୁ ବାହାରିବାକୁ ପଡ଼ିବ ଆପଣଙ୍କୁ । ମୁଁ ବୋଧହୁଏ ଆଉ ଆପଣଙ୍କ ଯିବା ସମୟକୁ ଆସି ପାରିବି ନାହିଁ । ବରୁଣ ବୈଶାଳୀର କାନ୍ଧରେ ହାତ ରଖି କହିଥିଲେ ବସ ଆଉ ଟିକେ । ମୋତେ ଏତେ ଶୀଘ୍ର ନିଦ ଆସିବ ନାହିଁ କି ଏକା ଏକା ମଧ ଭଲ ଲାଗିବ ନାହିଁ । ବୈଶାଳୀ କବାଟ ପାଖରୁ ଫେରି ଆସି ବସିଥିଲା । ବରୁଣ ଡ୍ରିଙ୍କସ୍ ନେଇ ବସିଥିଲେ । ଖାଇବା ପୂର୍ବରୁ ପେଗ୍ କି ଦି ପେଗ୍ ନେବା ତାଙ୍କର ଅଭ୍ୟାସରେ ପଡ଼ି ଯାଇଛି । କେହି ନଥିଲେ ସେ ଏକଲା ନିଅନ୍ତି ନହେଲେ ପ୍ରାୟତଃ ଦଶରଥ, ସଂଗ୍ରାମ କିମ୍ୱା ବୈଶାଳୀ କେହି ହେଲେ ମିଳିଯାଆନ୍ତି ସଙ୍ଗ ଦେବାକୁ । ସେଦିନ ବୈଶାଳୀ ପଚାରିଥିଲା: ଆପଣ

ଅଚାନକ ତୀର୍ଥଯାତ୍ରାରେ ଯିବାକୁ କାହିଁକି ଠିକ୍ କଲେ ଯେ ? ସେଦିନ କୌଣସି ଉତ୍ତର ଦେଇ ପାରିନଥିଲେ ସେ । କେବଳ କହିଥିଲେ ଏମିତି ହିଁ ।

ପ୍ରକୃତରେ ତାଙ୍କର ତୀର୍ଥଯାତ୍ରାରେ ଯିବା ପାଇଁ କୌଣସି ଆକାଂକ୍ଷା ନଥିଲା । ଯଥେଷ୍ଟ ଦୂରରେ ଥିଲେ ସେ ଧର୍ମକର୍ମରୁ । ନା କେବେ ମନ୍ଦିରକୁ ଯାଉଥିଲେ ସେ ନା ସତ୍‌ସଙ୍ଗକୁ । ଆତ୍ମା ଓ ଶରୀରକୁ ଦିଟି ଅଲଗା ସତ୍ତା ବୋଲି ସେ କେବେ ଭାବନ୍ତି ନାହିଁ । ମୃତ୍ୟୁ ସଙ୍ଗରେ ମଣିଷ ସତ୍ତାର ଅବସାନ ଘଟେ । ତାପରେ ଆଉ କିଛି ନାହିଁ । କେବଳ ଏକ କ୍ରମ ଜୈବିକ ପ୍ରକ୍ରିୟା ଛଡ଼ା ଅନ୍ୟ କିଛି ନୁହେଁ । ତେଣୁ ଯାବଜ୍ଜୀବେତ୍ ସୁଖଂ ଜୀବେତ୍, ଋଣ କୃତ୍ୱା ଘୃତଂ ପିବେତ, ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ? ଚାର୍ବାକ୍ ପରି ଜୀବନକୁ ସେ ସହଜ ସରଳ ଭାବରେ ଗ୍ରହଣ କରି ନେଇଥିଲେ । କୌଣସି ଦର୍ଶନ ଉପରେ ଆଧାର କରି ତ ଆଉ ଜୀବନ ଗଢ଼ି ଉଠେନି । ଜୀବନ ଜୀଉଁ ଜୀଉଁ ଦର୍ଶନ ଉପୁଜିଯାଏ । ତାଙ୍କ ପରିବେଶ, ପରିସ୍ଥିତି ତାଙ୍କୁ ସେଇ ପର୍ଯ୍ୟାୟକୁ ନେଇ ଯାଇଥିଲା ଯେଉଁଠି ସମ୍ଭବତଃ ଚର୍ବାକ୍ ଦର୍ଶନ ହିଁ ସଠିକ୍ ମନେ ହେବ ।

ତଥାପି କିଛି ତୀର୍ଥଯାତ୍ରୀଙ୍କ ମେଳରେ ସେ ବାହାରିଛନ୍ତି ତୀର୍ଥ ଯାତ୍ରାରେ । କିନ୍ତୁ କେଉଁଥିପାଇଁ ? ସେ ନିଜେ ମଧ ବୁଝି ପାରୁନଥିଲେ କାହା ପ୍ରରୋଚନାରେ ସେ ଏତେ ବାଟ ଧାଇଁ ଆସିଛନ୍ତି ବୋଲି । କଣ ସନ୍ଧାନ ପାଇଁ ସବୁ କିଛି ଛାଡ଼ିଛୁଡ଼ି ଦେଇ ନିଜକୁ ଦଳେ ତୀର୍ଥଯାତ୍ରୀଙ୍କ ସହ ସାମିଲ୍ କରି ଦେଇଛନ୍ତି ସେ । ମେଜର ଦାସ ଯେତେବେଳେ ଏମିତି ପ୍ରସ୍ତାବଟେ ଦେଲେ ଓ ଖର୍ଚ୍ଚବାର୍ଚ୍ଚର ଅଟକଳ କରି ତାଙ୍କୁ ଉତ୍ସାହିତ କଲେ, ବରୁଣ ଭାବିଲେ ଏମିତିରେ ବି ଆଜିକାଲି ତାଙ୍କ ହାତରେ ବିଶେଷ କିଛି କାମ ନାହିଁ, ଏତେ ଗୁଡ଼ିଏ ଲୋକ ଯାଉଛନ୍ତି ଯେତେବେଳେ, ସେ ମଧ ଯାଇ ବୁଲାବୁଲି କରି ଆସିଲେ କ୍ଷତି କଣ ? ମେଜର ଦାସ ତାଙ୍କ ଠାରୁ ଦଶ ବାର ବର୍ଷର ବଡ଼ । ଥରେ ହାର୍ଟଆଟାକ୍ ମଧ ହେଇ ସାରିଛି । ଯଦି ସେ ତାଙ୍କ ଦଦରା ଦେହଟାକୁ ଧରି ଏତେ ବଡ଼ ସାହସଟେ କରି ପାରୁଛନ୍ତି, ତେବେ ସେ ପଛେଇ ଯାଆନ୍ତେ ବା କିପରି ? ଯଦିଓ ଆଜିକାଲି ସେ ବାହାରକୁ ବିଶେଷ ଯାଆନ୍ତି ନାହିଁ । ଝିଅ ଡାକେ, ଅଭିମାନ କରେ । ପୁଅ ତାଙ୍କ ସ୍ୱଭାବ ଜାଣେ ତେଣୁ କେବେ ଡାକେ ନାହିଁ । ଯେମିତି ପୁଅ ପାଖରେ ତାଙ୍କର କୌଣସି ସ୍ଥିତି ନାହିଁ । ପୁଅ ମାକୁ ଡାକେ । ଯେଉଁଠିକୁ ବଦଳି ହେଇଯାଏ ମାକୁ ଡାକି ନେଇ ବର୍ଷେ ଛମାସ ପାଖରେ ରଖେ । ସହଜେ ଫେରିବାକୁ ଦିଏନା । ଝିଅ ସଙ୍ଗେ ଟେଲିଫୋନ୍‌ରେ କଥା ହୁଅନ୍ତି । ଭଲ ମନ୍ଦ ବୁଝନ୍ତି । ସେଇଠୁଁ ଥାଇ ସ୍ତ୍ରୀ ଘର ସଂସାର ବାବଦୀୟ ଛୋଟମୋଟ ନିର୍ଦ୍ଦେଶ ଦିଏ । କିଛି ଅସୁବିଧା

ହୁଏନା । ବରଂ ଭଲ ଲାଗେ ଛୋଟ ସହର ଛୋଟ ପରିବେଶ ଅଳ୍ପ କିଛି ବଂଧୁ ପରିଜନ । ଏଇ ମାଟି ତାଙ୍କୁ ଶାନ୍ତି ଦିଏ । ଗେଣ୍ଡା କି କଇଁଛ ପରି ନିରାପଦ ମଣନ୍ତି ନିଜ ଖୋଳପା ପରି ଘରଟିକୁ । ଆଜିକାଲି ଘରୁ ମଧ ସେ ଖୁବ୍ କମ୍ ବାହାରନ୍ତି । ସାଙ୍ଗ ସୁଖ, କ୍ଲବ୍, ପ୍ରେସ୍ କିଛି ଭଲ ଲାଗେ ନାହିଁ । ସକାଳୁ ସକାଳୁ ନିର୍ଜନ ରାସ୍ତାରେ ବାହାରି ଯାଆନ୍ତି ଦୁଇ କି ତିନି କିଲୋମିଟର ଅବଧି ରାସ୍ତା । ଜଣାପଡ଼େନାହିଁ, ଚାଲୁ ଚାଲୁ କେତେ ବାଟ ପଳେଇ ଆସିଲେଣି ବୋଲି । ଠିକ୍ ଛକ ଉପରେ ଗୋପବନ୍ଧୁ ମୂର୍ତିଟି ଉପରେ ନଜର ପଡିଗଲେ ବୁଝିପାରନ୍ତି, ବାସ୍ ହେଇଗଲା ଆଉ ନୁହେଁ । ଆଉ ଆଗକୁ ଯିବା ତାଙ୍କ ଶକ୍ତି ବାହାରେ ଯେମିତି । ମୂର୍ତିଟିକୁ ପରିକ୍ରମା କଲା ପରି ଘେରାଟେ ଦେଇ ଫେରି ଆସନ୍ତି । ବାଟରେ ଦେଖାହୁଏ କେତେ ଚିହ୍ନା ଆଉ ଅଚିହ୍ନା ଲୋକଙ୍କ ସଙ୍ଗେ । ଚିହ୍ନା ଲୋକ ଦେଖିଲେ ଦଣ୍ଡେ ଛିଡ଼ା ହୁଅନ୍ତି । ହସ ବିନିମୟ ହୁଏ । ଔପଚାରିକ କଥାବାର୍ତା ହୁଅନ୍ତି । ଅଚିହ୍ନା ଲୋକ ଦେଖିଲେ ବାଟ କାଟି ଚାଲି ଯାଆନ୍ତି । କିନ୍ତୁ ତାଙ୍କ ଯିବା ଆସିବା ରାସ୍ତାରେ ଅଚିହ୍ନା ଲୋକ କଣ ଦେଖାଯାଆନ୍ତି ? ସହରର ଏକଦା ଅପନ୍ତରା ଭାବେ ଗଣା ଯାଉଥିବା ଏ ଅଞ୍ଚଳରେ ଏବେ କୋଠା ଘର ମାଳମାଳ ରାସ୍ତା ଦି ପାଖରେ ପାଚେରୀ ପରି ଠିଆ ହେଇରହିଛି । ଅଧିକାଂଶ ଘରର ମାଲିକ ଅବସରପ୍ରାପ୍ତ ସରକାରୀ କର୍ମଚାରୀ । ଘର କିଣି ନିଜ ମନ ମୁତାବକ କୋଠା ବଢ଼େଇଛନ୍ତି, ନକ୍ସା ବଦଳେଇଛନ୍ତି ଘରର । ତାଙ୍କୁ ଆଶ୍ଚର୍ଯ୍ୟ ଲାଗେ ଆଉ ହେଇ ହେଇ ଦଶ କି ପନ୍ଦର ବର୍ଷର ବାସିନ୍ଦା ଏଇ ପୃଥିବୀରେ ସେମାନେ, ପରମାୟୁ ସରିସରି ଆସୁଛି, ତଥାପି କିଛି ଲୋକ ବର୍ଷା ଖରାରେ ଛିଡ଼ା ହେଇ ଛାତ, କାନ୍ଥ ଚଟାଣର ନିଖୁଣତା ଦେଖୁଥାନ୍ତି । କେଉଁ ରଂଗର ଟାଇଲ୍ ବସିବ, କେଉଁ ରଂଗ କାନ୍ଥରେ ରହିବ, ଏମିତି କି କେମିତି ପର୍ଦା ଝୁଲାଯିବ ଚିନ୍ତା କରନ୍ତି । ବାର୍ଦ୍ଧକ୍ୟଟା ବି ଶୈଶବ ପରି । ଶୈଶବରେ ବାଲିଘର କରି ଖେଳିଲା ପରି ବୃଦ୍ଧଟେ ସ୍ୱପ୍ନର ଘରଟେ ତୋଳିବସେ । ଶୈଶବରେ ସେ ଘରଟିକୁ ଭାଙ୍ଗିଦେଇ ପଳେଇଯାଏ, କିନ୍ତୁ ବାର୍ଦ୍ଧକ୍ୟରେ ଘରଥାଏ ସେ ପଳେଇଯାଏ ।

ବରୁଣ ଦେଖିଲେ, ଶର୍ମିଷ୍ଠା ସେତେବେଳୁ ବକ୍ ବକ୍ କରି ଚାଲିଛି ବନ୍ଦ ହେବାର ନାଁ ନେଉନି । ଦିଲ୍ଲୀରୁ ସେମାନଙ୍କ ସହ ବସିଥିବା ଅନ୍ୟତମ ଓଡ଼ିଆ ପରିବାର ପରିଡାବାବୁଙ୍କ ସ୍ତ୍ରୀ ତାକୁ ଚୁପ୍ ରହିବା ପାଇଁ କହୁଥିଲେ । ଶର୍ମିଷ୍ଠା ତାଙ୍କୁ କହିଥିଲା: ବୁଝିଲ ମାଉସୀ ଆମ ସମାଜଟା ସେଇଆ । ସବୁ କିଛି ଅନ୍ୟାୟ, ଅତ୍ୟାଚାରକୁ ମୁଣ୍ଡପୋତି ସହିନେବା ହେଲା ତା ଧର୍ମ । କେହି ଯଦି ସ୍ୱର ଉତ୍ତୋଳନ କଲା ତାକୁ ଚୁପ୍ କରେଇବା ପାଇଁ କିନ୍ତୁ ଦଶଜଣ ବାହାରି ପଡ଼ିବେ । ପରିଡା ବାବୁଙ୍କ ସ୍ତ୍ରୀଟି

ଗାଉଁଲିଆ ଲୋକ । ଶର୍ମିଷ୍ଠା କଥାରେ ବେଶି ମୁଣ୍ଡ ପୂରେଇବାକୁ ଚାହିଁଲେ ନାହିଁ, କିମ୍ବା ଏମିତି ଗୋଟେ ବକରି ସ୍ତ୍ରୀ ଲୋକ ପାଖରୁ ନିଜକୁ ମୁକ୍ତ ରଖିବା ପାଇଁ ଅନ୍ୟ ଆଡ଼କୁ ମୁହଁ ବୁଲେଇ ବସିଲେ । ବରୁଣ ଲକ୍ଷ୍ୟ କଲେ ପାହାଡଟେ ପରି ମୌନ ହୋଇ ବସିଛନ୍ତି ମେଜର ଦାସ୍ । ଆହା ବିଚରା ଦାସ୍ ଅନେକ ଅତ୍ୟାଚାର ସହିଲେଣି । ବେଳେ ବେଳେ ଶର୍ମିଷ୍ଠା ଉପରେ ପ୍ରଚଣ୍ଡ ରାଗ ହୁଏ ବରୁଣଙ୍କର । ଇଚ୍ଛା ହୁଏ ତା ବକ୍‌ବକ୍ କରୁଥିବା ମୁହଁରେ ବିଣ୍ଡାଏ କନା ପୁରେଇ ଦିଅନ୍ତେ ପରା । ବେଳେବେଳେ ତାଙ୍କର ସନ୍ଦେହ ହୁଏ ମେଜର ଦାସ୍‌ଟା କାଲା ନୁହେଁ ତ । ନହେଲେ କେମିତି ଛୀଇଁଛି ଏ ଝିଅଟାକୁ ଧରି ? ସେ ଡାକିଲେ: ମେଜର୍ ?

ମେଜର ବୁଲିପଡ଼ି ପ୍ରଶ୍ନବାଚୀ ଆଖିରେ ତାଙ୍କୁ ଚାହିଁଥିଲେ ।

ବରୁଣ କହିଥିଲେ ମନେ ହେଉଛି ମୋ ଅଣ୍ଟାବ୍ୟଥାଟା ବାହାରି ପଡ଼ିବ ।

ସତେ ନା କଣ ! କହିଥିଲେ ମେଜର । ମୋ ପାଦ ଗୁଡ଼ା ଦେଖୁନାହାନ୍ତି କେମିତି ଫୁଲା ଫୁଲା ଦିଶିଲାଣି ।

ବରୁଣ ଜାଣିଥିଲେ ଏମିତି କିଛି ଘଟିବ ହିଁ ଘଟିବ । ଏସବୁ ତୀର୍ଥଯାତ୍ରା ସେମାନଙ୍କ ପରି ଲୋକଙ୍କୁ ପୋଷାଏନି । ଗାଁଗଣ୍ଡା ଲୋକଙ୍କ କଥା ଅଲଗା । ମନରେ ତାଙ୍କର ଯଥେଷ୍ଟ ଆସକ୍ତି ଧର୍ମକର୍ମ ପ୍ରତି । ତେଣୁ ପଙ୍ଗୁ ଅଥର୍ବ ବୁଢ଼ାର ବି ଲିଭିଲା ଜୀବନରେ ଜୀବନୀଶକ୍ତି ଚାଲି ଆସେ । ଆଉ ତାଙ୍କ ଭଳି ଯେଉଁମାନଙ୍କର କେଉଁଆଡ଼କୁ ଯିବାକୁ ଥିଲେ ପ୍ଲେନ୍‌ରେ କିମ୍ବା ପ୍ରଥମ ଶ୍ରେଣୀ ଶୀତତାପ ନିୟନ୍ତ୍ରିତ ଟିକେଟ ଯୋଗାଡ଼ କରି ବସନ୍ତି, ସେମାନଙ୍କ ପାଇଁ ଏ ଯାତ୍ରା କ୍ଳାନ୍ତିକର ଓ ବିରକ୍ତିକର ତ ହେବ ହିଁ ।

ଏଇ ଟିକିଏ ପୂର୍ବରୁ ତାଙ୍କୁ ବିମୋହିତ କରିଥିବା ପ୍ରକୃତି, ତାଙ୍କର ଏ ଦୁର୍ଦ୍ଦଶା ଦେଖି ଫୁଲେଇ ଝିଅଟେ ପରି ହସୁଥିଲା ଯେମିତି । ତାଙ୍କର ଇଚ୍ଛା ହେଉଥିଲା ଗାଡ଼ିରୁ ଡେଇଁ ପଡନ୍ତେ । ମେଜର ଦାସଙ୍କ ଉପରେ ତାଙ୍କର ରାଗ ହେଲା, ଲୋକଟା ବୋଲରେ ପଡ଼ି ସିନା ସେ ଘରୁ ପାଦ କାଢ଼ିଥିଲେ । ଲୋକଟା ଜୀବନରେ କେବେ ଯୁଦ୍ଧଭୂଇଁକୁ ଯାଇଛି କି ନାହିଁ କେଜାଣି । କେମିତି ତା ମନ ଏପାଖକୁ ଢ଼ଳିଲା କିଏ କହିବ । ତୀର୍ଥଯାତ୍ରା କଥା ଯେତେବେଳେ ସେ ଫୋନ୍ ମାଧ୍ୟମରେ ସବିତାଙ୍କୁ ଜଣେଇଲେ, ସବିତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସବିତା ସେପାଖରୁ କହିଥିଲେ, ତୁମ ପରି ଲୋକ ପୁଣି ତୀର୍ଥଯାତ୍ରା ପାଇଁ ମନ ବଳେଇଛି ? ଯେମିତି କେବଳ ମନ ବଳେଇବାଟା ବି ଗୋଟେ ବିରାଟ ପରିବର୍ତ୍ତନର ସୂଚନା । ଆଦୌ ବିଶ୍ୱାସ କରି ପାରୁନଥିଲେ ସବିତା । ଆକାଶରୁ ଖସି ପଡ଼ିଲା ପରି ପଚାରିଥିଲେ ସତେ ତମେ କେଉଁ କେଉଁ ସ୍ଥାନକୁ ତୀର୍ଥ କରିଯାଇଛ ?

ତମର କଣ ବିଶ୍ୱାସ ହେଉନାହିଁ ? ତମେ ଚାଲି ଆସ । ସାଙ୍ଗ ହେଇ ଯିବା । ମୋ ଅପେକ୍ଷା ତମେ ତ ବେଶି ଖୁସି ହେବ, କହିଥିଲେ ବରୁଣ । ଯଦିଓ ସେ ଜାଣିଥିଲେ ଡାକି ଦେବା ମାତ୍ରେ ସବିତା ଧାଇଁ ଆସି ପାରିବେ ନାହିଁ । ଏବେ ବି ସଂସାରର ଶୃଙ୍ଖଳ ତାଙ୍କ ପାଦରେ ବନ୍ଧା । ମନଟା ତାଙ୍କର ଅଜାଣତରେ ଖରାପ ହେଇଯାଉଥିଲା । ଆହାରେ କାହିଁକି ଏମିତି କଥାଟେ କହି ସବିତା ମନରେ ଦୁଃଖ ଦେଲେ । କେଜାଣି କେତେଥର ସବିତା ତାଙ୍କ ସାମ୍ନାରେ ପ୍ରସ୍ତାବ ରଖିଛନ୍ତି, ଚାଲନା ହରିଦ୍ୱାର, ଋଷିକେଶ, କେଦାର, ବଦ୍ରୀହେଇ ଆସିବା ଏଥର । ବଳ ଥାଉଁ ଥାଉଁ ଯିବା ଭଲ । ବୟସ ହୋଇଗଲେ ଏସବୁ ଜାଗାକୁ ଯିବା ସମ୍ଭବ ହେବନାହିଁ । ସବୁଥର କିଛି ନା କିଛି ବାହାନା କରି ଆଡେଇ ଯାଇଛନ୍ତି ସେ । ବରଂ ପରିହାସ କରି କହିଛନ୍ତି ସ୍ତ୍ରୀଲୋକଗୁଡା ଖୁବ୍ ଜଲ୍‌ଦି ବୁଢ଼ୀ ହୋଇଯାଆନ୍ତି । ଦେହରେ ମନରେ ବି । ତୀର୍ଥ ଯାଇ କଣ କହିବ ଭଗବାନଙ୍କୁ ? ଭଗବାନ୍ ମୋ ଦିନ କାଳ ସରିଲା । ପିଲାଛୁଆଙ୍କୁ ମଣିଷ କଲି । ବାହାସାହା କଲି । ସେମାନେ ତାଙ୍କ ସଂସାର କରି ରହିଲେ । ଏବେ ମୋର ତୁମ ଛଡ଼ା ଆଉ ଗତି ମୁକ୍ତି ନାହିଁ । ତୁମ ନାମ ନେଇ ବାକି ଜୀବନ କଟେଇଦେବି । ସବିତା ବେଳେବେଳେ ଭୀଷଣ ରାଗିଯାଆନ୍ତି । ନାସ୍ତିକ ବୋଲି କହିଥାନ୍ତି । ଅତିରିକ୍ତ ବାଧିଥିଲେ କୁହନ୍ତି, ମୁଁ କଣ ଜାଣେନା ତୁମ ତୀର୍ଥମାନସବୁ କୋଉଠି ? ତମ ଦେହ ଆଉ ମନ କାହିଁକି ଏବେ ବି ସବୁଜିଆ ହେଇ ରହିଛି ।

ତାଙ୍କ ତରଫରୁ ତୀର୍ଥଯାତ୍ରା ପାଇଁ ଆମନ୍ତ୍ରଣ ପାଇ ବଡ଼ ଉଦାସ ଗଳାରେ ଜବାବ୍ ଦେଇଥିଲେ ସବିତା, ମୁଁ କେଉଁ ଜନ୍ମରେ ପାପ କରିଛି । ନହେଲେ ସମସ୍ତଙ୍କୁ ଡୋର ଟାଣୁଛି ମୋତେ ଟାଣନ୍ତା ନାହିଁ ।

ବରୁଣ ସବିତାଙ୍କ କଥା ଶୁଣି ହସି ପକେଇଥିଲେ, କହିଥିଲେ, ପୋଖତ ଗାଉଁଲୀ ବୁଢ଼ୀଟେ ପରି କଣ କହୁଛମ ? ମୁଁ ବାହାରିଛି କେବଳ ମେଜର ଦାସ ଟଣା ଓଟରା କଲା ବୋଲି । ଏଇଠି ପ୍ରଚଣ୍ଡ ଗରମ ହେଉଛି । ଭାବିଲି ଯାହା ହେଉ ଯାଇ ଥଣ୍ଡା ଜାଗାରୁ କିଛି ଦିନ ବୁଲି ଆସି ହେବ ।

ସବିତାଙ୍କ ଗଳା ଆହୁରି ଉଦାସ ଶୁଭିଥିଲା । କହିଥିଲେ ଅଜାମିଳ କାହାଣୀ ଜାଣିନ ? ନାରାୟଣଙ୍କୁ ଡାକ ଅବା ପୁଅ ନାରାୟଣକୁ ଡାକ ଯାହାର ଯାହା ପ୍ରାପ୍ୟ ସେ ପାଇବ ।

ବରୁଣ କହିଥିଲେ ସେଇଥି ପାଇଁ ତ କହୁଛି ଚାଲିଆସ । ଯଦିଓ ବରୁଣ ଜାଣିଥିଲେ ଆସ୍ ବୋଲି ଡାକିଦେଲେ ସବିତା ଆସିପାରିବେ ନାହିଁ ।

ଚାହିଁଲେ ମଧ ଏବେ ମୁଁ ଯାଇ ପାରିବି ନାହିଁ, କହିଥିଲେ ସବିତା । କେମିତି

ଯିବି ? ଲିସାର ଡେଲିଭରି ଆଗକୁ ଅଛି । ଆସନ୍ତା ସପ୍ତାହ ଆଡକୁ ଡେଲିଭରି ହେଇଯିବ ଲାଗୁଛି । ତାଛଡ଼ା ଜର୍ମାନ କଣ ବାରିପଦା କି ବରହମ୍ପୁର ହେଇଛି କି ମନ ଚାହିଁଲେ ପଳେଇଯିବି ?

ସେଦିନ ବରୁଣଙ୍କ ମନଟା ବହେ ଗୋଳେଇ ଘାଣ୍ଟି ହେଇଥିଲା ସବିତାଙ୍କ ପାଇଁ ତାଙ୍କର ମନେ ହେଇଥିଲା, ସେ ଅଜାଣତରେ ହେଉ ପଛେ ସବିତାଙ୍କୁ ଦୁଃଖ ଦେଇଛନ୍ତି । ତୀର୍ଥଯାତ୍ରା କଥାଟା ସବିତାଙ୍କୁ ନ କହିଥିଲେ ଭଲ ହେଇଥାନ୍ତା । ବିଚାରୀ ସେ ଏବେ ନିଜ ଦୁର୍ଭାଗ୍ୟ କଥା ଭାବି ଲୁଚେଇ ଲୁଚେଇ କାନ୍ଦିଥିବ । ଏମିତି କାହିଁକି ହୁଏ ? ଚାହୁଁଥିବା ଲୋକ ପାଏନା, ଆଉ ପାଉଥିବା ଲୋକ ପାଏ ତ ଭୁଲ୍ ଭାବରେ ପାଏ ?

---

କେଜାଣି କେଉଁ ଆଦିମ କାଳରୁ ଅଣନିଶ୍ୱାସୀ ହେଇ ଧାଇଁ ଚାଲିଛି ଗଙ୍ଗା । ପାଗଳୀ ମା'ଟେ ପରି । ପାହାଡ଼ ଜଙ୍ଗଲ, ପଥର ଚିରି ଧାଇଁଲା ବେଳେ, ହୋସ୍ ହବାସ୍ ଭୁଲି ବସିଛି ଯେମିତି । ଯେତିକି ଯେତିକି ଲୋକାଳୟ ଆଡ଼କୁ ଆଗେଇ ଆସିଛି ସମତଳ ମାଟିର ସ୍ପର୍ଶ ପାଇ ଗତି ତାର ମନ୍ଥର ହେଇ ଆସିଛି, ହଜିଲା ପୁଅକୁ ଖୋଜି ପାଇବା ଆଶାରେ କି କଣ ? କାଶୀରେ ଗଙ୍ଗା ସ୍ଥିତା ଥିଲା କିନ୍ତୁ ହର୍‌କୀପୌଢ଼ୀରେ ଚଞ୍ଚଳା । ଏଇତ ପାହାଡ କାଟି ସମତଳ ଭୂଇଁ ଛୁଇଁଛି ସେ । କେଉଁ ଅନନ୍ତ କାଳରୁ ଛାତିରେ ତାର ଏଇ ବ୍ୟସ୍ତତା, ଏଇ ବ୍ୟାକୁଳତା, ତାକୁ ବିଶ୍ରାମହୀନ କରି ଦେଇଛି । ସେ ଧାଇଁ ଚାଲିଛି ସମୟରୁ ସମୟାନ୍ତର । ଯୁଗରୁ ଯୁଗାନ୍ତର । ଗଙ୍ଗା ସଙ୍ଗେ ଧାଇଁ ଆସିଛି ଗୋଟେ ବିଶ୍ୱାସ ଗୋଟେ ପରଂପରା ଗୋଟେ ନିଷ୍ଠା । ଗଙ୍ଗା ଆଉ ନଦୀ ହେଇ ନାହିଁ । ଗୋଟେ ବ୍ୟକ୍ତି ସତ୍ତା । ଗୋଟେ ଚରିତ୍ର । ଗୋଟେ ନାରୀ । ସ୍ୱର୍ଗର ନାରୀ । ଦେବୀ । ହଜାର ହଜାର ଲୋକଙ୍କର ମା'ର ଭୂମିକାରେ ଅବତୀର୍ଣ୍ଣା । କାହିଁ କେତେ ଯୁଗ ଲାଗିଯାଇଛି ନଦୀକୁ ନାରୀ ପାଲଟିବାରେ । ନାରୀ ପୁଣି ପ୍ରଶସ୍ତ ହୃଦୟା ମା ହେବାରେ ।

ହର୍‌କୀ ପୌଢ଼ୀର ସିମେଣ୍ଟ ଚଉତରାଟି ବଡ଼ କୋଳାହଳ ପୂର୍ଣ୍ଣ ହେଇ ରହିଥିଲା । ଡକାହକା, ହସଥଟ୍ଟା ମଧ୍ୟରେ ପ୍ରାୟ ଅଧିକାଂଶ ସ୍ନାନରତ । କିଏ ଅଣ୍ଡରଓ୍ୟାର ତ କିଏ ଧୋତି ଖଣ୍ଡେ ବେଢ଼େଇଛି, କିଏ ଶାଢ଼ୀଟି ଜଡେଇ ଧରିଛି ଛାତିରେ, କିଏ ପେଣ୍ଟସାର୍ଟ ପିନ୍ଧିଛି । ସେଇ ପ୍ରବହମାନ ଜଳରେ ଜଣେ ଅନ୍ୟଜଣକୁ ଜାବୁଡ଼ି ନଇଁ ପଡ଼ି ବୁଡ଼ ପକେଇଲା ବେଳେ ଆଉ କେହି ଲୋଟାଟିରେ ଲୋଟେ ଲୋଟେ ପାଣି ସଂଗ୍ରହ କରି ଦେହ ଭିଜୋଉଛି । ସିମେଣ୍ଟ ଚଉତରା ପାଖରେ ପାଣି ସେତେ ଗଭୀର

ନୁହେଁ । ଭିତରକୁ ଯାଇ କିଛି ଲୋକ ଲୁହା ଶିକୁଳାଟିଏ ଧରି ଛିଡ଼ା ହେବାକୁ ଚେଷ୍ଟା କରୁଥିଲା । ଆଣ୍ଠୁଏ ପାଣିରେ ମଧ ତା ଦେହଟା ସ୍ଥିର ହୋଇ ରହି ପାରୁନଥିଲା । ଜଳଜ ଉଦ୍ଭିଦଟେ ପରି ବେଳେବେଳେ ଦୋଳି ଖେଳୁଥିଲା ତା ଦେହ । ପ୍ରଫେସର ମହାପାତ୍ର କୂଳରେ ବସି ଗଙ୍ଗାର ପ୍ରଖରତା ଓ ଶୀତଳତା ମାପୁଥାନ୍ତି । ହାତ ତାଙ୍କର କଂପି ଉଠୁଥାଏ । ସେ ସେଇଠି ବସି, ଗୌରୀକୁ ସତର୍କ କରିବାକୁ ଯାଇ କହିଥିଲେ, ଆରେ ଗୌରୀ ସାବଧାନ ଥିବୁରେ ଶିକୁଳାରୁ ହାତ ଖସେଇବୁ ନାହିଁ । ନହେଲେ ଭାସି ଯାଇ କୋଉଠି ନା କୋଉଠି ଲାଗିବୁ ବୁଝି ହେବନାହିଁ । ଗୌରୀ ତାଙ୍କ କଥା ଶୁଣି ବୁଲିପଡ଼ି ଅନେଇ ହସିଥିଲା । ତା ହସ ସବୁ ବେଳେ ଲାଜୁଆ ଦିଶେ । ଗଙ୍ଗାର ତରଙ୍ଗ ପାଖରେ ନିଜକୁ ସମର୍ପି ଦେଇଛି, ଚେନ୍‌ଟିକୁ ଜାବୁଡ଼ି ଧରି, ଛୋଟ ମାଛଟିଏରେ ପରିଣତ ହୋଇ ଯାଇଥିଲା ଯେମିତି ।

ପ୍ରଫେସର ମହାପାତ୍ର ପାଣି ଭିତରୁ ହାତ କାଢ଼ି ଆଣିଥିଲେ । ଏଇ ମାତ୍ର ଯେମିତି ବରଫ ତରଳି ବୋହି ଯାଇଛି । ହାତ ତାଙ୍କର କାଲୁଆ ମାରି ଯାଉଥିଲା । ଗୌରୀ ଏତେ ଶୀତଳ ଜଳରେ କେମିତି ବୁଡ଼ ମାରିଚାଲିଛି କେଜାଣି । ପ୍ରଫେସର ମହାପାତ୍ର ପୁଣିଥରେ ସେଇ ଶୀତଳତା ଆଡକୁ ହାତ ବଢ଼େଇ ଦେଲେ । କିଛି ସମୟ ପରେ, ଦେହସୁହା ହୋଇ ଯାଇଥିଲା ତାଙ୍କର । ଟିକିଏ ଆଗରୁ କାଲୁଆ ମାରି ଦେଇଥିବା ଜଳ ଏବେ ମାଆର ସ୍ପର୍ଶ ପରି ନରମ ମନେ ହେଉଥିଲା । ସେ ନିଜ ଫୁଲ୍‌ପ୍ୟାଣ୍ଟକୁ ମୋଡି ପେଣ୍ଡା ପର୍ଯ୍ୟନ୍ତ ଉଠେଇଥିଲେ । ତାପରେ ଧିରେ ଧିରେ ପାଦ ବୁଡ଼େଇଥିଲେ । ଆଞ୍ଜୁଳେ ଆଞ୍ଜୁଳେ ପାଣି ଆଣି ମୁହଁରେ ଛାଟିଥିଲେ । ବେକ ଭିଜେଇଥିଲେ । ସତେ ଯେମିତି ସବୁ ଅବସାଦ ଧୋଇଯାଉଛି, ସେମିତି ମନେ ହେଉଥିଲା ତାଙ୍କୁ । ସେ ପୂର୍ବରୁ ଗଙ୍ଗା ସ୍ନାନ ପାଇଁ ପ୍ରସ୍ତୁତ ନଥିଲେ । ତାଛଡ଼ା ଗାଧୋଇବା କର୍ମଟି ସେ ଆଜି ସୁଦ୍ଧା ବନ୍ଦ କୋଠରୀ ଭିତରେ ସମାପନ କରି ଆସିଛନ୍ତି । ଛୁଆବେଳେ ବନମାଳୀ ସାହୁର ଖଳାବାରି ପାଖ କୂଅ ଚଉତରାରେ ଗାଧୋଇପାଧୋଇ ସ୍କୁଲ୍ ବାହାରୁଥିଲେ । କାର୍ତ୍ତିକ ପୂନେଇଁ ଦିନ ବୋଉ ଭୋର୍‌ରୁ ଉଠେଇ ଦେଉଥିଲା । ପୋଖରୀରେ ବୁଡ଼ ପକେଇ କଦଳୀ ବାହୁଙ୍ଗାର ଡଙ୍ଗା ଭସେଇ, ମନ୍ଦିରରେ ଦିଅଁ ଦର୍ଶନ କରି ଫେରୁଥିଲେ ସେମାନେ । ଟିକିଏ ବଡ ହୋଇଗଲା ପରେ ଆଉ କାର୍ତ୍ତିକ ପୂର୍ଣ୍ଣିମା ଭୋର୍‌ରୁ ସେ ଉଠିଲେ ନାହିଁ । ବିଭିନ୍ନ ବାହାନା କରି ବିଛଣାରେ ଶୋଇ ରହିଲେ । ବୋଉ କହେ କାର୍ତ୍ତିକମାସ ପୂଣ୍ୟ ମାସ । ଏଇ ମାସଟିକୁ ନିଷ୍ଠାରେ ମାନିବା କଥା । ମୋ ପୁଅଟା ବ୍ରାହ୍ମଣ କୂଳରେ ଜାତ ହୋଇ ମଧ କିଛି ନୀତି ନିୟମ ମାନିଲାନାହିଁ । କେଜାଣି କେମିତି ହେବ ତା ମତି ପ୍ରବୃତ୍ତି ?

ଅଳ୍ପ ଦୂରରେ ସେମାନଙ୍କ ସଙ୍ଗରେ ଆସିଥିବା ପରିଡା ବାବୁ ଓ ତାଙ୍କ ସ୍ତ୍ରୀ ପକ୍କା ଚଉତରାରେ ବସି ପ୍ଲାଷ୍ଟିକ୍ ମଗ୍‌ଟିଏରେ ମଗେ ମଗେ ପାଣିଉଠେଇ ଗାଧୋଉଥାନ୍ତି । ଅଧା ଅଧା ବୁଡ଼ି ରହିଥାଏ ତାଙ୍କ ପାଦ । ଗୌରୀ ଡାକିଲା ପରିଡା ମାଉସୀ, ମୁଁ ଧରିବି କି ଗଙ୍ଗାରେ ବୁଡ଼ ପକାଇବ ? ପରିଡା ମାଉସୀଙ୍କର ଇଚ୍ଛା ଥିଲେ ବି ସାହସ କୁଳୋଉନଥିଲା ବୋଧହୁଏ, କହିଥିଲେ: ଥାଉରେ ପୁଅ । ଆଉ କଣ ବଳ ବୟସ ଅଛି ଯେ ଏ ସୁଅରେ ଠିଆ ହୋଇ ଗାଧୋଇ ପାରିବି ? ପାଣି କି ଓହ୍ଲେଇଲେ କୁଟାଖିଅଟେ ଭଳି କୁଆଡ଼େ ଭାସିଯିବି ଯେ ଖୋଜ ଖବର ମିଳିବନି ।

ଗୌରୀ ହସିଥିଲା । ଭଲ ତ ସେମିତି ହେଲେ ମୋକ୍ଷ ପାଇଯିବ ତମେ । ପୁଣି କିଆଁ ସେ ଅଳିଆ ମସିଆ ଗାଁକୁ ଯିବ ? ପୁଣି ସେଇ କୁଢି ଗାଡ଼ିଆରେ ବୁଡ଼ ପକେଇବ ?

ପରିଡା ମାଉସୀ ରାଗିଯାଇ କହିଥିଲେ; ତୁ ସେ ଲୁହା ଶିକୁଳାଟାକୁ ଛାଡ଼ି ଦେଉନୁ । ଜୀବନ ପାଇଁ ତୋର କିଆଁ ଏତେ ଲୋଭ ମାଡ଼ି ପଡୁଛି ଯେ ।

ଲୋଭ ମାଡ଼ିବନି ? କହିଥିଲା ଗୌରୀ । ମୁଁ ବାହାସାହା ହେଇନି । ମୋ ଜୀବନଟା ଆଗକୁ ପଡିଛି ପରା ମଉଜ ମଜଲିସ୍ କରିବା ପାଇଁ । ଏବେଠୁଁ ମରିଗଲେ ମୋ ନାତି ନାତୁଣୀଙ୍କୁ ଖେଳେଇବ କିଏ ?

. ଶର୍ମିଷ୍ଠା ଉଡାରେ ଲୋକଟିଏ ଯୋଗାଡ଼ କରିଥିଲା ଯିଏ ତାକୁ ଗଙ୍ଗାରେ ସ୍ନାନ କରେଇ ଆଣିବ । ଯେ ଭିତରେ ଗୋଟେ ଦିଟା ବୁଡ଼ ପକେଇ ସାରିଥିଲା ସେ, ଲୋକଟିର ହାତ ଧରି । ଓଦା ଶାଢ଼ୀଟି ତାର ସାମାନ୍ୟ ପୃଥୁଳ ଦେହକୁ ଅଜଗରଟେ ପରି ଗୁଡେଇ ଧରିଥିଲା । ବୁଡଟିଏ ଦେବାପରେ ବାପ୍‌ରେ ବାପ୍ କହି ଉଠି ଛିଡା ହେଇ ପଡୁଥିଲା ସେ । ସ୍ଥଳଭାଗକୁ ଆସିବା ପାଇଁ ତା ମନ ଯେମିତି ବ୍ୟାକୁଳ ହେଉଥିଲା, ସେ ଟାଣିଓଟାରି ହେଇ କୂଳକୁ ଉଠି ଆସିବା ବେଳକୁ ସାଙ୍ଗରେ ଥିବା ଲୋକଟି କହୁଥିଲା ରୁହନ୍ତୁ ରହନ୍ତୁ ସାତ ବୁଡ଼ା ବୁଡ଼ି ଯିବେନା । ମେଜର ସିମେଣ୍ଟ ଚଉତରାରେ ଛିଡ଼ା ହେଇ ଲୋକଟିଏସହ ଶାସ୍ତ୍ର ଆଲୋଚନାରେ ଲାଗି ଯାଇଥିଲେ । ଠିକ୍ ଶାସ୍ତ୍ର ଆଲୋଚନା କହି ହେବ ନାହିଁ, ବରଂ ଗଙ୍ଗାକୂଳରେ ଅଧିଷ୍ଠିତ ବିଭିନ୍ନ ଦେବଦେବୀଙ୍କ ମାହାତ୍ମ୍ୟ ବିଷୟରେ ବୁଝାଉଥିଲା ଲୋକଟି । ତା କାନ୍ଧରେ ଥଳିଟିଏ ଝୁଲୁଥିଲା । ହାତରେ ଥିଲା କିଛି ରଂଗୀନ୍ ଚଟିବହି । ମେଜର ପକେଟ୍‌ରେ ହାତ ପୂରେଇ ମନିପର୍ସ ବାହାରକଲେ । ପ୍ରଫେସର ମହାପାତ୍ର ପାଣିରୁ ବାହାରି ଆସି, ମେଜରଙ୍କ ପାଖରେ ପହଞ୍ଚିଯାଇଥିଲେ । କହିଲେ, ଫସିଗଲେଟି, ଏଇ ତୀର୍ଥ ସ୍ଥାନ ମାନଙ୍କରେ ଶୋଷଣଟା ଟିକେ ବେଶି ବୁଝିଲେ । ମନା ତ କରିହେବ ନାହିଁ, ଭଗବାନଙ୍କ

ନାଁରେ ଚାନ୍ଦା ଉଠେଇଉଛନ୍ତି ଯେତେବେଳେ । ଡରଟେ ରହିବ କାଳେ ଭଗବାନ ଶୂନ୍ୟରେ ରହି ହସିବେ ପରା, ଆରେ ମୂର୍ଖ ତୁ ଯାହାକୁ ମୋର ମୋର ବୋଲି କହୁଛୁ, ସବୁତ ମୋର । ତୋତେ ମୁଁ କଣ ନ ଦେଇଛି, ଘରଦ୍ୱାର ଗାଡ଼ିଘୋଡ଼ା ବଗିଚା କ୍ଷେତ, ମଣି ମରକତ ? ସେଥିରୁ କାଣିଚାଏ ମୋ ସେବକଙ୍କୁ ଚାନ୍ଦା ଦେବାରେ ତୋର ଏତେ କାର୍ପଣ୍ୟ କାହିଁକି ?

ମେଜର ମହାପାତ୍ରଙ୍କ କଥାକୁ ସମର୍ଥନ କରି ପାରୁନଥିଲେ କି ବିରୋଧ ମଧ । ହସିଥିଲେ କେବଳ । ବହି ବିକୁଥିବା ଲୋକଟି କିନ୍ତୁ ତୁରନ୍ତ ଜବାବ ଦେବାକୁ ଯାଇ କହିଥିଲା; ଆପଣ ଦଶଟା କି ପନ୍ଦରଟା ଟଙ୍କା ଦଉଛନ୍ତି ବୋଲି, ବହୁତ ଟଙ୍କା ଦେଇ ଦଉଛନ୍ତି ଭାବୁଛନ୍ତି କାହିଁକି ? ଏତେ ଟଙ୍କା ଖର୍ଚ୍ଚ କରି ତୀର୍ଥ କରି ଆସିଛନ୍ତି, କେତେ ଧାମରେ ପାଦ ଦେଇ ଦେଇ ଆସିଛନ୍ତି ପୁଣି କେତେ ଧାମରେ ପାଦ ଦେବେ ହେଲେ ମନ ସାଫ୍ ହେଇ ପାରିଲାନି । ଆପଣମାନଙ୍କ ଧାରଣା ଏ ପଇସା ନେଇଗଲେ ମୋ ପିଲାପିଚିକା ଧରି ଚଉକସ ଖିରି ପୁରୀ ଖାଇବି । ନାହିଁ ନାହିଁ, ଗୋଟେ ବି ପଇସା ଏଥିରୁ ମୋ ଘରକୁ ଯିବନି ଆଜ୍ଞା । ସବୁ ପଇସା ଟ୍ରଷ୍ଟର । ଏଇ ଯେଉଁ ଦେଖୁଛନ୍ତି ଲୋକେ ବେଶ୍ ଶୃଙ୍ଖଳିତ ଭାବରେ ତୀର୍ଥ ଦର୍ଶନ କରି ଫେରୁଛନ୍ତି କୋଉଠି ପାଇଖାନାଟେ, କେଉଁଠି ସିମେଣ୍ଟ ଚଉତରାଟେ, କେଉଁଠି ଭାଙ୍ଗିଗଲା ଫୁଟିଗଲା, ସବୁ ପ୍ରକାର ରକ୍ଷଣା ବେକ୍ଷଣ ତ ହେଉଛି ଏଇ ପଇସାରେ । ସରକାରୀ ପଇସାରେ କଣ ସବୁ କାମ କରି ହେବ ?

ଯେତେ ଯୁକ୍ତି ଦେଖେଇଲେ ମଧ ଲୋକଟା ଯେ ମିଛ କହୁଛି, ବୁଝି ହେଉଥିଲା । ଲୋକଟିର ଗଳାର ସ୍ୱର ଏତେ ଉଚ୍ଚ ଥିଲା ଯେ ଗେରୁଆ ବସ୍ତ୍ର ପିନ୍ଧା କପାଳରେ ଲମ୍ବା ସିନ୍ଦୁର କଲି ଟାଣିଥିବା ଲୋକଟେ ତା କଥାବାର୍ତ୍ତାରେ ଆକର୍ଷିତ ହେଇ ଚାଲି ଆସିଥିଲା । ଲୋକଟିର ଆଖି ଲାଲ ଲାଲ୍ ଦିଶୁଥିଲା । ମେଜର ଏ ପ୍ରକାର ପରିସ୍ଥିତିରୁ ମୁକୁଳିବାକୁ ଚାହୁଁଥିଲେ, ତେଣୁ ପାଦେ ପାଦେ କରି ଆଗେଇ ଯାଉଥିଲେ । ଗେରୁଆବସ୍ତ୍ର ପିନ୍ଧା ଲୋକଟି କହିଥିଲା କଳିଯୁଗ, କଳିଯୁଗ ସବୁ ଉପର ଦେଖାଣିଆ । ହିନ୍ଦୁଧର୍ମର ପତନର ସମୟ ଆସିଯାଇଛି ଜାଣ । ଦେବ ବ୍ରାହ୍ମଣର ପୂଜା ଆଉ ନାହିଁ । ମେଜର ପ୍ରଫେସର ମହାପାତ୍ରଙ୍କ ହାତଟାକୁ ମୁଠେଇ ଟାଣି ଟାଣି ନେଇ ଯାଇଥିଲେ । ଦିହେଁ ଖଣ୍ଡେ ଦୂର ଗଲାପରେ ମେଜରଙ୍କ ମୁହଁରୁ କଥା ବାହାରିଥିଲା । ରକ୍ଷା, ରକ୍ଷା । ପଟିବା ବଜାରରେ ଷଣ୍ଢ ସାମ୍ନାରେ ରାତି ଅଧରେ କୁକୁର ସାମ୍ନାରେ କି ତୀର୍ଥଜାଗାରେ ଏଇ ଲୋକ ଗୁଡ଼ାକଙ୍କ ସାମ୍ନାରେ ପଡ଼ିଗଲେ ଜାଣ ବିପଦ ମାଡ଼ି ଆସିଲା । କି ଦରକାର ପ୍ରଫେସର ଏଗୁଡ଼ାକଙ୍କ ସଂଗେ ଯୁକ୍ତି କରି ? ଏଠି ଧର୍ମ ବ୍ୟବସାୟ ପରା

ଫେଣାଫେଣି । କିଏ ଜାଣେନି ଏଗୁଡାକୁ ? ଦଶବର୍ଷର ଏତେ ଟିକେ ଝିଅ ପରା ଜାଣେ ।

ପ୍ରଫେସର ମହାପାତ୍ର କହିଥିଲେ ଏମିତି ଘଟଣାଟେ ମୋ ସଙ୍ଗେ ଘଟିଥିଲା ପୁରୀରେ । ମୋର ଏନ୍.ଆର୍.ଆଇ ବଂଧୁଟିଏ ଅଛି କାଲିଫର୍ଣ୍ଣିଆରେ । ଆମ ଏଇ ମାଟିର ପିଲା । ବହୁବର୍ଷ ହେଲା ବାହାରେ ରହି ଆଦବ୍ କାୟଦା ଯାହା ଟିକେ ବଦଳି ଯାଇଛି । ସେପଟ ଜଳବାୟୁ ପାଇଁ ଚେହେରା ଆଉ ରଂଗ ଫିଟିଯାଇଛି । ବ୍ରାହ୍ମଣ ଘର ପିଲା ପଇତା ଏବେ ସୁଦ୍ଧା କାନ୍ଧରେ ପଡ଼ିଛି ତାର । ଦି ଚାରିବର୍ଷ ତଳର କଥା । ଆମେ ସାଙ୍ଗ ହୋଇ ପୁରୀ ଯାଇଥାଉ । ପଣ୍ଡାଟେ ମୋତେ ରତ୍ନ ସିଂହାସନ ଛୁଁଏଇ ଆଶିର୍ବାଦ କଲା । ମୁଁ କାଳିଆକୁ ମାଗିବି କଣ । ବେଳେ ବେଳେ ତାକୁ ମହାପ୍ରୁରୁ ଲାଗେନି ବରଂ ବଂଶ ବିରାଦରୀ ଲୋକ ପରି ଲାଗେ, ଯା ହେଉ ମୋ ସେ ସାଙ୍ଗଟି କାଛକୁ ଆଉଜି ପୁରାପୁରି ନିଶ୍ଚଳ ହୋଇ ଠିଆ ହୋଇଥାଏ । ପଣ୍ଡାଟି ତାକୁ ଡାକିଲା, ଚାଲ ବାବୁ ରତ୍ନ ସିଂହାସନ ଛୁଇଁବ । ମୋ ସାଙ୍ଗଟି ଗଲା ନାହିଁ କି କିଛି କହିଲା ନାହିଁ । ପଣ୍ଡାଟି ଛାଡ଼ିବାର ନୁହଁ । ତା ହାତଟି ଧରି ଟାଣିବା ବେଳେ, ତା ଭ୍ରୁକୁଟୀକୁ ଦେଖି ତାଚ୍ଛଲ୍ୟ କରିଥିଲା । ହଁ ରତ୍ନ ସିଂହାସନ କାହିଁକି ଛୁଇଁବ, ସେଗୁଡାକରୁ କଣ ମିଳିବ ଯେ । ତମେ ମନ୍ଦିର ବାହାରେ ବୁଲିଲେ କେତେ ଲଙ୍ଗଳା ମୂର୍ତ୍ତି ଦେଖିବ । ଦିହ ଗରମ ହେଇଯିବ ତମର । ବହୁତ ବଡ ଝାମେଲାଟେ ହେଇ ଯାଇଥାନ୍ତା ସେଦିନ ଯଦି ମୁଁ ମୋ ସାଙ୍ଗର ହାତ ଧରି ବାହାରକୁ ଟାଣି ଆଣି ନଥାନ୍ତି ।

ମେଜର ହସି ଦେଇ କହିଥିଲେ, ହଁ ଯେମିତି ଆଜି ହେବାକୁ ଯାଉଥିଲାଟି ।

ଶର୍ମିଷ୍ଠା ଏ ଭିତରେ ଲୁଗାପଟା ପାଲୋଟି ଶୁଖିଲା ଲୁଗା ପିନ୍ଧି ନେଇଥିଲା । ପାଖରେ ଆସି ହାଜର ହେଇଯାଇ ପଚାରିଥିଲା, ବାପା ତମେ ଗଙ୍ଗା ସ୍ନାନ କରିଲ ନାହିଁ ? ମୁଁ ସାତ ବୁଡ଼ ପକେଇଲି । ବଡ ଥଂଡା ପାଣି । ମନ ଦେହ ଶୀତଳ ହେଇଗଲା ପରି ଲାଗୁଛି । ଏତେ ବାଟ ଆସି ସ୍ନାନ ନ କରି ଫେରିଯିବ ଏ କେମିତି କଥା ? ଚାଲ ମୁଁ ତୁମ ହାତ ଧରିବି । ଏଇ ବାଟରେ ହେଉପଛେ ଟିକେ ପାଣି ଛିଞ୍ଚି ହେଇପଡ ।

ମେଜର ଯେମିତି କୁନି ପିଲାଟେ, ମୁଣ୍ଡ ହଲେଇ ହଲେଇ କହିଲେ, ନା, ନା, ମାଆ ମୋତେ ତୁ ସେ ଥଂଡା ପାଣିରେ ଗାଧୋଇବା କଥା କହନା । ମୁଁ ଠିକ୍ ଅଛି । ଶର୍ମିଷ୍ଠା ମେଜରଙ୍କ ହାତ ଧରି କହିଥିଲା, କିଛି ହେବନି ଚାଲ । କେଉଁ ଜନ୍ମରେ ପାପ କରିଥିଲ ବୋଲି ତ ଦିଟା ଜନ୍ମ ରୋଗିଣୀ ଝିଅ ଜନ୍ମ ଦେଲ । ଆଉ ଯାହା ପାପ ଅଛି ଧୋଇ ହେଇଯାଉ ।

ପ୍ରଫେସର ମହାପାତ୍ରଙ୍କର ଛାତିଟା ଧପ୍ କରି ରହି ଯାଇଥିଲା ଶର୍ମିଷ୍ଠାର କଥା

ଶୁଣି । ଛି, ଗୋଟେ ବୁଢ଼ାବାପାକୁ କଥା କହିବାର ଢ଼ଙ୍ଗ ଏଇଟା ? ମୂର୍ଖଟେ ନା କଣ, ପାଠ ପଢ଼ୁଉଛି ଗୋଟେ କଲେଜରେ, ଗୋଟେ ଶିକ୍ଷିତା ନାରୀ ହେଇ ବାପାଙ୍କୁ ସମ୍ମାନ ଦେଇ ଜାଣିନି । କେତେ ବାଧିଥିବ ମେଜରଙ୍କୁ କଥାଟି, ସେ ମନେ ମନେ କଳିନେଲେ । ଦେଖିଲେ, ଶିଶୁଟେ ମୋ ହାତ ଧରି ଚାଲିଲା ପରି ମେଜର ଶର୍ମିଷ୍ଠାର ହାତ ଧରି ପାହାଚରେ ଓହ୍ଲେଇ ଯାଉଥିଲେ । ଗୌରୀ ସେ ପର୍ଯ୍ୟନ୍ତ ଲୁହା ଶିକୁଳାକୁ ଧରି ବ୍ରହ୍ମକୁଣ୍ଡରେ ପହଁରି ପହଁରି ଉତ୍ପାତ କରୁଥିଲା । ପ୍ରଫେସର ମହାପାତ୍ର ଆଉ ଦିଟା ପାହାଚ ଓହ୍ଲେଇ ପଡ଼ି ଗୌରୀକୁ ଡାକ ଦେଲେ । ବହୁତ ହେଇଗଲା ତୋ ଗାଧୁଆ ଏଥର ପଳେଇ ଆସ । ତୋ ଦେହ ଖରାପ ହେଲେ ମୁଁ ପୁଣି ମରିଯିବିଟି । ମୋ କାମ ଗୁଡ଼ା ପୁଣି କିଏ କରିବ କହିଲୁ ? ଧିରେ ଧିରେ ଚେନ୍‌କୁ ଧରି ଧରି କୂଳକୁ ଆସିଲା ଗୌରୀ । ପାଣିରେ ବୁଡ଼ି ବୁଡ଼ି ଆଖିଗୁଡା ତାର କୁମ୍ଭାଟୁଆ ପରି ଲାଲ୍ ଦିଶୁଥିଲା ।

ସମସ୍ତଙ୍କ ଗଙ୍ଗା ସ୍ନାନ ହେଇଗଲା ନା କଣ ? ଆସୁ ଆସୁ ପଚାରିଥିଲା ସେ । ସେ ମାଉସୀ ହେରିକା କୁଆଡ଼େ ଗଲେ କାହିଁତ ଦେଖୁନି ? ଖବର କାଗଜର ବରୁଣ ବାବୁଙ୍କୁ ମୁଁ ପ୍ରଥମରୁ ଦେଖିନାହିଁ ।

ସବୁ ଏଇଠି କୋଉଠି ବୁଲୁଥିବେ ତୁ ଝଟ ପୋଛିପାଛି ହେଲୁ । ଏ ଭିତରେ ମେଜର୍ ଓ ଶର୍ମିଷ୍ଠା ମଧ ପହଞ୍ଚ ଯାଇଥିଲେ । ମେଜର୍ କହିଲେ ବରୁଣ ବାବୁ ଆଉ ଆସିଲେ ନାହିଁକି ? ମୋତେ କହୁଥିଲେ ଆପଣ ମାନେ ଚାଲନ୍ତୁ ମୁଁ ଆସୁଛି । କିନ୍ତୁ କାହିଁ ତାଙ୍କୁ ଦେଖୁନାହିଁତ । ପ୍ରଫେସର ମହାପାତ୍ର କହିଥିଲେ, ବାହାରକୁ ଆସିଛନ୍ତି ସଭିଏଁ ଏକାଠି ଗୋଟିଏ ଜାଗାରେ ରହି କାମ କଲେ ସୁବିଧା । କିନ୍ତୁ ଦେଖିବେ କିଏ ଜିନିଷ କିଣୁଛି । କିଏ ମହାପୁରୁ ଦର୍ଶନ କରୁଛି । ଜଣେ ଆଉ ଜଣଙ୍କ ଠୁଁ ବିଚ୍ଛିନ୍ନ । ଅଯଥା ଅପେକ୍ଷା କରି କରି ସମୟ ନଷ୍ଟହୁଏ ବେଶୀ ।

କାହାକୁ ଅନେଇବା ଦରକାର ନାହିଁ ଗଙ୍ଗା ମନ୍ଦିର ନିକଟରେ ଭେଟ ହେଇଯିବ ସମସ୍ତଙ୍କର ।

ଶର୍ମିଷ୍ଠା କହିଥିଲା, ବରୁଣ ବାବୁଙ୍କ ଚାଲିଚଳନ ବଡ ଅଦ୍ଭୁତ ମନେ ହୁଏନା ବାପା ? ସେଦିନ ସେ କହୁନଥିଲେ, ମୋର ଏ ତୀର୍ଥଫୀର୍ଥରେ କୌଣସି ଆଗ୍ରହ ନାହିଁ । ଅସଲରେ ମୁଁ ଘରୁ ପାଦ କାଢ଼ିଛି କାହିଁକି ଜାଣନ୍ତି, ଅନେକ ଦିନୁ ମୁଁ ଲକ୍ଷ୍ୟ କରିନି ଆଉ କେତେ ଜୀବନୀଶକ୍ତି ମୋ ଭିତରେ ବଂଚି ରହିଛି । ବାହାରକୁ ବାହାରିଲେ ହିଁ ଜଣାପଡ଼ିବ, ମୁଁ କେତେ ଚାଲି ପାରୁଛି, କେତେ ଦୌଡ଼ି ପାରୁଛି, ପାହାଚ ଉଠିବାର ଶକ୍ତି ଏବେ ଅଛି କି ନାହିଁ, ବାହାର ଖାଇବା ହଜମ ହେଉଛି କି ନାହିଁ । ଯାତ୍ରା ଜନିତ

କ୍ଲାନ୍ତି ସହି ପାରୁଛି ତ ? ଯାହା ସବୁ ମୁଁ ସହଜରେ କରିପାରିବି । ସେଇଥିରୁ ଅନୁମାନ କରିନେବି ମୋ ଭିତରର ଜୀବନୀଶକ୍ତି କେତେ । ବାପା ଗିନିସବୁକ୍‌ରେ ଜୀବନୀଶକ୍ତିର ୱାର୍ଲଡରେକର୍ଡ ଅଛି କି ?

ପ୍ରଫେସର ମହାପାତ୍ରଙ୍କୁ ବହୁତ ବିରକ୍ତ ଲାଗୁଥିଲା ଶର୍ମିଷ୍ଠାର କଥାବାର୍ତ୍ତା ଗୁଡା । ପାଞ୍ଚ ଛଅ ବର୍ଷିଆ ଝିଅଟେ ପରି ପ୍ରତି ମୁହୂର୍ତ୍ତରେ ବାପା ବାପା ହେଉଛି । ଏଇଟା କୋଉଠି ପାଠ ପଢ଼ଉଛି ନା ଛତୁ ମ । ମୂର୍ଖ । ଜୀବନୀଶକ୍ତି, ମନେ ମନେ ହସିଥିଲେ ପ୍ରଫେସର ମହାପାତ୍ର । କେବେ ସେ ନିଜର ଜୀବନୀଶକ୍ତି ସଂପର୍କରେ ଭାବି ନାହାନ୍ତି କି କଳି ନାହାନ୍ତି । ଜୀବନୀଶକ୍ତି ଥିଲେ ଯେ ଜଣେ ଦୀର୍ଘଦିନ ଜୀଇଁଯିବ ଏମିତି ଗ୍ୟାରେଣ୍ଟି କିଏ ଦେବ ? ତାଛଡ଼ା ଆଉ ଥରେ କୋଉ ସଂସାର ବସେଇବାର ଥାଏ ଯେ କେତେ ବଳ ବୀର୍ଯ୍ୟ ଅଛି ତାକୁ ମାପିବ ? ଜୀବନୀଶକ୍ତି ଯେ କେଉଁ ନଖକୋଣରେ ଶେଷ ଯାଏ ଲଟକି ଥାଏ ତାକୁ କହି ହେବ ନାହିଁ । ବାପା କଣ କମ୍ ଭୋଗିଛନ୍ତି ସେଥିପାଇଁ ? ଜୀବନଟାକୁ ଯା କହିଲେ ଯାଉନଥିବ । ବାଳମୂଳରେ କି ନଖକୋଣରେ କୋଉଠି କେଜାଣି ଲୁଚିବସି ଦହଗଞ୍ଜ କରୁଥିବ । ପଚଉଥିବ, ସଢଉଥିବ । ଟାଣି ଘୋଷାଡି ନଇନୟାନ୍ତ କରିଦେଉଥିବ ହେଲେ ଯା, ଚାଲି ଯା କହିଲେ ଯାଉ ନଥିବ ।

ପ୍ରଫେସର ମହାପାତ୍ର ପାହାଚେ ପାହାଚେ କରି ଓହ୍ଲେଇ ଯାଉଥିଲେ ତାଙ୍କ ପିଲାଦିନ ଆଡକୁ । ଗୋଟେ ଖଳାବାରି ଘରେ ତାଙ୍କ ଶୈଶବ ବିତିଥିଲା । ଘରଟି ଟିକେ ଅଲଗା ହେଇ ରହିଥିଲା । ପାଖ ପଡୋଶୀ ବୋଲି କେହି ନଥିଲେ ସେଇଠି । ଅମରୀଇଟିର ଅପନ୍ତରା ଖଣ୍ଡେ ଲାଗିଥିଲା ଘରପଛ ପାଖକୁ । ବାପା ସେଇଠି ତାଙ୍କ ଚାଟଶାଳୀ ଖୋଲିଥିଲେ । ଶରତ ଅବଧାନ ନାଁରେ ପରିଚିତ ଥିଲେ ଆଖପାଖ ସାହି ପଡ଼ିଶାରେ । ଭୋର୍‌ରୁ ଉଠୁଥିଲେ । କାନ୍ଧରେ ଗାମୁଛା ପକେଇ, ପାଦରେ କଠଉ ଗଳେଇ ବାହାରି ଯାଉଥିଲେ । ସେ ବାହାରିଗଲା ବେଳେ କବାଟର ଶିକୁଳି ଝଣ୍‌ଝାଣ ହେଇ ଶୁଭୁଥିଲା କେବଳ । ସେ ଶବ୍ଦ ଶୁଣି ବୋଉ ନିଦ ଭିତରୁ ପଚାରୁଥିଲା ଗାଧୋଇ ବାହାରିଲ ? ବାପା ଜବାବ୍ ଦଉନଥିଲେ କି, ବାପାଙ୍କ ଜବାବ୍‌କୁ ବୋଉ ଅପେକ୍ଷା କରୁନଥିଲା । ଶାସନ ପୋଖରୀ ଟିକିଏ ଦୂରରେ ଥିଲେ ବି ବାପା ସେଇଠିକୁ ଯାଉଥିଲେ । ଫେରିବା ବାଟରେ ଠାକୁର ପୂଜା ଲାଗି ଫୁଲତୋଳି ଆଣୁଥିଲେ ସେ । ଘରକୁ ଫେରି ଚନ୍ଦନ ଘୋରି ଘଣ୍ଟି ବଜେଇ ଠାକୁର ପୂଜା କଲାବେଳକୁ ବୋଉ ଉଠୁଥିଲା । ବାପା ନିର୍ମାଲ୍ୟ ପାଇ, ଝାଟି କାଠି ଜାଳି ବାରଣ୍ଡା ଚୁଲିରେ ନାଲି ଚା ଟିକେ ତିଆରି କରୁଥିଲେ । ବୋଉ ତାଙ୍କୁ ହଲେଇ ହଲେଇ ଉଠଉଥିଲା ଉଠ୍ ବାପା ସକାଳ ହେଲା ପାଠ ପଢ଼ିବୁ ପରା । ସେ ଭିଡ଼ିମୋଡ଼ି ହୋଇ ଅଳସ ଭାଙ୍ଗି ଉଠୁଥିଲେ ।

ବୋଉ ଅଗଣାରେ ଗୋବର ପାଣି ଛାଟୁଥିଲା, କଞ୍ଚା ସଉପ ଉଠେଇ ରଖୁଥିଲା । ବାପା ନାଲି ଚା ଟିକେ ଗିଲାସରେ ଛାଣି, କାଛରେ ଆଉଜି ଫୁଙ୍କି ଫୁଙ୍କି ପିଉଥିଲେ । ସେ ନିମ୍ବକାଠି ଚୋବେଇଲା ବେଳକୁ ବାପା ତାଙ୍କ ଧୋତୀ ଓ ଗେଂଜି ପିନ୍ଧି କଠଉ ହଳକ ମାଡ଼ି ବାହାରି ଯାଉଥିଲେ । ସେତେବେଳେ ବାପା ବହୁତ ଡେଙ୍ଗା ଆଉ ମୋଟା ମନେ ହେଉଥିଲେ । ସତେ ଯେମିତି ତାଙ୍କ ମୁଣ୍ଡ ଆକାଶକୁ ଲାଗିଛି । ଛାତିଟା ଗୋଟେ ଖେଳ ପଡ଼ିଆଠୁଁ ବେଶି ଚଉଡା । ବାପା ବାହାରି ଯାଉଥିଲେ ଯେ ମହାନ୍ତି ସାହି ପାଟରା ସାହି, ପାଇକ ସାହି ହେଇ ଫେରୁଥିଲେ ଘରକୁ । ତାହା ତାଙ୍କ ପ୍ରାତଃ ଭ୍ରମଣ ନଥିଲା । ଅସଲରେ ସେ ପ୍ରତି ଘର ସାମ୍ନାରେ ଡାକ ଦେଇ ଦେଇ ଯାଉଥିଲେ । ଗୋଟେ ଗୋଟେ ଖଞ୍ଜାରୁ ତାଙ୍କର ପାଞ୍ଚୋଟି ସାତଟି କରି ଛାତ୍ରଛାତ୍ରୀ ବାହାରି ଯାଉଥିଲେ । ତେଣୁ ଡାକରା ମଧ୍ୟ ସେହିପରି ଥିଲା । ଆରେ କୁନି, ମୁନି, ରୁନି ବାବୁନି କିମ୍ୱା ରଞ୍ଜୁ, ମଞ୍ଜୁ, ସଞ୍ଜୁ ଉଠିଲ କିରେ । ବାପା ଗୋଟେ ଘେରା ମାରି ଫେରିଲା ବେଳକୁ ପ୍ରାୟ ଅଧା ଅଧି ପିଲା ବହିବସ୍ତାନି ଧରି ପହଞ୍ଚିଯାଇଥାନ୍ତି । ବାପା ଥରେ ଖଟୁଲିରେ ବସି ଗଲାପରେ ଯିଏ ପହଞ୍ଚେ ତା ହାତ ପାପୁଲିରେ ବେତମାଡ ପଡେ । ମାଡ଼ ଖାଇ ଗୋଟେ ଗୋଟେ ପିଲା ବୋଉଲୋ ବାପାଲୋ କହି ରଡ଼ି ଛାଡ଼ନ୍ତି । ବାପା ସମସ୍ତଙ୍କୁ ବାଡେଇଥାନ୍ତି କିନ୍ତୁ ତାଙ୍କୁ କେବେ ବାଡାନ୍ତି ନାହିଁ । ବୋଉ ବହୁ ଦିଅଁ ଦେବତା କରି ପାଇଥିବାରୁ ବେତ ମାଡ କାହିଁକି ବାପା ବୋଉ ଭୟରେ ଛୋଟ ଚାପୁଡାଟିଏ ସୁଦ୍ଧା ଦେବାକୁ ସାହସ କରନ୍ତି ନାହିଁ ।

ପୁରା ଘରଟା କମ୍ପି ଉଠୁଥିଲା ପଣିକିଆ ଘୋଷାରେ । ବାପା ବଡପାଟିରେ ଡାକ ଦେଉଥିଲେ ଦୁଇକେ ଦୁଇ.. ପିଲା ସମ୍ମିଳିତ ଭାବେ ପାଳି ଧରୁଥିଲେ । ଯୋଗ, ବିୟୋଗ, ମଧୁବାବୁଙ୍କ ବର୍ଣ୍ଣବୋଧ ସବୁ ବଡ ପାଟିରେ ଘୋଷା ହେଉଥିଲା । ସବୁଠୁଁ ଶେଷରେ ହେଉଥିଲା ଶ୍ରୁତଲିଖନ । ପିଲା ପିଛା ଦରମା ଥିଲା ଦଶଟଙ୍କା । ଯା ଛଡ଼ା ହପ୍ତା ମଧ୍ୟ ଦେବାକୁ ପଡୁଥିଲା । ସମସ୍ତଙ୍କୁ ପାଳି କରି । ଯେଉଁଦିନ ଯାହାକୁ ବାପା କହୁଥିଲେ ସେ ତତ୍‌କ୍ଷଣାତ୍ ତା ଘରକୁ ଯାଇ, ଚାଉଳ, ଡାଲି, ଆଳୁ କି ବାଇଗଣ କଖାରୁ ହଉ କି କଲରା ହେଉ ନେଇ ଆସୁଥିଲା । ଖାଲି ସେତିକି ନୁହେଁ, କାଠ ଦିଖଣ୍ଡ ମଧ୍ୟ ସାଙ୍ଗରେ ଆଣିବା ନିୟମ ଥିଲା । ଚାହାଳୀ ଛୁଟି ହେଲା ବେଳକୁ ଏଗାରଟା ବାଜୁଥିଲା । ଏ ଭିତରେ ବୋଉ ଚାଉଳ ଡାଲି ପରିବା ଭିତରପଟ ବାରଣ୍ଡାକୁ ନେଇ ରନ୍ଧାବଢ଼ା କରି ପକଉଥିଲା । ଯେଉଁ ପିଲାଗୁଡା ସ୍କୁଲରେ ନାଁ ଲେଖେଇ ସାରିଥିଲେ ସେମାନେ ସାଢ଼େ ନଅଟାରେ ଛୁଟି ହେଇ ଘରକୁ ଯାଉଥିଲେ । ତାଙ୍କର ମଧ୍ୟ ଚାହାଳୀ ପାଠ ସରି ସ୍କୁଲରେ ନାଁ ଲେଖା ହେଇ ସାରିଥିଲା । ସେ ସାଢ଼େ ନଅଟାରେ ଗାମୁଛା

ଖଣ୍ଡେ ଗୁଡେଇ, ଖଳାବାରି କୂଅ ପାଖେ ପାଣି ଦି ଗରା ଓଜାଡ଼ି ହେଇପଡ଼ି ବୋଉ ରାନ୍ଧିଥିବା ପାଳି ଚାଉଳର ଭାତ ତର୍କାରୀ ଖାଇ ସ୍କୁଲକୁ ବାହାରି ଯାଉଥିଲେ । ମାଷ୍ଟର ଘର ଛୁଆ ହୋଇଥିବାରୁ କି କଣ ସରସ୍ୱତୀ ବିଦ୍ୟାଦାନରେ କାର୍ପଣ୍ୟ କରି ନଥିଲେ ତାଙ୍କ ପାଇଁ । ଦେଖାହେଲେ କହୁଥିଲା ନାତିଆରେ ତୁ ପାଠପଢ଼, ହାକିମ ହବୁ ।' ମାଟ୍ରିକ୍ ପାସ୍ ପରେ ଯେତେବେଳେ ସେ କଲେଜରେ ପାଠ ପଢ଼ିବାକୁ ଚାହିଁଲେ, ବାପା ମନା କରିପାରିଲେ ନାହିଁ । ଯଦିଓ ଏତେ ସୀମିତ ସମ୍ବଳରେ ତାଙ୍କୁ ବାହାରକୁ ଛାଡ଼ିବା ସମ୍ଭବ ନଥିଲା, ତଥାପି ବାପା ମାଗିଯାଚି, ବନମାଳୀ ସାହୁଠୁ ସାହାଯ୍ୟ ନେଇ ବାହାରକୁ ଛାଡ଼ିଥିଲେ । କଲେଜ୍‌ରେ ପାଠପଢ଼ା ସାଙ୍ଗକୁ ଦି ଚାରିଟା ଟ୍ୟୁସନ୍ ମଧ ଧରିଥାନ୍ତି ସେ । କୌଣସିମତେ ଚଳିଯାଉଥିଲା ତାଙ୍କର । ମେସ୍‌ରେ ତାଙ୍କୁ ଅପେକ୍ଷାକୃତ କମ୍ ଟଂକା ଦେବାକୁ ପଡୁଥିଲା । ଅନ୍ୟ ସାଙ୍ଗ ମାନଙ୍କ ତୁଳନାରେ ସେ କମ ଟଂକା ଦେଇଥିଲେ ଗୋଟେ ସର୍ତ୍ତରେ । ତା ଥିଲା, ନିୟମିତ ମେସ୍‌ର ରନ୍ଧା ବଢ଼ା ସେ ହିଁ କରିବେ । ଆପତ୍ତି ନଥିଲା ତାଙ୍କର । ଆପତ୍ତି କରିଥିଲେ ବି ଆଉ କଣ କରିପାରିଥାନ୍ତେ ସେ । ତାଙ୍କ ପାଖରେ ତ ଆଉ କୌଣସି ଉପାୟ ନଥିଲା ଯା ଛଡ଼ା ପାଠପଢ଼ା ପାଇଁ ବହୁତ କଷ୍ଟ ଉଠେଇବାକୁ କି କଣ, ସେ ପାଠ ପ୍ରତି ଅତ୍ୟଧିକ ଯତ୍ନବାନ୍ ଥିଲେ । ବେଶ୍ ସଫଳତାର ସହ ସେ ଉତ୍ତୀର୍ଣ୍ଣ ହେଇ ଯାଇଥିଲେ ପ୍ରତିଟି ଶ୍ରେଣୀ । ଏମିତିକି ବୃତ୍ତି ପାଇ ବିଦେଶ ଯିବାର ସୁଯୋଗ ମିଳିଥିଲା ତାଙ୍କୁ ।

ତାଙ୍କ ବିଦ୍ୟା, ବୁଦ୍ଧି ସାର୍ଟିଫିକେଟ୍‌ର ଗାରିମା ଦେଖି ପ୍ରଭାବିତ ହେଇଥିଲା ସୁରଭି । ଦୁହିଁଙ୍କର ଭେଟ ହେଉଥିଲା, ରବିବାରିଆ ପାଠଚକ୍ରରେ । ଆଧ୍ୟାତ୍ମମାର୍ଗର ବିଭିନ୍ନ ଆଲୋଚନା, ଯୋଗାସନ ଠିକ୍ ବାଟରେ ଚାଲିଥିଲା । ସାଙ୍ଗକୁ କଅଁଳ ଦୁବଘାସ ଭଳି ଅଙ୍କୁରି ଉଠିଥିବା ପ୍ରେମ ସବୁଜ ରଂଗ ବିକଶିତ କରିଥିଲା । ସୁରଭି ମଧ ଥିଲା । ତାଙ୍କ ପରି ଜଣେ ନିମ୍ନ ମଧବିତ୍ତ ପରିବାର ଝିଅ । ଡାକ୍ତରୀ ପଢିବା ପାଇଁ ବେଶ୍ କଷ୍ଟ ଉଠେଇବାକୁ ପଡିଥିଲା ତାକୁ । ପ୍ରଫେସର୍ ମହାପାତ୍ରଙ୍କୁ ମନେହେଇଥିଲା, ସେ ହିଁ କେବଳ ତାଙ୍କର ପ୍ରକୃତ ସାଥୀ ହେଇ ପାରିବ । ଦୁହେଁ ବାହା ହେଇଥିଲେ । ବଡ ନିରାଡମ୍ବର ଭାବରେ ସଂସାର କରିଥିଲେ । ଦିହେଁ ଚାକିରିଆ ହେଲେ ଯେଉଁଧରଣର ଛୋଟମୋଟ ଅସୁବିଧା ଆସେ ସେଗୁଡିକ ଦିହେଁ ମୁଣ୍ଡ ଉଠେଇ ସାମ୍ନା କରିଥିଲେ । ଏ ସହରରୁ ସେ ସହର, ସେ ସହରରୁ ଏ ସହର ବଦଳି ହେଉଥିଲା । କେବେ ବିରହରେ କେବେ ଏକତ୍ର ଜୀବନ ବିତେଇବାକୁ ପଡୁଥିଲା । ଶେଷକୁ ୟୁନିଭର୍ସିଟିକୁ ଆସିବା ପରେ ସ୍ଥାୟୀ ଜୀବନଟେ ବିତେଇଥିଲେ ସେ । ସ୍ଥାୟିତ୍ୱ ବୋଧ ମଣିଷକୁ ବେଶି ସ୍ଥିତି ସଚେତନ କରେ । ୟୁନିଭରସିଟିକୁ ଆସିବା ପରେ ଜାଗା କିଣିବା, କୋଠା

ତୋଳିବା ନିଶା ଲାଗିଥିଲା ତାଙ୍କୁ । ଯେତିକି ଯେତିକି ପାକଳ ହେଉଥିଲା ଚମଡା, ସେତିକି ଜ୍ଞାନ ଜାଲରେ ଛନ୍ଦି ହେଉଥିଲେ ସେ । କ୍ରମଶଃ ତାଙ୍କୁ ପୁରୁଣା ଦିନର ପାଳି ଚାଉଳ ଭାତ, ଚାହାଳୀରେ ବିତେଇଥିବା କୈଶୋର, ସ୍ୱପ୍ନ ଦେଖୁଥିବା ଯୌବନ ସର୍ବୋପରି ସୁରଭି ସହ ପାଠଚକ୍ର କେନ୍ଦ୍ରରେ ବିତେଇଥିବା ମଧୁର ଦିନ ମାନ ପୂର୍ବଜନ୍ମର ଘଟଣା ପରି ପାଶୋରା ହେଇ ଯାଉଥିଲା । ଅଲଗା ଏକ ସାମାଜିକ ଷ୍ଟାଟସ୍ ତାଙ୍କୁ ମୁଗ୍ଧ ଅଥଚ ଅସନ୍ତୁଷ୍ଟ ମଣିଷ କରି ଗଢି ତୋଳିଥିଲା ।

କସ୍ମିନ୍ କାଳେ ବାପା ଚାହିଁନଥିଲେ ତାଙ୍କ ପାଖରେ ଆସି ରହିବା ପାଇଁ । ତାଙ୍କ ଚାଟଶାଳୀ ତାଙ୍କର ସର୍ବସ୍ୱ ଥିଲା । ଗର୍ବବୋଧଟେ ଥିଲା ତାଙ୍କର ଚାଟଶାଳୀକୁ ନେଇ । ବାପା ଜିନ୍ ଜେନେଟିକ୍ସ ଡି.ଏନ୍.ଏ., ଆର. ଏନ୍. ଏ. କଣ ଜାଣିନଥିଲେ । ଆଟମ୍ ମଲିକଲ୍ କି ବିଗ୍‌ବ୍ୟାଙ୍ଗ ଥିଓରୀ ବିଷୟରେ ସେ ଗପୁନଥିଲେ କେବେ, ଆରିଷ୍ଟୋଟଲ୍ କି ଲିଓନାର୍ଡୋ ଦ ଭିନ୍ସିର ନାଁ ଶୁଣି ନଥିବେ କେବେ । ଜାଣି ଜାଣି ଚାଇନା ପାକିସ୍ଥାନକୁ ଶତ୍ରୁ ଦେଶ ବୋଲି ଜାଣିଥିଲେ ସେ । ଦିଲ୍ଲୀ ରାଜନୀତି ଓ ଓଡିଶା ରାଜନୀତି ବିଷୟରେ କିଛି ଆଳାପ ଆଲୋଚନା କରୁଥିଲେ ବନମାଳୀ ସାହୁର ଦୋକାନରେ । ତାଠୁଁ ଅଧିକ ନଥିଲା ତାଙ୍କର ବ୍ୟାପ୍ତି । ତଥାପି କହୁଥିଲେ ମଣିଷ ମସ୍ତିଷ୍କରେ ପ୍ରଥମ ଲଙ୍ଗଳମୂନ ବାଜେ ତାଙ୍କ ପାଖରେ । ସେ ମାଟି ପ୍ରସ୍ତୁତ କରନ୍ତି ମଞ୍ଜି ବୁଣନ୍ତି । ସେ କହୁଥିଲେ ଅସୁବିଧା କଣ ? ଗୋଟିଏ ଅନୁଷ୍ଠାନ ଚାଲିଛି ଓ ତାକୁ ଚଳେଇବା ପାଇଁ ନା ଆଉ ଦଶଟା ଲୋକ ଦରକାର ପଡୁଛି, ନା ଟେବୁଲ୍ ଚଉକି । ନା ଫାଇଲ୍ ପତ୍ର ନା କିରାଣୀ । ଘରେ ତାଲା ପକେଇଲେ ଲୋକେ କହିବେ କଣ ? ତାଙ୍କ ପିଲାଙ୍କୁ ନେଇ ଯିବେ କୋଉଠିକୁ ?

ବାପା ଲୋକଙ୍କ କଥା ଭାବୁଥିଲେ, ହେଲେ ଲୋକେ କଣ ଭାବୁଥିଲେ ବାପାଙ୍କ କଥା ? ସମୟ ବଦଳି ଯାଉଥିଲା । ସହରରେ ଅନେକ ଛୋଟବଡ ସରକାରୀ ସ୍କୁଲ୍ ଖୋଲି ଯାଉଥିଲା । ଛୋଟ ପିଲାଙ୍କ ଇଂରାଜୀ ସ୍କୁଲ୍ ମଧ ଖୋଲି ଯାଇଥିଲା ସହରରେ । ଲୋକେ ମୁହଁ ଫେରେଇ ନେଇଥିଲେ ଚାହାଳୀ ଆଡୁ । ସେଇ ଗଳି ବାଟ ଦେଇ ଯାଉଥିବା ଲୋକ ଭୁଲ୍‌ରେ ନଜରଟିଏ ପକେଇଲେନି ସେଇ ଆଡକୁ । ଏକଦା ଗଳିର ଏ ମୁଣ୍ଡରୁ ସେ ମୁଣ୍ଡ କମ୍ପୁଥିଲା ଚାହାଳୀର ପଣିକିଆ ଡାକରେ । ହରତାଳିକା ଆଉ ଶ୍ରୀପଞ୍ଚମୀର ମୂର୍ତ୍ତି ଧରି ଧରି ସେମାନେ ପ୍ରତିଘର ବୁଲୁଥିଲେ । ଯାହା ଟଙ୍କା ପଇସା ସଂଗ୍ରହ ହେଉଥିଲା, ବାପାଙ୍କର ଧୋତି ଖଣ୍ଡେ କିଣା ବାଦ୍ ବାକି ପଇସାରେ ଭୋଜି ହେଉଥିଲା । ସେଇ ଘର କ୍ରମଶଃ ଗୃହସ୍ଥର ଘରରେ ପରିଣତ

ହେଉଥିଲା । ତଥାପି ବାପା ତାଙ୍କ ସାଙ୍ଗରେ ରହିବାକୁ ଚାହିଁଲେ ନାହିଁ । ପ୍ରତି ମାସରେ ଟଙ୍କା ପଠେଇ ଦଉଥିଲେ ସେ ।

ବାପାଙ୍କର ଶେଷ ଦିନ ଗୁଡ଼ିକର କଥା ମନେ ପଡ଼ି ଦେହ ଶିହରୀ ଉଠିଥିଲା ମହାପାତ୍ରଙ୍କର । ସତ କହିବାକୁ ଗଲେ ବନମାଳୀ ସାହୁ ଛଡ଼ା ତାଙ୍କର ନିଜର ବୋଲି ଆଉ କେହି ନଥିଲା । ନା ମହାପାତ୍ର ମାମୁଁ ଘର କଣ ବୋଲି ଜାଣିଥିଲେ ନାଁ କଜେଇ ଦଦେଇ କି ବୂଢ଼ୀମା ବୋଲି କେହି ଅଛିକି ନାହିଁ ଜାଣିଥିଲେ । ବାପା ଗୁରୁତର ଅସୁସ୍ଥ ବୋଲି ଚିଠି ଖଣ୍ଡେ ଦେଇଥିଲା ବୋଉ । ପ୍ରଥମ ଚିଠିର ଡାକରାରେ ସେ ଯାଇ ପାରିନଥିଲେ, ବିଭିନ୍ନ ବ୍ୟସ୍ତତା ପାଇଁ । ସୁରଭି କହିଥିଲା ଟଙ୍କା ପଠେଇ ଦେଇଥିଲେ ମହାପାତ୍ର । ହେଲେ କିଛି ଦିନ ଉତ୍ତାରୁ ବୋଉର ଦ୍ୱିତୀୟ ଚିଠିଟି ଆସିଥିଲା କଟକ ବଡ ଡାକ୍ତରଖାନାରୁ । ବୋଉ ଲେଖିଥିଲା, ବାପାରେ, ତୋତେ ଚିଠି ଖଣ୍ଡେ ଦେଇଥିଲି ତୁ ଆସିଲୁ ନାହିଁ । କେତେଦିନ ଆଉ ଅନେଇ ଥାନ୍ତି ? ତୋ ବାପାଙ୍କ କଷ୍ଟ ଦିନୁ ଦିନ ବଢ଼ି ଚାଲିଛି । ଘୋଷାଡ଼ି ହେଇ ଯାଉଛନ୍ତି । ଜୀବନ କାଣି ନଖ ଅଗରେ । ଯନ୍ତ୍ରଣା ଅସହ୍ୟ ହେଲାରୁ ବନମାଳୀ ସାହୁଙ୍କ କଥାରେ ତାଙ୍କ ପୁଅ ନବଘନ ଆଣି ବଡ ଡାକ୍ତରଖାନାରେ ଭର୍ତ୍ତି କରି ଦେଇ ଯାଇଛି । ବୁଢ଼ା ବନମାଳୀ ସାହୁ ଆଜିକାଲି ଆଉ ପାରୁ ନାହାନ୍ତି । ପରଲୋକ ଆମ ପାଇଁ ଆଉ କିଏ କରିବ । ମୁଁ ମାଇପି ଲୋକ କୁଆଡ଼କୁ ଯିବି କଣ କରିବି ? ଚିଠି ପାଇଲା ମାତ୍ରେ ଚାଲି ଆସିବୁ । ହେଳା କରିବୁ ନାହିଁ ।

॥ ଇତି ତୋର ବୋଉ ॥

ବାପାଙ୍କର କ୍ୟାନସର ହେଇଥିଲା । ଶେଷଦିନ ଆସି ଯାଉଛି ଜାଣି ଡାକ୍ତର ଘରକୁ ଫେରେଇ ଦେଇଥିଲେ । ଏବେ ଆଉ କିଛି କରିବାର ନାହିଁ ବରଂ ବନ୍ଧୁ ପରିଜନ ସଙ୍ଗେ ରହିବା ଭଲ । ସେ ଛୁଟି ନେଇ ଅପେକ୍ଷା କରି ରହିଲେ ବାପାଙ୍କର ଶେଷ ମୁହୂର୍ତ୍ତ ଅପେକ୍ଷାରେ । ବାପାଙ୍କ ପାଇଁ ଚାହାଳୀ ଭିତରେ ଭୂଇଁରେ ବିଛଣାଟିଏ କରାଯାଇଥିଲା । କାରଣ ଖଟରେ ଶୋଇଲେ ରାତି ଅଧରେ ଛଟପଟ ହେଇ ଖଟ ତଳକୁ ଗଡି ପଡୁଥିଲେ । ଚାହାଳୀ ଘରୁ ଖଟଟିକୁ କାଢ଼ି ଆଣି ପୁରା ଘରଟାରେ ସପ ବିଛେଇ ଦିଆ ଯାଇଥିଲା । ସେ ଘରଟା ସାରା ବୁଲି ବୁଲି, ଗଡି ଗଡି ଶୋଉଥିଲେ । ତାଙ୍କ ସେ ବଖରାକୁ ପେଚାର ହୁଁକାର ପରି ହୁଁ ହୁଁ ଶବ୍ଦଟେ ଅନବରତ ଭାସି ଆସୁଥିଲା । ବେଳେ ବେଳେ ବାପା ବୋଉକୁ ଡାକି କହୁଥିଲେ ସେ କଳା କଳା ଲୋକ ଦିଟାଙ୍କୁ ତଡି ଦେ କବାଟ ପାଖରୁ । ବହୁତ୍ ବେଳୁ ଆସି ମୋତେ ଡରଉଛନ୍ତି । ବୋଉ କହୁଥିଲା ଯମଦୂତ ମାନେ ଆସିଲେଣି, ବୋହୂ ଆଉ ନାତି ନାତୁଣୀଙ୍କୁ ଖବର

ଦେ ଶେଷ ସମୟ ଆସିଗଲା ।

ସୁରଭି ଡାକ୍ତରାଣୀ ହେଲେ ମଧ୍ୟ ବାପାଙ୍କ ଚିକିତ୍ସାରେ ସାମାନ୍ୟତମ ସାହାଯ୍ୟ କରି ନଥିଲା । ନିଜର ବ୍ୟୂହ ଭିତରେ ସେ ଏତେ ବ୍ୟସ୍ତ ଥିଲା ଯେ, ବାହାର ଦୁନିଆକୁ ଅନେଇବାକୁ ତା ପାଖରେ ସମୟ ନଥିଲା । ଦରକାର ପଡିଲେ କେବଳ ଟଙ୍କା ପଇସା ପଠେଇ ଦାୟିତ୍ୱ ତୁଲେଇବାର କଥା ବରଂ ସେ ଚିନ୍ତା କରି ପାରୁଥିଲା । କିନ୍ତୁ ଖୋଦ୍ ନିଜର ଉପସ୍ଥିତି ତାକୁ ଏକ ପ୍ରହସନ ଭଳି ମନେ ହେଉଥିଲା । ପରିସ୍ଥିତି ବଦଳିଲେ ମଣିଷର ପ୍ରକୃତି ମଧ୍ୟ ବଦଳି ଯାଏ । ଯେଉଁ ଝିଅ ପାଠ ପଢ଼ିବା ପାଇଁ କୃଚ୍ଛ୍ରରୁ କୃଚ୍ଛ୍ରତର ସାଧନା କରି ପାରିଥିଲା ଦିନେ, ଅଧ୍ୟାତ୍ମିକ ବିଶ୍ୱାସରେ ଏତେ ମାତ୍ର ବିଶ୍ୱାସୀଥିଲା ଯେ ବେକରେ ତୁଳସୀମାଳୀ, କପାଳରେ ଚନ୍ଦନ ଟିପା ମାରୁଥିଲା, ସେ ଏବେ ଆକାଶର ତାରାଟିଏ ହେଇ ମାଟିକୁ ଅନେଇ ପଚାରୁଛି ଏତେ ଦୁଃଖ କିଆଁ ମାଟିରେ ବଢୁଥିବା ମଣିଷଙ୍କର ? ସତ କହିବି ତାଙ୍କ ଦୁଃଖ ପାଇଁ ସେମାନେ ନିଜେ ହିଁ ଦାୟୀ । ସୁରଭି ଓ ପିଲାମାନେ ଦି ଦିନ ପାଇଁ ବନମାଳୀ ସାହୁ ଘରେ ଅତିଥି ଭାବରେ ରହି ବାପାଙ୍କୁ ଦେଖି ଫେରି ଯାଇଥିଲେ । ମହାପାତ୍ର ଅଟକେଇ ପାରିନଥିଲେ ସୁରଭିଙ୍କୁ । ଅଟକେଇ ଥିଲେ ସେ ରହି ଥାନ୍ତେ ବା କେଉଁଠି ? ବଖରାଏ ଚାହାଳୀ ଘର ଓ ଅଧବଖରାଏ ବାରଣ୍ଡାକୁ ଛାଡ଼ିଦେଲେ, ଅଧିକ ଘର ବଖରାଏ ନଥିଲା ଆଉ । ସୁରଭି ଆଉ ସେ ପୁରୁଣା ସୁରଭି ହେଇ ନଥିଲା ଯେ କୌଣସି ମତେ ମୁଣ୍ଡ ଗୁଂଜି ଚଳେଇ ନେଇ ପାରିଥାନ୍ତା ।

ସପ୍ତାହେ ଅତିକ୍ରାନ୍ତ ହେଇ ଯାଇଥିଲା, ବାପାଙ୍କ ଶେଷ ସମୟ ଆସୁନଥିଲା । ଅଥଚ କଷ୍ଟ ଦିନକୁ ଦିନ ବଢ଼ି ଚାଲିଥିଲା । ମୁହଁ ହାତ ଫୁଲି ବିକୃତ ଦିଶୁଥିଲା । ଏ ଯେମିତି ବାପା ନୁହନ୍ତି ଅନ୍ୟ କେହି । ବୋଉ ବାପାଙ୍କ ପାଖରେ ବସି କାକୁତି ମିନତି କଲା ପରି କହୁଥିଲା ଆଉ କେତେ କଷ୍ଟ ପାଇବ ? କହିଦଉନା କି ପାପ କରିଛ ?

ବାପା ଜୁକୁଜୁକୁ କରି ବୋଉକୁ ଅନାଉଥିଲେ । କିଛି କହୁ ନଥିଲେ । ବୋଉର ସେ ପ୍ରକାର ପ୍ରଶ୍ନ ଶୁଣି ମହାପାତ୍ରଙ୍କୁ ବିରକ୍ତ ଲାଗୁଥିଲା । ଥରେ ସେ କହିଥିଲେ, କି ଅବାନ୍ତର କଥାଗୁଡା କହୁଛୁ କହିଲୁ ବୋଉ । ତୁ କଣ ବାପାଙ୍କୁ ଜାଣିନୁ ? ଦୀର୍ଘ ଏତେ ବର୍ଷ ଏକାଠି ସଂସାର କରିଛ ଏବେ ବାପାଙ୍କ ପାପ ଖୋଜୁଛୁ ? ଛି ।

ବୋଉ ତାଙ୍କ କଥା ଶୁଣି କାନ୍ଦି ପକେଇଥିଲା । କହିଥିଲା ତୁ ଦେଖୁଛୁ ତୋ ବାପାଙ୍କର ଘାକୁ ? ବାପା ଅଣ୍ଟା ପାଖର ଘାଟାକୁ ଦେଖିଲେ ଏବେ ବି ଦେହ ଶିହରୀ ଉଠେ । ଚମଡା ମାଂସ ଫଟେଇ ଭିତରୁ ବାହାରି ଥିଲା ଯେମିତି ଘାଟି । ଲାଲ୍ କଟ୍ କଟ୍, ରକ୍ତ ପୂଜ ଭରା ଗୋଟେ ବିଭତ୍ସ ଭୂଇଁ କେଇଟା ପୋକ ଚାଲୁଥିବାର, ଥରେ

ସେ ଦେଖିଥିଲେ ମଧ, ବୋଉ କହିଥିଲା ଦଶରଥ ମିଶ୍ରେ କହୁଥିଲେ ବୋଲି । ମାଛିଆ ପାତକ ହେଇଛି । ମାଛିଆ ପାତକ କୁଆଡେ ପାପ କର୍ମର ଫଳ ।

ସତକୁ ସତ ବୋଉ ଦିନେ ବାପାଙ୍କ ମୁହଁରୁ ତାଙ୍କ ପାପ କର୍ମର କାହାଣୀ ବାହାର କରି ଆଣିଥିଲା । ତାଜୁବ ଲାଗିଥିଲା ସେଦିନ । ଲାଗିଥିଲା ମଣିଷ ଜୀବନଟା କିଛି କମ ବଡ ଗନ୍ତାଘର ନୁହଁ । କୋଉ କୋଣରେ ଯେ କୋଉ ଗୁପ୍ତଧନ ରହିଛି କହିବା ମୁସ୍କିଲ୍ । ବାପାଙ୍କ ଚେହେରା ଆଦର୍ଶ ସଂଗେ ସେ କାହାଣୀକୁ ଯୋଡ଼ିଲେ କେମିତି ବେଖାପ ମନେ ହେଲା । ମନେ ହେଲା ଦସ୍ୟୁ ରତ୍ନାକରର ବାଲ୍ମିକୀ ପାଲଟିବା କାହାଣୀ ଶୁଣୁଛନ୍ତି ପରା ।

ବାପାଙ୍କର ପୂଜା ପାଠ, ଧର୍ମ କର୍ମ, କଠଉପିନ୍ଧା ଗାମ୍ଭୀର୍ଯ୍ୟ ଚାଲି ସବୁ ଯେମିତି ଛଳନା । ମାଟିରେ ଗଡ଼ାଥିଲା, ପାଣି ମୁନ୍ଦାକରେ କାତୁଅ ମେଂଚାଏରେ ପରିଣତ ହେଇଯାଇଥିଲା । ବାପାଙ୍କ ଆଖିରୁ ଲୁହ ଗଳୁଥିଲା ପାଟି ଖନି ମାରି ଯାଉଥିଲା । ତାଙ୍କ ଛାତି ଭିତରର ନିବୁଜ କୋହ ଫୁଁ ଫୁଁ କରି ବାହାରି ଆସୁଥିଲା ମଝିରେ ମଝିରେ । ସେ ତାଙ୍କ କୋଡ଼ିଏ ବର୍ଷ ବୟସରେ କରିଥିବା ଅପରାଧ ବର୍ଣ୍ଣନା କରୁଥିଲେ । ସେ ଓ ତାଙ୍କର ଅନ୍ୟ ତିନୋଟି ବନ୍ଧୁ ମିଶି ଘଟେଇଥିବା ଅପରାଧ । ବାପା କହିଥିଲେ, ସେ ଗର୍ଭବତୀ ଥିଲା । ତା ସ୍ୱାମୀ ନଥିଲା । ବାଳ ମୁକୁନ୍ଦପୁରକୁ ଯାଇଥିଲା । ଆମେ ଜଣକ ପରେ ଜଣେ ତିନିଜଣ ଯାକ ହିତାହିତ ଜ୍ଞାନ ଭୁଲି ଯାଇଥିଲୁ । ଆମେ କାମୁକ ହେଇ ଯାଇଥିଲୁ । ସେ ଚାରି ଚାରିଜଣଙ୍କୁ ବିରୋଧ କରି ପାରିନଥିଲା । ତା ମୁହଁରେ କନା ବିଣ୍ଡା ମାଡି ଦେଇଥିଲୁ । ସେ ଚିତ୍କାର କରି ପାରୁନଥିଲା । ଖାଲି ବିକଳରେ ଛଟପଟ ହେଉଥିଲା । ତାର କି ତା ପେଟର ଛୁଆଟାର କଣ ହେଲା ଜାଣିବା ଲାଗି ଆଉ ଆମେ ରହିନଥିଲୁ । ସେ ମୂର୍ଚ୍ଛା ହେଇ ଯାଇଥିଲା । ସେଇ ରାତି ଅନ୍ଧାରରେ ମୁଁ ଗାଁ ଛାଡ଼ି ଚାଲି ଆସିଥିଲି । ତା ପରେ ଆଉ ଗାଁକୁ ଯାଇନି କେବେ । ଯୋଗୀ ତ୍ରିପାଠୀର ସ୍ତ୍ରୀ ବଂଚିଲା କି ମଲା ମୁଁ ଜାଣି ପାରିନି । ପୋଲିସ୍ ଆଉ ନ୍ୟାୟ ନିଶାପ ଭୟରେ ମୁଁ ଏଇଠି ଲୁଚିଲି । ତାରି ନିଶ୍ୱାସ ପଡିଛି ମୋ ଉପରେ । ବାପା କଇଁ କଇଁ ହେଇ କାନ୍ଦିଥିଲେ ।

ବନମାଳୀ ସାହୁଙ୍କୁ ଏ ଘଟଣା ଜଣାନଥିଲା । ବ୍ରାହ୍ମଣଘର ପିଲା, ପେଟ ପାଟଣା ପାଇଁ ଗାଁ ଛାଡି ବିଦେଶ ଜାଗାକୁ ଆସିଛି ଭାବି ବନମାଳୀ ତାଙ୍କୁ ଆଶ୍ରୟ ଦେଇଥିଲା । ଖଳାବାରିକୁ ଲାଗି ଚାଳିଆ ଖଣ୍ଡକ ଛାଡ଼ିଦେଇଥିଲା, ତା ପିଲାଛୁଆଙ୍କୁ ପାଠ ପଢ଼େଇ ମଣିଷ କରିବା ପାଇଁ । ବାପା ମୁଣ୍ଡ ଗୁଂଜିବା ପାଇଁ ଥାନ ଖୋଜୁଥିଲେ, ତାଙ୍କୁ କାମ ମିଳିଗଲା । ବନମାଳୀ ସାହୁର ଖଳାବାରିରେ ସେ ଚାଟଶାଳୀ ଖୋଲି ଅବଧାନ

ହେଲେ । କେବେ କେମିତି ଓଷା ବାରରେ ଲୋକେ ଲୋଡ଼ିଲେ ପୁରୋହିତି କଲେ । କେହି କେବେ ପଚାରିନଥିଲା ତାଙ୍କ ଅତୀତ, ଇତିହାସ । ତାଙ୍କ ପଇତା ହିଁ ଥିଲା ତାଙ୍କ ପରିଚୟର ପ୍ରଥମ ଓ ପ୍ରଧାନ ସହାୟକ । ଯିଏ ପଚାରିଲେ ବନମାଳୀ ସାହୁ କହୁଥିଲା, ଅନାଥ ପିଲା । ଦୋକାନରେ ବସା ଉଠା କରୁଥିଲା । ବ୍ରାହ୍ମଣ ଘର ଛୁଆକୁ କଣ ହଳ ଧରେଇ ଥାନ୍ତି ? କହିଲି ଯା ପିଲାଗୁଡାଙ୍କୁ ପଢ଼ା । ବନମାଳୀ ସାହୁ ନିଜେ ବାପାଙ୍କ ପାଇଁ କନିଆଁ ଖୋଜିଥିଲା । ବୋଉର ବି ବିଧବା ମା ଛଡ଼ା କେହି ନଥିଲା । ବନମାଳୀ ସାହୁ ମନ୍ଦିରରେ ଗାନ୍ଧର୍ବ ବିବାହ କରେଇ ଘରକୁ ଆଣିଥିଲା । ବାପା ବୟସର ନହେଲେ ବି ବନମାଳୀ ସାହୁ ତାଙ୍କ ବଡ ଭାଇ ପରି ଥିଲା ।

ବାପା ଶୂନ୍ୟରେ ହାତ ଉଠେଇ ଜୁହାର କରିଥିଲେ ବନମାଳୀ ସାହୁ ଉଦ୍ଦେଶ୍ୟରେ । ତାଙ୍କ ପାପ କାହାଣୀ କହିସାରିଲା ବେଳକୁ ତାଙ୍କ ଦି ଆଖିରୁ ଲୁହ ବୋହି ଯାଉଥିଲା । ଓଠ ଥରୁଥିଲା । ଗୋଟେ କୁଳୀନ ବ୍ରାହ୍ମଣ ବୈଶ୍ୟ ବ୍ୟବସାୟୀ ଉଦ୍ଦେଶ୍ୟରେ ଶତବାର ପ୍ରଣାମ କରୁଥିଲା । ବାପା ତାଙ୍କ ପାପ ସ୍ୱୀକାର କଲା ପରେ ବି ମୃତ୍ୟୁ ଆସି ତାଙ୍କୁ ଉଠେଇ ନେଇ ନଥିଲା । ବୋଉ ଲୁଗାକାନିରେ ମୁହଁ ଘୋଡେଇ ଧକେଇ ଧକେଇ କାନ୍ଦୁଥିଲା । ପରଦିନ ମହାପାତ୍ର ଫେରି ଯାଇଥିଲେ ବୋଉକୁ ପ୍ରତିଶ୍ରୁତି ଦେଇ ଦି ଚାରିଦିନ ଭିତରେ ଛୁଟି ବଢ଼େଇ ଫେରି ଆସିବେ । କିନ୍ତୁ ଦୁଇଚାରିଦିନ ଭିତରେ ଫେରି ଆସି ପାରି ନଥିଲେ । ଦଶ ଏଗାର ଦିନ ପରେ ଟେଲିଗ୍ରାମ୍‌ଟେ ପହଞ୍ଚିଥିଲା ଘରେ, ବାପା ଆଉ ନାହାନ୍ତି ବୋଲି ।

ପ୍ରଫେସର ମହାପାତ୍ରଙ୍କର ମନେ ପଡିଗଲା ବହୁଦିନୁ ବାପାଙ୍କର ଅସ୍ଥିଟା ଗଳିମୁଣ୍ଡ ଓସ୍ତଗଛ ମୂଳେ ମାଟି ହାଣ୍ଡିଟିଏରେ ଘୋଡା ହେଇ ରହିଛି । ସୁବିଧା ଦେଖି ଗୟାରେ ଅସ୍ଥି ବିସର୍ଜନ କରିଦେଇ ଆସିବେ ବୋଲି ଭାବି ଭୁଲି ଯାଇଛନ୍ତି ସେ । ଏତେ ଦିନ ଧରି ଅସ୍ଥିଟି କଣ ଶୋଇ ରହିଥିବ ମାଟି ତଳେ ?

ବୋଉ ବାପାଙ୍କ ମୃତ୍ୟୁ ପରେ ଆହୁରି ତେର ବର୍ଷ ଜୀଇଁଥିଲା । ଶାସନ ମନ୍ଦିରରେ ସେବା ପାଇଟି କରି, ବଢ଼େ ଅନ୍ନ ଭୋଗ ଖାଇ ରହିଲା ପଛେ, ତାଙ୍କ ଘରକୁ ଆସିଲା ନାହିଁ । କହୁଥିଲା ତୋ ଘରେ ଯାଉଁଳୀ କୁକୁର ପାଳିଛୁ ତୁ । ନୀତି ନିୟମ ବୋଲି କିଛି ରଖିନୁ । ମୁଁ ବିଧବା ମଣିଷ କଣ ଚଳି ପାରିବି ସେଇଠି ? ପାରିବୁ ଯଦି ପ୍ରତି କାର୍ତ୍ତିକ ମାସରେ, ପୁରୀକୁ ଯିବା ଖର୍ଚ୍ଚଟା ତୁ ଦେଇପକା ବରଂ, ମୋତେ ତୋ ଘରକୁ ଯିବା କଥା କହନା ।

ଥରେ ବୋଉ କହିଥିଲା ବାପରେ, ମୁଁ ମଲେ, ତୁ ମୋ ପାଇଁ ଚିନ୍ତା କରିବୁ ନାହିଁ । ହେଲେ ତୋ ବାପର ଅସ୍ଥିକୁ ଯେମିତି ହେଲେ ଗଙ୍ଗାରେ ବିସର୍ଜନ କରିବୁ । ତେବେ

ଯାଇଁ ତାଙ୍କ ପାପରୁ ତାଙ୍କୁ ମୁକ୍ତି ମିଳିବ । ବୋଉ ବାପାଙ୍କ ପାପ ମୁକ୍ତି କଥା ଚିନ୍ତା କରି କରି ଚାଲିଗଲା ଆର ପାରିକୁ । ଆଜି ସୁଦ୍ଧା ନଡ଼ିଆଗଛ ମୂଳେ ସେମିତି ଶୋଇ ରହିଛି ଅସ୍ଥିଟି । ସେ ବୋଉର ଶେଷ ଇଚ୍ଛା ମଧ୍ୟ ପୂରଣ କରି ପାରି ନାହାନ୍ତି । ମହାପାତ୍ର ଭାବିଥିଲେ, ଏଇଟି ପ୍ରକୃଷ୍ଟ ସମୟ ଥିଲା ଅସ୍ଥି ବିସର୍ଜନ ପାଇଁ । କିନ୍ତୁ ସେ କଣ ଜାଣିଥିଲେ ଏମିତି ତୀର୍ଥଟେ ସହ ଅକସ୍ମାତ ସେ ଯୋଡ଼ି ହୋଇଯିବେ ବୋଲି ? ସେ ତାଙ୍କ ବ୍ୟସ୍ତଜୀବନ ଭିତରେ ସଂପୂର୍ଣ୍ଣ ଭାବରେ ଭୁଲି ଯାଇଥିଲେ ଅସ୍ଥିଟିକୁ । କେଉଁଥି ପାଇଁ ସେ ଆସିଛନ୍ତି ଏ ତୀର୍ଥାଟନରେ ? କଣ ଦେବେ ନିଜର ପାପ ମୁକ୍ତି ପାଇଁ ? ଅଥବା ଭାଗୀରଥ ପାଲଟି ପିତୃପୁରୁଷର ଉଦ୍ଧାର ପାଇଁ ?

---

ଅସଂଖ୍ୟ ପ୍ରଜ୍ଜ୍ୱଳିତ ଦୀପ ଶିଖା ଗଙ୍ଗାର ତରଙ୍ଗାୟିତ ସ୍ରୋତରେ ନାଚି ନାଚି ଭାସି ଯାଉଥିଲେ । ସେ ପଟେ ମନ୍ଦିର ପ୍ରାଙ୍ଗଣରେ ଘଣ୍ଟାଘଣ୍ଟି ବାଦ୍ୟ ସାଙ୍ଗକୁ ଭକ୍ତଙ୍କର ଜୟ ଜୟକାର ଧ୍ୱନିରେ ବ୍ରହ୍ମକୁଣ୍ଡ ଅଞ୍ଚଳଟି ମୁଖରିତ ହୋଇ ଉଠୁଥିଲା । ଭିତରର ଜୀବାତ୍ମା ଟିକକ ସେଇ ଶବ୍ଦ ତରଙ୍ଗ ଓ ପ୍ରଜ୍ଜ୍ୱଳିତ ଦୀପ ଶିଖାର ତାଳେ ତାଳେ ନାଚି ଉଠୁଥିଲା । ଦେହ ଭିତରଟା କମ୍ପି ଉଠୁଥିଲା ପରିଡା ମାଉସୀଙ୍କର । ତାଙ୍କ ଆଖିରୁ ନାକରୁ ଲୁହ ସିଂଘାଣି ବୋହି ଆସିଥିଲା । ଲୁଗାକାନିରେ ମୁହଁଟାକୁ ଚାପିଧରି ସେ ପତ୍ରଦନାରେ ଥିବା ଦୀପଟିକୁ ଭସେଇ ଦେଇଥିଲେ । ଅସଂଖ୍ୟ ଦୀପ ସଙ୍ଗେ ନାଚି ନାଚି ଭାସିଗଲା ଦୀପଟି । ବହୁ ସମୟ ଯାଏଁ ସେ ଲକ୍ଷ୍ୟ କରିଥିଲେ ଦୀପଶିଖାଟିର ଗତିକୁ । ଦୀପଶିଖାଟି ଅସ୍ତେ ଆସ୍ତେ ଦୂରକୁ ଦୂରକୁ ଚାଲିଯାଉଥିଲା । ଯେତିକି ଦୂରେଇ ଯାଉଥିଲା ଶିଖାଟି ସେତିକି ଅଲଗା କରି ବାରି ହେଇ ନଥିଲା ତାଙ୍କୁ । କେଉଁଟି ତାଙ୍କର ଥିଲା ? ଆତ୍ମାପକ୍ଷୀ ଉଡିଯାଇ ଯେମିତି ମିଶିଯାଏ ଅନନ୍ତସ୍ରୋତ ସେମିତି ମିଶିଗଲା କୁଆଡ଼େ । ଏଇ ଦୀପ ଶିଖାଟି ଥିଲା ତାଙ୍କ ଅଭିମନ୍ୟୁ । ଅଧାରାସ୍ତା ଆଲୋକିତ କରି କେଉଁ ଆଡେ ଯେ ମିଶିଗଲା ଜଣା ପଡିଲା ନାହିଁ । ଗଙ୍ଗାରେ ଦୀପ କାହିଁକି ଭସାନ୍ତି ତାଙ୍କୁ ଜଣା ନାହିଁ । ହେ ଗଙ୍ଗା ମା ତୁ ମୋ ଜୀବନକୁ ଏମିତି ଆଲୁଅ କରି ରଖ ଦୁଃଖ ନ ଆସୁ ଦୁର୍ଦ୍ଦଶା ନ ଆସୁ । ଫସଲ ହେଉ । ରୋଗ ବୈରାଗ ନ ଲାଗୁ । ସେଇଥିଲାଗି ଅବା ଭାଗୀରଥ ମହାରାଜ ପରି ଆଲୋକର ରାସ୍ତା ଦେଖେଇବା ପାଇଁମ । ସେ କିନ୍ତୁ ଦୀପଟିକୁ ଗଙ୍ଗାରେ ଭସେଇଲା ବେଳେ ଅଭିମନ୍ୟୁର ମୁହଁଟା ମନେ ପଡିଯାଇଥିଲା । ଅଭିମନ୍ୟୁ କିନ୍ତୁ ସେମାନଙ୍କୁ କୂଳରେ ଛାଡି ଆଗକୁ ଆଗକୁ ଭାସି ଯାଇଥିଲା । ସେ ଆଉ ନିଜକୁ ସମ୍ଭାଳି ପାରି ନଥିଲେ । ଲୁହ ସିଂଘାଣି ହେଇ ଯାଇଥିଲେ ।

ପରିଡା ବାବୁ ଛିଗୁଳେଇଲା ଭଳି କହିଥିଲେ, ଯେତେବେଳେ ଦେଖ ସୁଁ ସୁଁ ହେଇ କାନ୍ଦୁଥିବ । ଚାଲ ସେପଟେ ଆଳତୀ ହେଲାଣି ଯେ ସଭିଏଁ ବ୍ରୁଷ୍ଟ ହେଇଛନ୍ତି । ପରିଡା ମାଉସୀ ଫେରି ଆସିବା ପୂର୍ବରୁ ଆଉଥରେ ଚାହିଁଲେ । ହେଲେ ଅଭିମନ୍ୟୁକୁ ବାରି ପାରିଲେ ନାହିଁ । ଭାବିଲେ, ଯେତେ ମରଣ ସେତେ ଜନମ । ଅଭି କଣ ଆଉ ଏତେ ଦିନଯାଏ ଆତ୍ମାଟେ ହେଇ ପବନ ଝଡ଼ରେ ଏଣେ ତେଣେ ବୁଲୁଥିବ ? କେବେଠୁଁ ଜନମ ପାଇବଣି । ମଣିଷ ଜନମ ପାଇଥିବ ସେ । ତା ଦଶାହ ଦିନ ବାଲି ଉପରେ ମଣିଷ ପାଦ ପଡିଥିଲା ପରା । ସେ ଉଚ୍ଚ କୂଳରେ ଜାତ ହେଇଥିବ । ଭଲ ଆତ୍ମା ଥିଲା । କାହାରି ଅନିଷ୍ଟ ଚିନ୍ତା କି ପାପ ଚିନ୍ତା କଲା ବୁଦ୍ଧି ନଥିଲା ତାର । ପଙ୍କରେ ପଦ୍ମଅ ଫୁଲ ଜାଣି ଫୁଟିଥିଲା ସେ । ପାପ ପଙ୍କରୁ ଛିଟିକାଟେ ସୁଦ୍ଧା ବାଜି ନଥିଲା ତା ଦେହରେ । ଭଗବାନ ଭଲ ମଣିଷକୁ ଆଗ ଡାକି ନିଅନ୍ତି । ପାପୀ ଯାକ ରହି ଯାଆନ୍ତି ସଂସାରରେ । ଘାଣ୍ଟିହେବା ପାଇଁ ଆଉ ଦଶଟାଙ୍କୁ ଘାଣ୍ଟିବା ପାଇଁ । ପରିଡା ମାଉସୀ ଗଙ୍ଗା ମନ୍ଦିରରୁ ଆଣିଥିବା ସିନ୍ଦୁର ଯାକ ମୋଡିମାଡି କରି ଗୋଟାକରେ ଧରିଲେ । ଏଇ ସମୟରେ ଗୌରୀ ଆସି ଭଙ୍ଗା ପାନ ବିଡାଏ ଦେଇ ଗଲା । କହିଲା, ବୁଝିଲ ମାଉସୀ ତମ ପାନ ପାଇଁ ଗୁଡାଏ ବାଟ ବୁଲିବାକୁ ପଡିଲାମ । କଣ କହିଥିଲ ଟି ଘୋଳଗୁଣ୍ଡି । ଘୋଳଗୁଣ୍ଡିଟା କଣ କେହି ବୁଝିଲେ ତ ? ଜର୍ଦା ପକେଇ ପାନ ଆଣିଛି । ଖାଇକରି ଦେଖ । ଆଉ ଯେଉଁ ପଇସା ବଳିଲା ମୋ ପାଇଁ ସାଦା ଦି ଖଣ୍ଡ ନେଇ ଆସିଲି ।

ପରିଡା ମାଉସୀ ପାନ ଖଣ୍ଡିଏ କାଢ଼ି ମୁହଁରେ ଯାକିଲେ । ବାକି ପାନଯାକ ବ୍ୟାଗ୍‌ରେ ରଖି କହିଲେ ଭଲ କଲୁରେ ବାପ । ଏଇକଥାକୁ କହି ଦଉଛୁ କିଆଁ । ପାଟିଟା କେତେବେଳୁ ଜାଣ, ପାଣିଚିଆ ଧରିଯାଇଥିଲା । ଏ ପାନଗୁଡା ସୁଆଦିଆ ଲାଗୁନି । ମୋ ଘୋଳଗୁଣ୍ଡି ଯାକ ସରିଗଲାମ ।

ତମ ଘୋଳଗୁଣ୍ଡିର ନାଁଟେ କଣ ଥିବ ନା । କଣ ଥିଲା ତା ନାଁଟା କହୁନ ।

ସୁଦାମରେ ପୁଅ । ସୁଦାମ ଘୋଳ ଗୁଣ୍ଡି ; ହେଇ ଏତେ ବଡ ଟିଣ ଡବାଟେ !

ତାଙ୍କରି ଦଳର ସଭିଏଁ ହୋଟେଲ୍‌କୁ ଫେରିବାକୁ ହେଉଥିଲେ । ପରିଡା ମାଉସୀ କହିଥିଲେ, ଆଲୋ ମୋ ନାତୁଣୀ ତିନିଟାଙ୍କ ପାଇଁ କିଛି କିଣିଲିନି ତ । ଗଲାକ୍ଷଣି ସୁଟ୍‌କେସ୍ ଅଣ୍ଡାଳିବେ ଜେଜେମା କଣ ନେଇ କରି ଆସିଛି ପରା ।

ପରିଡା ବାବୁ କହିଥିଲେ, ଚାଲ୍ ଚାଲ୍ ବେଶି ନାତୁଣୀ ସୋହାଗ ଦେଖେଇ ହେଉଛି ଏଠି କଣ ମିଳିବ ଯେ ନବୁ । ଏଇନା କାନ୍ଦୁଥିଲା ସୁକୁ ସୁକୁ ହେଇ, ଏଇନା ଢଙ୍ଗକୁ ଦେଖ ।

ପରିତା ମାଉସୀ କିଛି ଜବାବ୍ ଦେଇ ନଥିଲେ । ନିରବରେ ସର୍ଭିଙ୍କ ପଛେ ପଛେ ଚାଲିଥିଲେ । ବେଶି ଦୂର ନୁହଁ । ତାକେ ବାଟ ତାଙ୍କ ହୋଟେଲ । ନାତୁଣୀ ତିନିଟାଙ୍କ ମୁହଁ ମନେ ପଡି ଯାଇଥିଲା ତାଙ୍କର । ସବା ବଡଟା ଷଷ୍ଠରେ, ମଝିଆଣୀଟା ଚତୁର୍ଥରେ ଆଉ ସବା ସାନଟା ଦ୍ୱିତୀୟରେ ପଢୁଥିଲେ । ସେ ଚାଲି ଆସିଛନ୍ତି ଯେ ନାତୁଣୀ ତିନିଟା ତା ମାକୁ ହଇରାଣ କରୁଥିବେ । କୁଆଡିକୁ ହେଉଥିବ କେଜାଣି ବୋହୂଟା । ଘର ଗୋଟାକର କାମ, ଗୁହାଳ, ବାଡି ବଗିଚା, ହଲର୍ ଘରର ଖବର ଅନ୍ତର, କେମିତି ସମ୍ଭାଳୁଥିବ କେଜାଣି । ସେଇଥିପାଇଁ ସେ କୁଆଡିକି ଗୋଡ କାଢ଼ନ୍ତି ନାହିଁ । ବଡ ବୋହୂ ଉପରେ ସଂସାର ଯାକର ଯେତେ ଦାହ ଦପ୍ତର ପଡେ । ମଝିଆଣୀଟା ଦିଲ୍ଲୀରେ ରହିଲା । ମଝିଆଁ ପୁଅ ସେଇଠି ବୈଜ୍ଞାନିକ ନା କଣ ହେଇଛି । ବୋହୂଟା ଅକାଳେ ସକାଳେ ବି ଗାଁକୁ ଆସେ ନାହିଁ । ପଞ୍ଜାବୀ ଝିଅ । ଆମ ଭଳି ପଖାଳ ତୋରାଣି ତ ଦୂରର, ଭାତ ଭୁଜା ବି ଖାଏ ନାହିଁ । ଦିନରାତି ତାର ରୁଟି ଦରକାର । ବଡ ବୋହୂଟା ଓକିଲ ଘର ଝିଅ । ଟାଉନ୍‌ଜାଗାରୁ ଆସିଛି । ତଥାପି ଗର୍ବ ନାହିଁ । ହଳିଆ ମୂଲିଆଙ୍କ କଥା ବୁଝିବାଠୁଁ ଓଷାବାର ସବୁ ମାନେ । ଆସିଲା ବେଳେ ଦିଟା ହଳିଆଙ୍କୁ ବନ୍ଦ୍ କରି ଦେଇଛନ୍ତି । ଖାଲି ଗୁରୁବାରିଆ ଆଉ ଶୁକ୍ରୁଟା ନ ଆସିଲେ ନ ଚଳେ ବୋଲି ମନା କରି ପାରିଲେ ନାହିଁ । କହି ଆସିଛନ୍ତି, ସକାଳୁ ସକାଳୁ ବୋହୂଠୁଁ ପଖାଳ ଦିଟା ଖାଇ ଦେଇ ବାଡି ବଗିଚା ଗୋରୁ ଗୁହାଳ ପାଇଟି ଆଗ ସାରି, ବିଲକୁ ଯିବ । ଏକୁଟିଆ ବୋହୂଟା ହଇରାଣ ହେବଟି ।

ଦାଣ୍ଡ ପଟକୁ ଧାନ ପେଷେଇ, ଚୁଡା ପେଷେଇ ହଲର୍ । ଚାକର ବାକର ହେଇ ଚାରି ପାଞ୍ଚଟା । ନିଜ ନିଜ ଭିତରେ ପ୍ରତିଦିନ ବାଡିଆପିଟା ହେଉଥାନ୍ତି କାମ କରିବାକୁ ନେଇ । ଇଏ ତାର ସିଏ ତାର ଗୋଇ ଖୋଳାଖୋଳି ହେଉଥାନ୍ତି । କିଏ ଲୁଚେଇ କରି ଚୁଡା ବିକି ଦେଉଛି । କିଏ କ୍ୟାସ ବାକ୍ସରୁ ପଇସା ମାରିନେଉଛି । ଆଉ କିଏ ତାଡ଼ି ପିଇବାକୁ ଯାଇଛି, ଏମିତି ନାଟ ଲାଗିଥାଏ । ଆସିବା ବେଳକୁ ଗୁରୁବାରିଆର ପୁଅକୁ ବସେଇ ଦେଇ ଆସିଥିଲେ କ୍ୟାସ୍ ବାକ୍ସ ପାଖରେ ଅଭି ବାପା । ମାଟ୍ରିକ୍ ପାସ୍ କରି ଗାଁ କଲେଜ୍‌ରେ ପଢୁଛି ଟୋକା ଖଣ୍ଡକ । ଆସିଲା ବେଳେ ଅଭିବାପା କହି ଆସିଥିଲେ ଖାତାରେ ହିସାବ କିତାବ ଲେଖି ରଖିବୁ, ରାତିରେ ଭାଉଜଙ୍କୁ ବୁଝେଇ ଶୁଝେଇ ଦେଇଯିବୁ । ଗୁରୁବାରିଆ ପରି ତା ପୁଅଟା ଭାରି ନରମ । ଏ ଟୋକା ପୁଞ୍ଜାକ ତାକୁ କଣ ମାନୁଥିବେ ? କୁଲାକ ଚାଉଳ କୁକୁରକୁ ଦେଇ ଆସିଲା ଭଳି ସେ ପକେଇ ଆସିଛନ୍ତି ସିନା ।

ବୋହୂଟା ଝିଅ ତିନିଟାକୁ ନେଇ ଏତେ ବଡ ଖଞ୍ଜାରେ ଏକଲା ଥିବ । ଭେଣ୍ଡିଆ ତିନିଟା ଦାଣ୍ଡ ପଟ ଆଡେ ଉତ୍ପାତ ହଉଥାନ୍ତି । କେତେବେଳେ କାହା ମନରେ କଣ

ଥିବ କିଏ ଜାଣେ । ହେ ମା ମଙ୍ଗଳା, ମୁଁ ଫେରିବା ଯାଏ ମୋ ବୋହୂ ନାତୁଣୀଙ୍କୁ ଘଣ୍ଟ ଗୋଡେଇ ରଖିଥାଲୋ ମା । ପରିଡ଼ା ମାଉସୀ ଶୂନ୍ୟକୁ ମୁଣ୍ଡିଆ ମାରିଥିଲେ । ଆଜି କାଲି ଯୁଗ କାଳ ଯାହା ହେଲାଣି ବୋହୂଟାକୁ ଛାଡ଼ି ଆସି ସେ ଭଲ କଲେ ନାହିଁ । ପର୍ଶୁରାମକୁ ଚିଠି ଖଣ୍ଡେ ଦେଇଥିଲେ, ହଷ୍ଟେଲରୁ ଆଠଦିନ ଛୁଟି ନେଇ ଗାଁକୁ ଆ, ଭାଉଜଟାକୁ ଜଗିବୁ । ଚିଠି ପାଇଲା କି ନାହିଁ କେଜାଣି । ସେ ଆସିଥିବ କି ନାହିଁ । ପାଠ ପାଠ ବୋଲି ତ ମରିଯାଏ ଟୋକା ଖଣ୍ଡକ, ଏତେବଡ ଛୁଟିରେ ବି ଘରକୁ ଆସେ ନାହିଁ ।

ବୋହୂଟାର ବୟସ ବା କେତେ ହେବ ? ତିରିଶ ଖଣ୍ଡେ ହେଇଥିଲେ ହେଇଥିବ ପରା । ପତଳା ଗଢ଼ଣ, ଦେଖିଲେ ଲାଗିବ ବାଇଶ କି ତେଇଶ ହେଇଥିବ ପରା । ଅଭିବାପାଙ୍କ ଲାଗି ସାହି ପଡ଼ିଶା କି ଭାଇ ଭଗାରୀ କାହା ସଙ୍ଗେ ପଡ଼ିଲା ନାହିଁ । ତଥାପି ସାନ ଯାକୁ ଆସିଲା ବେଳେ କହି ଆସିଥିଲେ, ଘର ଆଡେ ନଜର ଦେଇଥିବୁ ଲୋ, ବୋହୂଟାକୁ ଛାଡ଼ି କରି ଯାଉଛି । ହେଲେ ସାନ ଯା ଟା ଭଲ ନୁହଁ । ପେଟରେ ପେଟେ ହିଂସା । ଆସିଲା ବେଳକୁ ପାଞ୍ଚ କେସ୍ ଲଗେଇ ରଖିଥିବ । ଘର ଛାଡ଼ିବାର ପନ୍ଦର ଦିନ ହେଇଗଲାଣି । ସେମାନେ ଆସିଥିଲେ ମଝିଆଁ ପୁଅ ପାଖକୁ ଦିଲ୍ଲୀ । ବୁଲିବା ପାଇଁ ନୁହଁ । କଣ କୁହନ୍ତେ ସେ ଦୁଃଖର କଥାଗୁଡା ସାହି ପଡ଼ିଶାରେ । ଶୁଣିଲେ ହସିବେ । ବର୍ଷ ଦିଟା ହେଇନି ବାହାଘର ହେବାର, ଛାଡପତ୍ର । ଏକି କଥା ଲୋ ମା । ସେଇଥିପାଇଁ ପରା କଥାରେ ଅଛି ନିଜ ଯୋଗ୍ୟତାରେ ବସିବ । ଖବରଟା ପାଇ ପରିଡ଼ା ମାଉସୀଙ୍କ ମନ ଗୋଳେଇ ଘାଣ୍ଟି ହେଇଗଲା । ଅଭିବାପାକୁ କେତେ କୁହାବୋଲା କରି ଘରୁ ପାଦ କାଢ଼ିଲେ । ପୁଅର ଦୁର୍ଦ୍ଦିନ ବାପ ମା ହେଇ ଠିଆ ନହେଲେ କିଏ ଠିଆ ହେବ ଯେ ?

ମଝିଆଁ ପୁଅର ବାହାଗର ହେଲା କୋର୍ଟରେ । ଭୋଜିହେଲା ହୋଟେଲ୍‌ରେ । ବାହାଘରଟା ବାହାଘର ଭଳିଆ ଲାଗିଲା ନାହିଁ । ନା ମନ୍ତ ପଢ଼ା ହେଲା, ନା ଘିଅ ଟିକିଏ ପୋଡ଼ାହେଲା । ବୋହୂ ଆସିଥିଲା ପିଣ୍ଡ ଚାଉଳ ଦବ ବୋଲି ଗାଁକୁ । ଅଭିବାପା ଅବାଗିଆ ମଣିଷ, ହେଲେ ମଝିଆଁ ପୁଅକୁ ତାଙ୍କର ବଡ଼ ଶ୍ରଦ୍ଧା । ତାର ସବୁ ଭୁଲ୍‌କୁ କ୍ଷମା କରିଦେଲେ । ଦିନ ଚାରିଟାରୁ ପାଞ୍ଚଦିନ ଯାଏ ବି ରହିଲାନି ବୋହୂ । ସାନ ଯା ଲୁଗାକାନି ମୁହଁରେ ଚାପି ମୁରୁକି ମୁରୁକି ହସିଲା । ସାହେବ ବୋହୂ ଆଣିଛନ୍ତି ତାଙ୍କର ଯେ ଏ ଘରକୁ କଣ ମାନୁଛି ? ଅଫିସର ଘର ଝିଅ । ଚାକିରୀ କରିଛି । ତା ଚଳଣି ଅଲଗା । ଚାଷିବାସୀ ଘରେ ବେଖାପ ଲାଗିଲା । ସେ ଭାବିଲେ ପୁଅ ବୋହୂ ସାଙ୍ଗରେ ଯାଉ । ତା ସ୍ୱାଧୀନତାରେ ରହୁ । ଖାଇପିଇ ଜୀଇଁ ରହିଲେ ହେଲା । ତାଙ୍କର କଣ

ଅଭାବ ଅଛି ନା ସେ ଘଷା ମୋଡ଼ା ଲୋଡ଼ୁଛନ୍ତି ଯେ, ଅଟକେଇବେ ? ବୋହୂ ତ ଶାଶୁ ଘର କଷ୍ଟ ଜାଣିଲା ନାହିଁ । ପୁଅ ପାଖରେ ସ୍ୱାଧୀନରେ ରହିଲା । ମନ ମିଳେଇ ବାହା ହେଇଥିଲେ, ପୁଣି କଣ ହେଲା କେଜାଣି ?

ପୁଅ ବୋହୂକୁ ନେଇ ଗଲାବେଳେ କହିଥିଲା: ମା ତୁ ମନ ଦୁଃଖ କରିବୁନି ମୁଁ ଛୁଟି ପାଇଲେ ବୁଲି ଆସିବି । ଦେହପା ଯତ୍ନ ନଉଥିବୁ । ଛାତିକୁ ପଥର କରି ଦମ୍ଭ ଧରିଥିଲେ ସେ, ପୁଅର କଥା ଶୁଣି କଣ ହେଲା କେଜାଣି ଆଖିରୁ ଠସ୍‌ଠସ୍ ଦି ଠୋପା ଲୁହ ଖସି ପଡ଼ିଥିଲା । କୌଣସି ମତେ ସେ ରୋକିପାରି ନଥିଲେ ସେ ନିଜକୁ । ତାଙ୍କର ପୁଅ ଭାଗ୍ୟ ଭଲ ନାହିଁ । ଏତେ ଥର ଖଡ଼ି ପକେଇଛନ୍ତି ଖଡ଼ି ଅବଧାନ ପାଖରେ । ହେଲେ କେବେ ତ କାହିଁ କହିନଥିଲେ ତାଙ୍କୁ ଏଇ କଥାଟି । ଅବଧାନ କଣ ଲୁଚେଇଥିଲେ ? ବଡ଼ ପୁଅଟା ରୋଗ ନାହିଁ ବୈରାଗ ନାହିଁ, ଚାଲିଗଲା । ମଟର ଧକ୍କା ତ ଦୂରର କଥା ଝୁଣ୍ଟିପଡ଼ି ବୁଢ଼ା ଆଙ୍ଗୁଠିର କୋଣ ଟିକକ ବି ଖଣ୍ଡିଆ ହେଇ ନଥିଲା ତାର । ରାତିରେ ଖାଇପିଇ ପିଲାଛୁଆଙ୍କୁ ଧରି ଶୋଇଥିଲା । ନିଦ ନିଦରେ ଚାଲିଗଲା । କେହି ଜାଣିଲେନି । କେହି ଶୁଣିଲେନି । କେହି ଦେଖିଲେନି କେମିତି ଜୀବନ ନାଟିକା ଉଡ଼ିଗଲା କେଜାଣି । କଣ୍ଟ କରି ଆସିଥିଲା ଯେମିତି ଦିଅଁ ଦେବତାଙ୍କ ପାଖରୁ ଏତିକି ଦିନରେ ଫେରି ଆସିବି ବୋଲି । ମା'ଟା ଜାଣିଲେ କାନ୍ଦିବ ବୋବେଇବ ତେଣୁ ରାତିରେ ସେ ଲୁଚି ଲୁଚିକା ପଳେଇ ଗଲା । ପାଖରେ ବୋହୂଟା ଶୋଇଥିଲା ଜାଣି ପାରିଲାନି । ବଡ଼ ନାତୁଣୀ ଦିଟି ତାଙ୍କ ପାଖରେ ଶୁଅନ୍ତି । ସାନ ଝିଅ ଖଣ୍ଡକ ତା ବାପା ମା ପାଖରେ ଶୁଏ । ସେ ସାନ ଛୁଆଟି ବି ସୁରାକ ଟିକିଏ ପାଇଲା ନାହିଁ କେମିତି, ଯମଦୂତ ଗଣ ପଶି ପୁଅଟାକୁ ନେଇ ପଳେଇଲେ । ତା ଭଳି ସୁଧାର ପୁଅକୁ ନେବାକୁ କଣ ଯମଦୂତ ଆସିଥିବେ ? ନିର୍ମାୟା ପୁରୁଷ ଥିଲା ଅଭିମନ୍ୟୁଟା । କାହାର ସଙ୍ଗେ ଝଗଡ଼ା ନାହିଁ । କାହାରି ଲାଗି କୁ-ଭାଷା ନାହିଁ । କାହାରି ମନକୁ ବାଧିଲା ଭଳି କଥା କହିବ ନାହିଁ କେବେ । ଯିଏ ଯାହା ମାଗିଲା ତାକୁ ଖୋଲା ହାତରେ ଦେଲା । ନିଜ ଚାକିରୀ ଖଣ୍ଡକ ସେମିତି ଦେଇ ଆସିଥିଲା ପରା । ତା ସାଙ୍ଗ ଛୁଆଟା କଣ ଦି ଧାର କାଳି ପକେଇଲା ଯେ, କହିଥିଲା, ତୋର ଚାକିରୀ ଦରକାର ତୁ କର । ମୁଁ ଚାଲିଲି । ସେ ଟୋକା ଖଣ୍ଡକ ଚାକିରୀ ପାଇ ଯାଇଥିଲା ତା ଜାଗାରେ । କେତେ ରେଣିମେସି ହେଲେ ଅଭିମନ୍ୟୁର ବାପା । ଟଙ୍କା ପଇସା ଖର୍ଚ୍ଚ କରି ହଷ୍ଟେଲରେ ରଖି ପାଠ ପଢ଼େଇଲି, କୁଳାଙ୍ଗାର ଚାକିରୀ ଖଣ୍ଡକ ଦାନ କରି ଆସିଲା । କାଲି କି କାଲି ସେ ବାହାଚୁରା ହେବ ଏ ବାବାଜୀ ଗୁଣ ରଖିଲେ, ପୁଅ ମାଇପଙ୍କୁ ନେଇ ସଂସାର କରିବ କେମିତି ?

ଅଭିବାପାଙ୍କ କଥା ତାଙ୍କୁ ଚିନ୍ତାରେ ପକେଇ ଦେଇଥିଲା । ସେ କହିଥିଲେ, ପୁଅଟାକୁ ବାହା କରେଇ ଦିଅ । ନହେଲେ ତାକୁ ଆଉ ରଖିହେବ ନାହିଁ । କେଉଁଦିନ ବାବାଜୀ ହେଇ ଚାଲିଯିବ ପିଲାଟା ଦେଖିବ । ପଚିଶ ବର୍ଷ ବୟସରେ ସେ ବାହା କରେଇ ଦେଇଥିଲେ ପୁଅକୁ । ଦେଖୁଁ ଦେଖୁଁ ତିନି ତିନିଟା ନାତୁଣୀ ଦି ଦି ବର୍ଷ ସାନବଡ଼ରେ ହେଇଗଲେ । ତଥାପି ତା ବାବାଜୀ ଗୁଣ ଯାଇନଥିଲା । ହୋଲି ସମୟର କଥା । ବସ୍‌ଷ୍ଟାଣ୍ଡ ବଜାରକୁ ଯାଇଥିଲା ବୁଲାବୁଲି କରିବାକୁ । ରାତିରେ ଫେରିଲା ବେଳକୁ ଫାଙ୍ଗୁଳା ଦେହ ନେଇ ଫେରିଲା । ଆରେ ସାର୍ଟ ଖଣ୍ଡକ କଣ କଲୁ । ଚାଦର କାହିଁ ? ଦେଇ ଦେଲି । ଗରିବ ଲୋକଟା ଫୁଙ୍ଗୁଳା ଦେହଟାରେ ଥରୁଥିଲା ତ । ବୋହୂଟା ଭଲ ଘରର ଝିଅ ବୋଲି ସହି ସମ୍ଭାଳି ଯାଉଥିଲା । କେବେ ଶାଢ଼ୀଟେ କି ଚୁଡ଼ି ଦିପଟ ଆଣିବ ବୋଲି ମୁହଁ ଖୋଲି ମାଗୁନଥିଲା । ମାଗିଥିଲେ କେଉଁଠୁ ଆଣି ଦିଅନ୍ତା ଅଭିମନ୍ୟୁ ? ନିଜ ପାଇଁ କେବେ ସାର୍ଟ ଖଣ୍ଡେ ଗୁଡ଼େଇ ଚାକର ଗୁଡାଙ୍କ ସଙ୍ଗରେ ଖଳା ଧରୁଥିଲା । ଧାନ ଓଜନ କରୁଥିଲା । ଲୋକେ କହୁଥିଲେ ପିଲା ନୁହେଁ ହୀରା ଖଣ୍ଡେ ଅଭିନ୍ନ ପରିଡ଼ାଙ୍କ ପୁଅ । ଯାଅ ଦେଖିବ କେମିତି ଗାମୁଛା ଖଣ୍ଡେ ଅଣ୍ଟାରେ ଭିଡ଼ି କାମ କରୁଛି । କିଏ କହିବ ଏମ୍.ଏ. ପାସ୍ କରିଛି ବୋଲି ?

ରାତି ଅନ୍ଧାରରେ ଚାଲିଗଲା ପୁଅଟା କାହାକୁ କିଛି ନ କହି । ତାଙ୍କ ବେକରେ ବାନ୍ଧି ଦେଇଗଲା ଚାରି ଚାରିଟା ଜୀବନ । ଚାହୁଁ ଚାହୁଁ ଝିଅଗୁଡ଼ା ବଢ଼ିଯିବେ । ବୋହୂଟାର ବା କି ବୟସ ହେଇଛି । ଚାରି ଚାରିଟା ଯୁବତୀଙ୍କୁ କେମିତି ସମ୍ଭାଳିବେ ସେ ? କାହା ଆଶ୍ରାରେ, କାହା ଭରସାରେ ଛାଡ଼ି ଦେଇଗଲା ଅଭି ତା ସଂସାରକୁ । ଗୌତମବୁଦ୍ଧ ଭଳି ରାତି ଅଧଟାରେ ଚାଲିଗଲା ଯେ କେହି ଜାଣିଲେନି । ନାତୁଣୀକୁ ଦିନେ ବୁଝେଉଥିଲା ବୋହୂ । ସାହିତ୍ୟ ବହିରୁ ଗୌତମ ବୁଦ୍ଧଙ୍କ ଗପ । ସ୍ତ୍ରୀ ପୁଅଙ୍କୁ ଛାଡ଼ି ଦିନେ ରାତି ଅଧିଆ ଲୁଚି ଲୁଚି ପଳେଇ ଯାଇଥିଲେ ତପସ୍ୟା କରିବା ପାଇଁ । ପୁଅଟା ସନ୍ୟାସୀ ହେଇ ଯାଇଥିଲେ ପରା ଏତେ ଦୁଃଖ ଲାଗିନଥାନ୍ତା । ମନେ ହେଇଥାନ୍ତା, ଏଇ ଗାଁରେ ନହେଉ ପଛେ, ତେର କୋଶ ଗାଁରେ ତ ପୁଅଟା ବଞ୍ଚିଛି । କେବେ କାଳେ ମୁହଁ ଫେରେଇ ଚାହିଁବ ପରା ଘର ଆଡ଼େ ।

କିନ୍ତୁ ସେ ତ ଫାଙ୍କି ଦେଇ ଚାଲିଗଲା କେଉଁ ଅଜଣା ଦେଶକୁ । ଯେତେ ମୁଣ୍ଡ କୋଡ଼ିଲେ ବାଡ଼େଇଲେ ବି ଆସିବ ନାହିଁ । ତାକୁ ବୈକୁଣ୍ଠରେ ରଖ ପ୍ରଭୁ । ତମ ପାଖରେ ରଖ । ସନ୍ୟାସୀ ପୁରୁଷ ଥିଲା ମୋ ଅଭିମନ୍ୟୁଟା । ଯିଏ ଯାହା ମାଗିଲେ ଦେଇ ଦଉଥିଲା ଲୁଗାପଟା ଚପଲ, ଚାକିରୀ ଯିଏ ଯାହା ମାଗିଲା ତା ପାଖ ପର୍ଯ୍ୟନ୍ତ ଦେଉଥିଲା ସେ । ସେଇଥିପାଇଁ କି କିଏ ଛଳ କରି ମାଗି ନେଇଗଲା ତା ଜୀବନ ?

ରାତି ଅନ୍ଧାରରେ ଚୁପ୍‌ଚୁପ୍ ମାଗିଥିଲା, ଅଭିମନ୍ୟୁରେ ମୋର ତୋ ଜୀବନଟା ଲୋଡ଼ା । ଦେଇ ପାରିବୁ ତୋ ଜୀବନ ?

---

ବହୁତ ରାତି ହେଇ ଯାଇଥିବ ସେତେବେଳକୁ । ମେଜରଙ୍କ ଆଖିକୁ ନିଦ ଆସୁନଥିଲା । ବାରମ୍ବାର କଡ଼ ମୋଡ଼ୁଥିଲେ ସେ । ସମୟ କେତେ ହେଇଥିବ କେଜାଣି ? ମଣିବନ୍ଧରେ ଘଣ୍ଟା ବାନ୍ଧିଥିଲେ ବି ଆଖିକୁ କିଛି ଦିଶୁ ନଥିଲା ତାଙ୍କର ଝାପ୍‌ସା ଆଲୁଅ ପାଇଁ । ଘର ଭିତରଟା ସଂପୂର୍ଣ୍ଣ ଅନ୍ଧାର ଥିଲା । ବାରଣ୍ଡାର ଆଲୁଅରୁ କ୍ଷୀଣ ରେଖାଟେ ଛିଟିକି ଆସି ପଡ଼ିଥିଲା ଯାହା ଘର ଭିତରେ । ଘର ଭିତରେ କେଉଁଠି ସୁଇଚ୍‌ବୋର୍ଡ଼ଟି ଅଛି ସେ ଠଉରେଇ ପାରୁନଥିଲେ । ଏମିତିରେ ବି ଘର ଭିତରେ ଏତେଗୁଡ଼ିଏ ଲୋକ ଶୋଇଛନ୍ତି ଯେତେବେଳେ ଲାଇଟ୍ ଜଳେଇବା କଣ ଠିକ୍ ହେବ ? ବେଶ୍ ଲମ୍ବା ଚଉଡ଼ା ଡର୍ମିଟରିଟେ କରିଛି ହୋଟେଲ୍‌ବାଲା । ଏମିତି ଦିଟି ହଲ୍‌ରେ ପୂରା ସବୁ ଯାତ୍ରୀଙ୍କୁ ଜାଗା ହେଇ ଯାଉଛି । ଲେଡ଼ିଜ୍‌ମାନେ ଅନ୍ୟ ବଖରାଟିଏରେ ଶୋଇଛନ୍ତି । ଏଇଠି ଯା ହେଉ ଖଟ ଖଣ୍ଡିଏ ମାନ ମିଳିଛି ସେମାନଙ୍କୁ । ଏମିତି ଅନେକ ହୋଟେଲ୍ ଏଇଠି ଅଛି ଯେଉଁଠି କେବଳ ଦରିଟିଏ ପାରିଦେଇ ଲୋକ ଗଡ଼ିପଡ଼ନ୍ତି ।

କେହି ଜଣେ ଖୁବ୍ ଜୋର୍‌ରେ ଘୁଙ୍ଗୁଡ଼ି ମାରୁଥିଲା । ତାଙ୍କ ଡାହାଣପଟ ଆଡୁ ଶବ୍ଦଟା ଭାସି ଆସୁଥିଲା । ଲୋକଟା କେତେ ନିଶ୍ଚିନ୍ତରେ ଶୋଇ ପଡ଼ିଛି ଦେଖ । ହେଲେ ତାଙ୍କୁ ନିଦ ଆସୁନାହିଁ । ସେଇ ଝାପ୍‌ସା ଆଲୁଅରେ ସଭିଙ୍କ ଉପର ଦେଇ ତାଙ୍କ ନଜର ପହଁରିଗଲା । କିଏ ମୁଣ୍ଡ ତଳେ ହାତ ରଖି ଶୋଇଛି ତ କିଏ ଉର୍ଦ୍ଧ୍ୱମୁଖା ହେଇ । କିଏ ଆଣ୍ଠୁମୋଡ଼ି ମୁଣ୍ଡ ଯାକି ମୁଣ୍ଡୁଲୀଟେ ହେଇ ଶୋଇଛି ତ କାହାର ହାତ ଝୁଲିପଡ଼ିଛି ବାହାରକୁ । ଶୋଇ ପଡ଼ିଲେ ଲୋକଗୁଡ଼ା କେଡ଼େ ନିରୀହ ଦିଶନ୍ତି । କେଡ଼େ ପ୍ରଶାନ୍ତ ଦିଶେ ମୁହଁମାନ । ଯେତେ ପହିଲ୍‌ମାନ୍‌ଟେ ହେଇଥାଉ ପଛେ, ଯେତେ ପଇସାବାଲା ହେଉ, ଅହଂକାର ଉଭେଇ ଯାଇଥାଏ କୁଆଡ଼େ । ଶୋଇ ପଡ଼ିବାଟା ମରିଯିବା ଭଳି । ଏଇ ଜାଗତିକ ଦୁନିଆ ଛାଡ଼ି ଅନ୍ୟ ଏକ ଦୁନିଆକୁ ଚାଲିଯିବା ପରି । ଠିକ୍ ମରିଯିବା ଭଳି ତ କହିହେବ ନାହିଁ କାରଣ ନିଦ ଭିତରେ କେହି କେହି ମୁରୁକି ହସେ, କେହି କେହି କଇଁ କଇଁ ହୋଇ କାନ୍ଦିଉଠେ । ଭୟରେ ହାଉଳି ଖାଇ ଉଠେ କିଏ । ବିରକ୍ତିରେ ଭ୍ରୂ କୁଞ୍ଚାଏ ବି କେହି । ତେବେ ରାତିରେ ମଣିଷର ଦୌରାତ୍ମ୍ୟ କମି ଯାଇଥାଏ ଅନେକ ପରିମାଣରେ । କମିଥାଏ କି ସତରେ ? ତେବେ ଏ ଚୋରି ହାରି, ଖୁନ୍, ଖରାବା ଯେତେ ସବୁ ଅସାମାଜିକ କାମ ତ ଏଇ ରାତି ଅନ୍ଧାରରେ

ଘଟିତ ହୁଏ ।

ମେଜରଙ୍କ ମୁଣ୍ଡଟା ଏଣୁତେଣୁ ନିରର୍ଥକ ଭାବନାରେ ଜଖମ ହେଇ ଯାଉଥିଲା । ତାଙ୍କ ଆଖିରୁ ନିଦ ଚୋରି ହେଇ ଯାଇଛି ଅନେକ ବେଳୁ । ବହୁଦିନରୁ ସ୍ୱପ୍ନ ଚୋରି ହେଇଗଲା ଭଳି ଜାଣିଲା ଶୁଣିଲା ଲୋକେ ତାଙ୍କୁ ସୁଖୀ ଲୋକ ଭାବନ୍ତି । ଚିନ୍ତା ଅର୍ଥହୀନ ସୁଖୀଲୋକ, ନା ଦୁଃଖରେ ବିଚଳିତ ଭାବ, ନା ସୁଖରେ ଗଦ୍‌ଗଦ୍ ଭାବ । ଆଉ ଚାରିଟା ସଂସାରୀ ଲୋକଙ୍କ ପରି ଦୁଃଖର କଥା ଗୁଡା ଛେକା ଛେକା କହି ବୁଲନ୍ତି ନାହିଁ କାହା ଆଗରେ ସେ । ସେ ଦୁଃଖ କହିବେ କଣ ତାଙ୍କ ଜୀବନଟା ତ ଗୋଟେ ପଥପ୍ରାନ୍ତ ନାଟକ ପରି ସ୍ପଷ୍ଟ । ନା ଆଲୋକର ଐନ୍ଦ୍ରଜାଲିକ ଇମେଜର ଦରକାର ପଡ଼େ ନା ଚରିତ୍ରମାନଙ୍କ ମନତଳର ଗୋପନୀୟ ଭାବକୁ ସ୍ପଷ୍ଟ କରିବା ପାଇଁ ଶବ୍ଦ ତରଙ୍ଗର ଖେଳ ଦରକାର ଥାଏ । ରାସ୍ତାରେ ଯିବା ଆସିବା ଲୋକ ପଢ଼ିନିଏ ପରଖିନିଏ ସବୁ କିଛି । ଶର୍ମିଷ୍ଠା ହିଁ ତାଙ୍କର ସବୁଠୁ ବଡ଼ କମ୍‌ଜୋରି । କଣ କହେ, କଣ କରେ, କିଏ କଣ ଭାବିବ କିଛି ବୁଝେନା ଝିଅଟା, ଯେମିତି ଆଜି ତାଙ୍କୁ କହିଲା, ଯାଅ ବାପା ଗାଧୋଇ ପଡ଼ । ତମ ପାପ ଧୋଇ ହେଇଯାଉ । କେଉଁ ଜନ୍ମରେ ପାପ କରିଥିଲ ବୋଲି ସିନା ଆମ ଭଳି ଦିଟା ଜନ୍ମ ରୋଗିଣୀ ଝିଅ ଜନ୍ମ କଲ । ଆଦୌ ଭୁଲିପାରୁନଥିଲେ ମେଜର୍ ତାଙ୍କ ସେଇ କଥା ପଦକ । ଶର୍ମିଷ୍ଠାଟା ଆଡ଼ପାଗଳୀ । ମାଳବିକା ପରି ଦୁଃଖକୁ ଭୁଲି ଜାଇଁବା ଶିଖି ପାରିଲା ନାହିଁ । ମାଳବିକାର ମଧ ସେଇ ସମାନ ଅବସ୍ଥା କିନ୍ତୁ ଦେଖିଲେ କିଏ କହିବ ଝିଅଟାର ଦୁଃଖ ଅଛି ବୋଲି । ମେଜରଙ୍କ ଝିଅ ଦିହିଁକୁ ନେଇ ଯେ ଦୁଃଖ ନାହିଁ ସେ କଥା ନୁହଁ । କିନ୍ତୁ ସେ ସବୁ ପୁରୁଣା ହେଇ ଯାଇଥିଲା । ଆଉ ବାଧୁ ନଥିଲା ଆଗଭଳି । କିନ୍ତୁ ଶର୍ମିଷ୍ଠାର କଥାରେ କଣ ଥିଲା କେଜାଣି, ଦୁଃଖ ବାରୁଦ ସ୍ତୁପରେ ନିଆଁ ଧରେଇ ଦେଲା କିଏ ଯେମିତି । ପାପ କଣ ଜନ୍ମଜନ୍ମାନ୍ତର ପର୍ଯ୍ୟନ୍ତ ସଂଚରୀ ଆସେ ? କି ପାପ କରିଥିଲେ ସେ ? ବ୍ରହ୍ମହତ୍ୟା ନା ଗୋହତ୍ୟା ? ଶିଶୁ ହତ୍ୟା ଅଥବା ନାରୀ ହତ୍ୟା ? ଏଗୁଡ଼ାକ ବାଜେ କଥା ।

ତାଙ୍କର ମନେ ହେଲା ଗଙ୍ଗା ଆଉ ଶର୍ମିଷ୍ଠା ଏକ ଭଳି । ଗଙ୍ଗାକୁ କେହି ଅଟକେଇ ପାରିନି, ନା ବିଷ୍ଣୁଙ୍କ ନଖ କୋଣ ନା ବ୍ରହ୍ମାଙ୍କ କମଣ୍ଡଳୁ । ନା ଶିବଙ୍କ ଜଟା ଭିତରେ ବାନ୍ଧି ହେଇ ରହି ପାରିଲେ ସେ ନାଁ ଶାନ୍ତନୁଙ୍କ ପ୍ରେମ ଅଟକେଇ ପାରିଲା ତାଙ୍କୁ । ତା ଭଳି ଝିଅମାନଙ୍କ ପାଖରେ ସମ୍ଭବ ନୁହଁ ସ୍ୱାମୀ ସନ୍ତାନ ନେଇ ଘର କରିବା । ଏତେ ମାତ୍ରାରେ ସ୍ୱାଧୀନଚେତା ଓ ମନମର୍ଜିରେ ଜୀବନ ଜାଉଁଥିବା ଝିଅ କଣ ଘର ସଂସାର କରି ଆବଦ୍ଧ ରହିପାରେ ?

ଶର୍ମିଷ୍ଠା ବୁଝେନା, କୁନିଝିଅଟେ ଭଳି ମନରେ ଯାହା ଆସେ କହିପକାଏ । ହୁଏତ ଗଙ୍ଗାରେ ଗାଧୋଇ ପଡ଼ି କହିଲାବେଳେ ଏତେ କିଛି ଭାବିଚିନ୍ତି କହି ନଥିବ ସେ । ତଥାପି ମନଟା ଖରାପ୍ ହେଇ ଯାଇଥିଲା ମେଜରଙ୍କର ସେଇ କଥା ଶୁଣି । ସେ ତ ଆଡପାଗଲାଟେ ଅନେକ ଲୋକ ଜାଣିଶୁଣି ମଧ୍ୟ ଆଘାତ କରନ୍ତି ତାଙ୍କୁ । କି ଭାଗ୍ୟ ପାଇଛନ୍ତି ଆପଣ ? କୁହନ୍ତି ସେମାନେ । ଯାହା କୁହନ୍ତୁ ମେଜର ଏମିତି ଖଣ୍ଡେ ଲେଖେଁ ଭାଗ୍ୟ ଆମକୁ ମିଳି ନଥାନ୍ତା ? ଭାଗ୍ୟଟା ଯେମିତି ମନ୍ଦିରର ପ୍ରସାଦ ଖଣ୍ଡେ ଖଣ୍ଡେ ନଡ଼ିଆ ବଣ୍ଟା ହେଲା ପରି, ବଣ୍ଟା ଯାଇ ପାରିଥାନ୍ତା । ଲୋକଙ୍କ ବ୍ୟଙ୍ଗକୁ ସେ ଠିକ୍ ଧରି ପାରନ୍ତି । ଅଧା ବୟସରୁ ଅବସର କାହା ଭାଗ୍ୟରେ ଏମିତି ଜୁଟେ କହିଲେ ? ଆରେ ଚାଳିଶ ବର୍ଷ ବୟସରୁ ଚାକିରୀରୁ ଛୁଟି ନେଇ ବସିଗଲେ ଆପଣ । ଆମର ତ ଆଣ୍ଠୁ ଗଣ୍ଠି ଛିଣ୍ଡି ପଡୁଥିଲା ସେଇ ସମୟକୁ । ଯେତେ କର ତଥାପି ଅଭାବ ଅସୁବିଧା ଲାଗିରହିଛି । ଯେତେ ରୋଜଗାର କର ଘରର ଆବଶ୍ୟକତା ପୂରଣ କରି ହେଉନାହିଁ । ଆଜି ଏଇଟା ନାହିଁ, କାଲି ସେଇଟା ନାହିଁ । ଯେତେ ଭଲ ସେତେ ଅଭାବ । ବାଳ ଯାକ ଝଡ଼ି ଝଡ଼ି ପରା ସେଇଥିରେ ଚନ୍ଦା । ଆପଣଙ୍କର କଣ ଅଛି । ସ୍ତ୍ରୀ କମାଉଥିଲା ଗୋଡ଼ ଉପରେ ଗୋଡ଼ ଲଦି ପାଇପ୍ ଟାଣିଲେ । ଏବେ ଝିଅ ଚାକିରୀ କରୁଛି, ଆପଣଙ୍କର ଦୁଃଖ କଣ ?

ହେମାଙ୍ଗିନୀର ମୃତ୍ୟୁ ପରେ, ତାଙ୍କର ରାଗ ରୋଷ ଅନେକ ପରିମାଣରେ କମିଯାଇଛି । ସମ୍ଭବତଃ, ବାପ ମା ଉଭୟ ଭୂମିକାରେ ଅବତୀର୍ଣ୍ଣ ହେଉ ହେଉ, ନାରୀର କୋମଳ ଭାବଟେ ଜାଗ୍ରତ ହେଇଛି ତାଙ୍କ ଛାତିରେ । କେବଳ ଯେ ନାରୀର କୋମଳ ଭାବ ଆସିଛି ତା ନୁହେଁ, ସହି ସହି ପଥର ହେଇ ଯାଇଛି ତାଙ୍କ ଛାତି ।

କାଛରେ ଝୁଲୁଥିବା, ଚାକିରୀ କାଳର ଫଟଟି ଉପରେ ନଜର ପଡ଼ିଲେ ନିଜକୁ ଆଉ ତା ଭିତରେ ଖୋଜି ପାଆନ୍ତି ନାହିଁ ସେ । କେଉଁଠି ଅଧା ରାସ୍ତାରେ ଯେମିତି ସେ ଛାଡ଼ି ଦେଇ ଆସିଛନ୍ତି ତାଙ୍କ ଭିତରେ ରାଜୁତି କରୁଥିବା ଏଇ ବ୍ୟକ୍ତିଟିକୁ । ମୁଣ୍ଡରେ ଟୋପି, କାନ୍ଧରେ ବ୍ୟାଚ । ନାକ ତଳେ ମୋଟା ନିଶ । ଆଖିରେ ପ୍ରତ୍ୟୟର ଚାହାଣି । ତାହା ତାଙ୍କ ଉଦ୍ଦାମ ଯୌବନର ଚେହେରା । ବ୍ୟକ୍ତିଟିଏ କେତେ ଥର ଜନ୍ମ ନେଉଥାଏ ନିଜ ଭିତରେ ପୁଣି କେତେଥର ମରୁଥାଏ ? କୈଶୋରର ମଣିଷ ମରିଯାଏ ଯୌବନକୁ, ଯୌବନର ମଣିଷ ନଥାଏ ବାର୍ଦ୍ଧକ୍ୟରେ । ପ୍ରକୃତି ସ୍ୱଭାବ ସବୁକିଛି ବଦଳିଯାଏ ସଂସାରର ଚାପରେ ।

ମେଜର୍ ଅନେକ ଦିନରୁ କାଟି ସାରିଥିଲେ ତାଙ୍କ ନାକ ତଳର ନିଶ । ଚାହାଣିର ତାତି କମି ଆସିଥିଲା ବୟସର ସଂଘାରେ । ଦୀର୍ଘ ବର୍ଷ ଧରି ଚାରିକାନ୍ଥ ତାଙ୍କ

ଶିଖେଇଥିଲା ବିରିଆନୀ ପାମ୍ପଡ଼, ପିଜ୍ଜା ନମକିନ୍‌ର ପ୍ରସ୍ତୁତ ପ୍ରଣାଳୀ । ହେମାଙ୍ଗିନୀ ବଞ୍ଚିଥିବା ବେଳରୁ ହିଁ ତାଙ୍କୁ ସମ୍ଭାଳି ଦେବାକୁ ପଡ଼ିଥିଲା ଛୁଆପିଲା ସଂସାରକୁ । ପ୍ରାଇଭେଟ୍ କମ୍ପାନୀ ଡାକ୍ତରଖାନାରେ ଷ୍ଟାଫନର୍ସ ଥିଲା ହେମାଙ୍ଗିନୀ । ନର୍ସ ହେଇ ହଜାର ରୋଗୀଙ୍କ ସେବା କରୁଥିଲେ ହେଁ ନିଜ ଦେହରେ ଧରି ରଖିଥିଲା ଆପାଦ ମସ୍ତକ ରୋଗ । କେବେ ଶ୍ୱାସ ବାହାରୁଥିଲା ତ କେବେ ଆର୍ଥ୍ରାଇଟିସ୍ । କେବେ ଅଲସର୍ ଯନ୍ତ୍ରଣା ପେଟରେ ଅନୁଭବ କରୁଥିଲା ତ କେବେ ଅର୍ଶ କଷ୍ଟ ଭୋଗୁଥିଲା । ବ୍ଲଡ୍ ପ୍ରେସର୍ ଥିଲା ତାର । ମାସିକ ଋତୁଚକ୍ର ସମୟଟି ସବୁଠୁଁ ଯନ୍ତ୍ରଣାକର ଥିଲା ତା ପାଇଁ । ବୟସ ଥିଲାବେଳେ ରୋଗଗୁଡ଼ା ଫିକା ପାଣିଚିଆ ଦିଶୁଥିଲା । ହେମାଙ୍ଗିନୀ ଅକାଳେ ସକାଳେ ସ୍ୱାମୀକୁ ଦେଖୁଛି ବୋଲି ଫୁଲେଇ ହେଉଛି ପରା ଭାବୁଥିଲେ ସେ । ଅବଶ୍ୟ ଏମିତି ଭାବିବା ପଛରେ କାରଣଟିଏ ଥିଲା କେତେବେଳେ ସେ ରାଞ୍ଚିରେ ତ କେତେବେଳେ ବିକାନେର୍ କାଣ୍ଟନ୍‌ମେଣ୍ଟରେ ରହୁଥିଲେ । ନାସିକ୍‌ରୁ ନେଫା ଯାଏ ବଦଳି ଲାଗି ରହୁଥିଲା ତାଙ୍କର । ହେମାଙ୍ଗିନୀ ସେତିକି ଦିନ ସ୍ୱାମୀ ସୋହାଗରୁ ବଂଚିତ ରହୁଥିଲା ଜାଣ । ସେ ଯେତିକି ଦିନ ଘରକୁ ଆସୁଥିଲେ ହେମାଙ୍ଗିନୀ ମେଟ୍ରନ୍‌କୁ କହି ନାଇଟ୍ ସିଫ୍ଟ ଡ୍ୟୁଟି ଥିଲେ ବଦଳେଇ ନଉଥିଲା । ସନ୍ଧ୍ୟାବେଳେ ସେମାନେ କମ୍ପାନୀର ବସ୍‌ରେ ବସି ପାଖ ସହରକୁ ସିନେମା ଦେଖି ଯାଉଥିଲେ । ହୋଟେଲରେ ଖାଇ, ଚୁଡ଼ି, ନେଲ୍‌ପଲିସ୍ ଠୁଁ ଶାଢ଼ୀ ଚପଲ ଆଦି କିଣି ଘରକୁ ଫେରୁଥିଲେ । ଜଣାପଡ଼େ ନାହିଁ ଏମିତି ଭାବେ ଦିନେ ତାଙ୍କ ଫେରିବା ଦିନ ପାଖେଇ ଆସେ । ଫେରିବା ଦିନ ଯେତିକି ପାଖେଇ ଆସେ ହେମାଙ୍ଗିନୀର ଅସ୍ଥିରତା ସେତିକି ବଢ଼ି ବଢ଼ି ଯାଉଥାଏ । ରାତି ଅଧରେ ଉଠିପଡ଼େ ଧଡ଼ପଡ଼ ହେଇ । କେବେ ଘଟ୍ ଘଟ୍ କରି ପାଣି ଦି ଗ୍ଲାସ୍ ପିଇ ପକାଏ ତ କେବେ ଉଠିପଡ଼ି କହେ, ଦେଖିଲ ଦେଖିଲ ମୋତେ ଜ୍ୱର ଆସିଛି କି । ମୁଣ୍ଡଟା ଭୀଷଣ ବିନ୍ଧୁଛି । ଆଖିଗୁଡ଼ା ପୋଡୁଛି କାହିଁକି ?

ନିଦ ଟଳମଳ ଆଖି ନେଇ ଉଠୁଥିଲେ ସେ । ଥାକରୁ ଥର୍ମୋମିଟର ଆଣି ହେମାଙ୍ଗିନୀର ଜିଭ ତଳେ ରଖୁଥିଲେ । ମିନିଟକ ବଦଳରେ କେତେବେଳେ ପାଞ୍ଚ ମିନିଟ୍ ଧରି ଥର୍ମୋମିଟର ରହି ଯାଉଥିଲା ତା ଜିଭ ତଳେ । କାରଣ ଥର୍ମୋମିଟରଟିକୁ ଜିଭ ତଳେ ରଖିଦେଇ, ସେ କାନ୍ଥକୁ ଆଉଜି ଢୁଳେଇ ପଡୁଥିଲେ ଯେ ବୁଝି ପାରୁନଥିଲେ ଏ ଭିତରେ ପାଞ୍ଚ ମିନିଟ୍ ଅତିକ୍ରାନ୍ତ ହେଇ ଯାଇଛି । ହେମାଙ୍ଗିନୀ ମଧ କୁନି ଝିଅଟେ ପରି ଅପେକ୍ଷା କରି ରହୁଥିଲା । ଯେତେବେଳେ ସେ ତନ୍ଦ୍ରା କଟେଇ ଉଠି ମୁହଁରୁ ଥର୍ମୋମିଟର କାଢୁଥିଲେ, ହେମାଙ୍ଗିନୀ ଚିଡ଼ି ଉଠି କହୁଥିଲା, କେମିତି

ତୁମେ ସୀମାନ୍ତରେ ଯୁଦ୍ଧ କରୁଛ ମ ଏଠି ତ ଚାରି କାନ୍ଥକୁ ଆଉଜିପଡ଼ି ତୁଳେଇ ପଡୁଛ ।

ହସୁଥିଲେ ସେ ହେମାଙ୍ଗିନୀର କଥାରେ । କହୁଥିଲେ, ତମ ଦେହରେ ଜ୍ୱର ନାହିଁ । ଶୋଇପଡ଼ । ହେମାଙ୍ଗିନୀ ଶୋଉନଥିଲା । ପାଣି ପିଉଥିଲା । ପାଇଖାନା ଯାଉଥିଲା । ଝରକା ପର୍ଦ୍ଦା ଆଡ଼େଇ ରାସ୍ତା ଦେଖୁଥିଲା । ଫେରିବାର ତିନି ଚାରିଦିନ ଆଗରୁ କନ୍ଦାକଟା ଆରମ୍ଭ କରି ଦେଉଥିଲା । ସେ ରାଗୁଥିଲେ । କହୁଥିଲେ, ଦେଖ ତମେ ଯଦି ଏମିତି କନ୍ଦାକଟା କରିବ, ତେବେ ମୁଁ ଆଉ ଆସିବି ନାହିଁ । ତାଙ୍କ କଥା ଶୁଣି ଜୋର୍‌ରେ ଜୋର୍‌ରେ ହିକ୍କା ଦେଇ କାନ୍ଦୁଥିଲା ହେମାଙ୍ଗିନୀ । ଆସିବ ନାହିଁ ଅର୍ଥ କଣ ଜାଣ ? ଯୁଦ୍ଧ ଭୂଇଁକୁ ଯାଉଛ, ମୁହଁରେ କାଳ କଥାଗୁଡ଼ା ନେଉଛ କାହିଁକି ? ତମର ଯଦି ଏମିତି ମରିବାର ଥିଲା ତେବେ ବାହା ହେଉଥିଲ କାହିଁକି ?

କିଏ ଚିରକାଳ ସଂସାରରେ ଜୀଇଁ ରହେ ଯେ ? କିଏ ଆଗ ଯିବ ଆଉ କିଏ ପଛେ ।

ହେମାଙ୍ଗିନୀ ତାଙ୍କ କଥାର ଉତ୍ତର ଦେଉନଥିଲା । ଦୁଃଖୀ ହେଇ ବସିରହୁଥିଲା । ତାର ସେ କରୁଣ ଚାହାଣୀ ମଧ ତାଙ୍କୁ ଅଟକେଇ ପାରୁନଥିଲା । ଶେଷରେ ସେଇଦିନ ଆସି ପହଞ୍ଚୁଥିଲା । ତାଙ୍କ ଛୋଟିଆ ପରିବାରଟିକୁ ଛାଡ଼ିଦେଇ ବିଦେଶ ବାହାରୁଥିଲେ ସେ ।

ପ୍ରତିଥର ଘରକୁ ଆସିବା ବେଳେ ସେ ଲକ୍ଷ୍ୟ କରୁଥିଲେ ଝିଅ ଦିଟା ଆଗ ଅପେକ୍ଷା ଆଉ ଟିକିଏ ବଢ଼ି ଯାଇଛନ୍ତି । ଗତଥର ଆସିଥିଲା ବେଳେ ସାନ ଝିଅଟାକୁ ଛାତି ଉପରେ ପକେଇ ପିଠି ଥାପୁଡ଼େଇ ଶୁଏଇ ଦେଉଥିଲେ ସେ । ପରଥର ଆସିଲା ବେଳକୁ ଝିଅଟା ଦୌଡୁଛି ଖେଳୁଛି ସାନ ଝିଅକୁ ସେ ପାଖକୁ ଡାକିଥିଲେ । ଝିଅଟା ଘର ଭିତରକୁ ପଳେଇଯାଇ ଇତର ଲୋକକୁ ଦେଖିଲା ଭଳି କବାଟ ଫାଙ୍କରୁ ଲୁଚି ଲୁଚି ଦେଖିଥିଲା । ଯେତେଦିନ ସେ ରହିଲେ ଦୂରେଇ ଦୂରେଇ ରହୁଥିଲା ତାଙ୍କ ପାଖରୁ । ସାନଝିଅଟା ମା ଦ୍ୱାରା ପ୍ରଭାବିତ ଥିଲା । ମା ସଙ୍ଗେ ବସି ଜେସସ୍‌ଙ୍କ ଫଟ ସାମ୍ନାରେ ମହମବତୀ ଜାଳୁଥିଲା । ଚର୍ଚ୍ଚ ଯାଉଥିଲା । ଶୁକ୍ରବାର ସନ୍ଧ୍ୟାରେ ପ୍ରାର୍ଥନା ସଭାଟିଏର ବ୍ୟବସ୍ଥା କରୁଥିଲା ହେମାଙ୍ଗିନୀ । ଚାରି ପାଞ୍ଚଜଣ ସନ୍ଧ୍ୟାରେ ଏକତ୍ର ହେଉଥିଲେ ଘରେ । ପାଷ୍ଟର ମଧ ଆସୁଥିଲେ । ଶର୍ମିଷ୍ଠା ଯାଉନଥିଲା କେବେ ପ୍ରାର୍ଥନା ସଭାକୁ । ମାଳବିକା କିନ୍ତୁ ଡ୍ରଇଁ ରୁମ୍‌ର ପ୍ରାର୍ଥନା ସଭାରେ ଯୋଗ ଦେଉଥିଲା । ଯେତିକି ଦିନ ମେଜର୍ ରହୁଥିଲେ ଘରେ, ଶର୍ମିଷ୍ଠା ପଛେ ପଛେ ରହୁଥିଲା ତାଙ୍କର । ଖାଇବା ଥାନରେ ବସି, ଏତେକଥା ପଚାରୁଥିଲା ଓ ଗପୁଥିଲା ଯେ କେତେବେଳେ ଶଙ୍ଖୁଡ଼ି

ଶୁଖି ଯାଉଥିଲା ହାତରେ ଜଣା ପଡୁନଥିଲା । ହେମାଙ୍ଗିନୀ ବିରକ୍ତ ନ ହେବାଯାଏ ସେମାନେ ଉଠୁନଥିଲେ । ସେଇ ଅଭ୍ୟାସଟା ରହିଯାଇଛି ଆଜିଯୁବା ଶର୍ମିଷ୍ଠାର । ଗପିଲେ ଏଣୁତେଣୁ ଗପି ଯାଉଥିବ ପାଗଳୀଙ୍କ ପରି ପରିସ୍ଥିତି ପରିବେଶକୁ ଖାତିର ନକରି ।

ଛୋଟବେଳେ ଶର୍ମିଷ୍ଠା ପଚାରୁଥିଲା ତାଙ୍କୁ । ସମସ୍ତଙ୍କ ବାପା ମା ଏକାଠି ଥିଲାବେଳେ, ଆମ ବାପା ମା କାହିଁକି ଅଲଗା ରୁହନ୍ତି ? ଶର୍ମିଷ୍ଠାର ମୁଣ୍ଡ ଆଉଁସି କୁହନ୍ତି ମେଜର: ଅନ୍ୟମାନଙ୍କ ବାପା ମା ଏଇ ସହରରେ କାମ କରନ୍ତି ବୋଲି ସାଙ୍ଗ ହୋଇ ରୁହନ୍ତି । ମୁଁ ଦେଶ ପାଇଁ କାମ କରୁଛି ପରା ମା ।

ଦେଶ ? ତମ ଦେଶ କେଉଁଠି ଥାଏ ବାପା ? ପଚାରେ ଶର୍ମିଷ୍ଠା । ଏଇ ଆମେ ଯେଉଁଠି ରହୁଛେ, ସେଇଟା ହିଁ ତ ଆମ ଦେଶ । ତମ ଦିଦି ଦେଶ ଉପରେ କବିତା ଶୁଣେଇ ନାହାନ୍ତି କେବେ ? ସେ ଡାଏରୀ ବାହାର କରନ୍ତି । ଭାରତର ମାନଚିତ୍ର ଦେଖାନ୍ତି । ଦେଖ୍, ଏଇ ଯେଉଁ ହଳଦିଆ ଖଣ୍ଡକ ଦିଶୁଛି ତା ଆମ ଦେଶ । ସେପଟର ଧଳା ଖଣ୍ଡକ ଆମ ଶତ୍ରୁ ଦେଶ । ତା ସଙ୍ଗରେ ଲଢ଼େଇ କରିବାକୁ ମୋତେ ଯିବାକୁ ପଡ଼େ । ସମସ୍ତେ ଯଦି ଯୁଦ୍ଧ କରନ୍ତି ନାହିଁ ବାପା ତୁମେ କାହିଁକି କର । ତୁମକୁ କଣ ଯୁଦ୍ଧ କରିବାକୁ ଭଲ ଲାଗେ ?

ଶର୍ମିଷ୍ଠାର ପ୍ରଶ୍ନ ତାଙ୍କୁ ଛନ୍ଦି ପକାଏ । ସେ କଣ ଯୁଦ୍ଧ ଭଲ ପାଆନ୍ତି ? ଯୁଦ୍ଧକୁ କଣ ଭଲ ପାଇପାରେ କେହି କେବେ ? କିନ୍ତୁ ସେ ମାଟିରେ କଣ ଅଛି କେଜାଣି, ବାରୁଦର ନିଶାରେ ନିଶାଗ୍ରସ୍ତ କରିପକାଏ । ରକ୍ତରେ ଧାଇଁ ବୁଲୁଥାଏ ବାରୁଦର ସ୍ରୋତ ଯେମିତି । ବାରୁଦର ଗନ୍ଧ ଆନନ୍ଦ ଦିଏ, ମାତାଲ୍ କରେ । ତା ଛଡ଼ା ଏ ଦେଶଟିର କଥା ସେମାନଙ୍କ ଛଡ଼ା ଅନ୍ୟ କିଏ ବେଶି ଭାବେ ଯେ ? ଦେଶ ମାତୃକା ଭଳି ଶବ୍ଦଟେ ଖଞ୍ଜି ଦିଆଯାଇଥାଏ ତାଙ୍କ ମସ୍ତିଷ୍କରେ । ଅନ୍ୟ ଗୃହସ୍ଥଟେ ପରି ସକାଳ ହୁଏ ନାହିଁ ତାଙ୍କର । ଅନେକ କିଛି ବିଶ୍ୱାସକୁ ଜଳାଞ୍ଜଳି ଦେବାକୁ ପଡ଼େ, ଅନେକ କିଛିକୁ ଅନ୍ଧ ଭଳି ଗ୍ରହଣ କରିଦେବାକୁ ପଡ଼େ । ଯେକୌଣସି ମୁହୂର୍ତ୍ତ ପାଇଁ ନିଜକୁ ତୟାର ରଖ । ଭାବ ପ୍ରବଣତା ଶୋଭାପାଏନା ଯେମିତି ସୈନିକଟେ ପାଇଁ । ଉପରିସ୍ଥ ମାନେ ହସିବା ଯେମିତି ଭୁଲି ଯାଇଥାନ୍ତି । କେଉଁଠି କେଜାଣି କ୍ରୂରତାଟେ ରୁକ୍ଷତାଟେ ଲୁଚି ରହିଥାଏ ଯୁଦ୍ଧର ଭାଷାରେ । ଏ ଯୁଦ୍ଧର ଭାଷା କିନ୍ତୁ ଆଜିର ନୁହେଁ । କେଉଁ ଯୁଗରୁ । କେଉଁ କାଳରୁ ନିର୍ଦ୍ଦୟ କରି ଆସିଛି ମଣିଷଟିକୁ । ବ୍ୟାସ ବର୍ଣ୍ଣନା କରି ଦେଇଗଲେ ଗୀତାରେ ଯୁଦ୍ଧର ଭାଷାରେ ଆତ୍ମୀୟ ସ୍ୱଜନ ଭଳି ଶବ୍ଦଟେ ନାହିଁ । ଭାଇ ବନ୍ଧୁ ସହୋଦର କେହି କାହାର ନୁହନ୍ତି । ତୁମେ ତୁମର ବି ନୁହଁ ।

ସେତେବେଳେ ସେଇ ଛୋଟ ଝିଅ ଶର୍ମିଷ୍ଠାକୁ କେମିତି ବୁଝେଇଥାନ୍ତେ ସେ ଯୁଦ୍ଧର ଭାଷାକୁ । ଯୁଦ୍ଧର ଭାଷାରେ ଅଛି: ଲାଇନ୍ ପୋଜିସନ୍ ।

ଏମ୍

ରାଇଫଲ୍ ମଜବୁତ୍ ସେ ପକଡ଼ୋ ।

କୋଇ ଏକ ଆଁଖ ବନ୍ଦ୍ କରୋ ।

ଫୋର୍ ସାଇଡ୍ ପର ନିଗାହ ଜମାଓ ।

ଫୋର୍ ସାଇଡ୍ କେ ନୋକ୍

ବ୍ୟାକ୍ ସାଇଡ୍ କେ, ୟୁକେ ବିଚୋ ବିଚ୍, ଟାରଗେଟ୍ କୋ ସେଣ୍ଟର ମେ ଲାଓ

ଅବ୍ ନିଶାନା ଠିକ୍ ଆଗୟା, ତବ୍ ଫାୟାର୍ ।

କାନ୍ଧରେ ବୋହିଥିବ ତମେ ଛୋଟିଆ ସଂସାର । କୀଟ୍ ବ୍ୟାଗ୍, କମ୍ବଳ ମଶାରୀ, ଦରି ରାଇଟ୍ ଲେଫ୍ଟ ଆଙ୍କଲେଟ୍, ଦୁଇ ହଳ ବୁଟ୍, ପିଟିସ୍, ଦୁଇଟା ମେଣ୍ଟିନ୍, ମଗ୍ ଚାମଚ ଜଙ୍ଗଲ ହ୍ୟାଟ୍ । ବ୍ଲୁ ବ୍ୟାରେଜ୍ ବ୍ଲୁ ବ୍ୟାରେଜ୍ । ବେଲ୍ଟ ଟାଇଟଲ୍ ସୋଲଡର ସବୁ ପିଠିରେ ବୋହି ଆଗେଇ ଚାଲ ।

ଏଇ ଦେଖ ସାମ୍ନାରେ ତମର ଶତ୍ରୁ ହରିଣଟେ ପରି ଗଛ ଉହାଡ଼ରେ ଲୁଚି ବସିଛି । କାଳ ବିଳମ୍ବ କରନା ।

ଚାର୍ଜ

ଅନ୍‌ଗାର୍ଡ଼

ଲେଫ୍ଟ ଫେରିଫେରି

ବଟ୍ କଟ୍ ପଏଣ୍ଟ ଉଇଥଡ୍ର

ଚାର୍ଜ

କେମିତି ଗୋଟେ ଶିଶୁକୁ ବୁଝେଇଥାନ୍ତେ ସେ ସେତେବେଳେ ଏଇ ସାଙ୍କେତିକ ଭାଷାକୁ । ଚାର୍ଜ, ଅନ୍‌ଗାର୍ଡ଼, ଲେଫ୍ଟ ଫେରିଫେରି, ବଟ୍ କଟ୍ ପଏଣ୍ଟ ଉଇଥଡ୍ର, ଚାର୍ଜ, ଅର୍ଥାତ୍ ସାମ୍ନାରେ ଶତ୍ରୁ ଅଛି, ପ୍ରଥମେ ବାରୁଦ ଭରି ଦିଅ ତା ଛାତିରେ । ଶତ୍ରୁର କରୁଣ ଚିତ୍କାରକୁ କର୍ଣ୍ଣପାତ ନକରି, ବନ୍ଧୁକ ମୁନରେ ଖେଂଚ । ବାଁକୁ ବୁଲେଇ ଡାହାଣକୁ ବୁଲେଇ ଦିଅ । ଏଥର ବନେଟ୍ କାଢ଼ି ଆଣ । ପୁଣି ଥରେ ଶତ୍ରୁର ଦେହରେ ବନେଟ୍ ପଶାଅ । ତାପରେ ବନେଟ୍ କାଢ଼ିଆଣି ବାରୁଦରେ ଭରିଦିଅ ।

ମେଜର୍ ପ୍ରକୃତିସ୍ଥ ହେଲେ । ଏ କଣ ଭାବୁଛନ୍ତି ସେ । ଏଇ ଭାବନା କଣ ତାଙ୍କ

ଯୁବାବସ୍ଥାର ଥିଲା ? ନା ଚଉସ୍ତରୀ ବର୍ଷ ବୟସରେ ପହଞ୍ଚି ବଦଳି ଯାଇଛି ତାଙ୍କ ଭାବନା ? ସେତେବେଳେ କଣ ସତରେ ଶର୍ମିଷ୍ଠାର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଅସହାୟ ହେଇ ଯାଇଥିଲେ ସେ ? ବରଂ ଶର୍ମିଷ୍ଠାର ପ୍ରଶ୍ନ ଶୁଣି ସେ ହସିଥିଲେ ପିଠି ଥାପୁଡ଼େଇ କହିଥିଲେ ପାଗଳୀଟେ । ହେମାଙ୍ଗିନୀ ବୁଝେଉଥିଲା । ସମସ୍ତଙ୍କୁ କିଛି ନା କିଛି କାମ କରିବାକୁ ପଡ଼େ ସଂସାରରେ । କିଏ ଚାଷ କରେ କିଏ ବ୍ୟବସାୟ । କିଏ ପାଠ ପଢ଼ାଏ ତ କିଏ ରୋଗ ଦେଖେ । ସେମିତି ବାପାଙ୍କୁ ଦେଶ ପାଇଁ ଲଢ଼ିବାକୁ ପଡ଼େ ।

ଶର୍ମିଷ୍ଠା ଏବେବି ପିଲାଦିନ ପରି ପ୍ରଶ୍ନ କରେ । ମନ୍ତବ୍ୟ ଦିଏ । ବୁଝିପାରେନା କିଛି । ତା ବୟସ ଆସି ପଚାଶ ହେଲାଣି ବୁଝିପାରେ ନାହିଁ, ଏଣୁ ତେଣୁ ବକେ । ଲୋକେ ପଛ ଆଡ଼େ ଥଟ୍ଟା ପରିହାସ କରନ୍ତି ହସନ୍ତି । କେହି କେହି ସାମ୍ନାରେ ଥଟ୍ଟା କରିବାକୁ ଭୁଲନ୍ତି ନାହିଁ । ବଡ଼ ଅପମାନ ବୋଧହୁଏ ମେଜରଙ୍କର । କଷ୍ଟ ହୁଏ । ଥରେ କଥା କହିବା ଆରମ୍ଭ କଲେ କଥା ସରେନା । ଚଣାରୁ ଚନ୍ଦ୍ରଯାଏ ଯାହା ପାରେ ବକ୍‌ବକ୍ କରେ । ସାମ୍ନାରେ ଲୋକଙ୍କୁ ପ୍ରଶ୍ନ ପଚାରେ ଓ ନିଜେ ହିଁ ଉତ୍ତର ଦିଏ । ଜଣାଶୁଣା ଲୋକେ ତା ସାମ୍ନା ହେବାକୁ ଡରନ୍ତି । କେହି କେହି ସିଧାସଳଖ କହିପକାନ୍ତି ଆପଣ ଆଜି ସୁଦ୍ଧା ପାଗଳ ନହେଇ କେମିତି ବଞ୍ଚିଛନ୍ତି ?

ତାଙ୍କ ପରି ଶର୍ମିଷ୍ଠାର ମଧ୍ୟ ଅଧାଦିନ ନିଦ ହୁଏ ନାହିଁ । ରାତି ସାରା ବିନିଦ୍ର କଟେଇବାକୁ ପଡ଼େ । ବେଳେବେଳେ ରାତିରେ ଡାକ ମାରି ଉଠାଏ ତାଙ୍କୁ, କହେ, ବାପା ନିଦ ଆସୁନି କଣ କରିବି କୁହତ ?

କଣ କରିବୁ ଏ ରାତି ଅଧଟାରେ ? ଶୋଇବାକୁ ଚେଷ୍ଟା କର । କୁହନ୍ତି ସେ ।

ଶର୍ମିଷ୍ଠା ଉଠିଯାଇ, ପାଞ୍ଚଟା ଘର କମ୍ପେଇ ଦେଲାଭଳି ଜୋର୍ ଶବ୍ଦ କରି ଟି.ଭି ଲଗାଏ । ମେଜର୍ ଶୋଇବା ଘର କବାଟ ଆଉଜେଇ ଦେଇ ଭାବନ୍ତି ଝିଅଟାର ଏଇ ବୟସରୁ ଆଖିରୁ ନିଦ ଉଡ଼ିଗଲାଣି । ଆହୁରି ତ ଜୀବନଟା ପଡ଼ିଛି । ଜୀଇଁବ କେମିତି ? କେଜାଣି ଏବେ ସେ ଶୋଇଥିବ କି ନାହିଁ । ଆରପଟ ବଖରାରେ ସ୍ତ୍ରୀ ଲୋକଙ୍କ ପାଇଁ ବ୍ୟବସ୍ଥା ଅଛି । ଏବେ ରାତିରେ ଉଠି ସେପଟକୁ ଯିବା ଠିକ୍ ହେବ ନାହିଁ । ଏପଟେ ତ ବିଛଣା ମାଡୁ ମାଡୁ ଜଣକ ପରେ ଜଣେ ଘାଲେଇ ପଡ଼ିଲେ ନିଦରେ । ଶେଷଯାଏ ପ୍ରଫେସର ମହାପାତ୍ର ଓ ଗୌରୀର କଥା ଶୁଭୁଥିଲା । ଗୌରୀ ତେଲ ଶିଶିଟେ ଧରି ଗୋଡ଼ହାତ ମୋଡୁଥିଲା ପ୍ରଫେସରଙ୍କର । ଥରଟେ ତାଙ୍କ ଆଡ଼କୁ ଚାହିଁ ହସିଥିଲା । ତା ହସଟା ବଡ଼ ଲାଜୁଆ ଲାଜୁଆ ଝିଅ ପିଲା ଭଳି । ଦେହକୁ କୁତୁକୁତୁ କରିଦିଏ । ସେ ପଚାରିଥିଲେ କଣ ମାଲିସ୍ ଚାଲିଛି ?

ତନ୍ଦ୍ରା ଭିତରେ ଥିଲେ ପ୍ରଫେସର । ନିଦୁଆ ଗଳାରେ ଉତ୍ତର ଦେଇଥିଲେ, ହୁଁ । ମେଜର ମଉସା ତମକୁ ଟିକେ ଘସି ମୋଡ଼ି ଦେବିକି ? ପଚାରିଥିଲା ଗୌରୀ । ମେଜର୍ କିଛି ଜବାବ୍ ଦେବା ଆଗରୁ, ପ୍ରଫେସର କହିଥିଲେ: ଆରେ ସେ ଅଣ୍ଟାଟା ଟିକେ ଭଲ କରି ଦାବ୍ । ଗାଡ଼ିରେ ବସି ବସି ପୀଡ଼ା ପରାଶ ହେଇଯାଇଛି ।

ମେଜରଙ୍କ ଦେହଟା ବି କେମିତି ଋସମସ କରୁଥିଲା ଭିତରେ ଭିତରେ । ଆଦରରେ ହାତଟିକେ କେହି ବୁଲେଇ ଆଣିଥିଲେ ଆଖିବୁଜି ହେଇ ଯାଇଥାନ୍ତା ପରା । ପ୍ରଫେସରଟା ଭାଗ୍ୟବାନ୍ । ଏଡ଼େ ଭାଗ୍ୟ ତାଙ୍କର କାହିଁ ? ଗୌରୀଟା ଭାରି ଭଲ ପିଲାଟିଏ । ବୟସ ହେଇ କୋଡ଼ିଏ ଏକୋଇଶ ହେଇଥିବ । ଛଳଛଳ ଚଞ୍ଚଳ ସ୍ୱଭାବର ପିଲାଟିଏ । ଏ ବୁଢ଼ା ବୁଢ଼ୀଙ୍କ ମେଳରେ ପଡ଼ି ଯାଇଛି କେମିତି କେଜାଣି । ସବୁ ଏଇ ପ୍ରଫେସର୍‌ର ନାଟ । କାହିଁକି କେଜାଣି ଗୌରୀ ସଙ୍ଗରେ ପ୍ରଫେସରର ସଂପର୍କଟା ତାଙ୍କ ଆଖିକୁ ସୁନ୍ଦର ଦିଶେ ନାହିଁ । କେମିତି ଗୋଟେ ଅଡୁଆ ଅଡୁଆ ଲାଗେ । କିଛି ଅସମ୍ଭବ କଣ ଏ ଦୁନିଆରେ ଯେ । ଥରେ ତାଙ୍କ ଗାଁ ଅପେରାରେ ଏମିତି ଗୁପ୍ତ କଥାଟେ ଧରା ପଡ଼ିଥିଲା ତାଙ୍କ ଛୁଆବେଳେ । ରାଜକୁମାରୀ ପାର୍ଟ କରୁଥିବା ଟୋକା ଖଣ୍ଡକ ଗୋରା ତକ ତକ ହେଇ ଠିକ୍ ଗୌରୀ ପରି ଲାଜୁରା ମୁହଁର ପିଲାଟେ ଥିଲା । ଯେଉଁ ଖଣ୍ଡକ ତା ବାପ ହୁଏ, ଅପେରା ପାର୍ଟିର ମେନେଜର ଥିଲା ଲୋକଟା ବି । ଯାହା କରେ ତାକୁ, ଥରେ ଧରାପଡ଼ି କେତେ କେଲେଙ୍କାରୀ ହେଇ ଯାଇଥିଲା ।

ହେଲେ ଏ ଗୌରୀ, ପିଲାଟା ବହୁତ ଭଲ । ଏତେ ଟିକେ ବିଷାଦ ନାହିଁ ତା ମନରେ । ବେଶ୍ ଉପଭୋଗ କରୁଛି ଏଇ ତୀର୍ଥଯାତ୍ରାଟିକୁ । ପ୍ରଫେସର ସଙ୍ଗେ ଆସିଥିଲେ ମଧ ସର୍ଭିଙ୍କ ବୋଲହାକ କରୁଛି । ହସ ହସ ମନରେ ସଭିଙ୍କୁ ଆପଣେଇ ନେଇଛି । କେହି ନିର୍ଦ୍ଦେଶ ଦେଉ ବା ନଦେଉ ଆଗତୁରା ପଡ଼ି କାମ କରୁଛି । ଗୌରୀ ପ୍ରଫେସରଙ୍କ ଅଣ୍ଟା ଦାବୁଥିଲା ବେଳେ ମେଜର ମୁହଁ ବୁଲେଇ ଶୋଇବାକୁ ଚେଷ୍ଟା କରିଥିଲେ । ଏଣୁ ତେଣୁ ଭାବନା ପାଇଁ ନିଦ ଆସୁନଥିଲା ତାଙ୍କର । କେତେବେଳେ କେଜାଣି ଗୌରୀ ଓ ପ୍ରଫେସର ମାଲିସ୍ ଧନ୍ଦା ସାରି ଶୋଇଥିଲେ । ଆଉ ଥରେ କଡ଼ ମୋଡ଼ିଲା ବେଳକୁ ଖଟ ଦିଟି ଯୋଡ଼ି ପରସ୍ପର ଉପରେ ଗୋଡ଼ ଲଦି ଶୋଇ ପଡ଼ିଛନ୍ତି ଦିହେଁ । ସେମାନଙ୍କ ଶୋଇବା ଢଙ୍ଗ ଦେଖିଲେ କିଏ କହିବ ମୁନିବ ଆଉ ଭୃତ୍ୟ ବୋଲି ? ସତରେ କଣ ସେମାନେ ମୁନିବ ଆଉ ଭୃତ୍ୟ ?

---

ଋଷିକେଶରେ ପହଞ୍ଚି ପୁଣିଥରେ ସେ ବିଚ୍ଛିନ୍ନ ହେଇ ପଡ଼ିଥିଲେ ଦଳଟି ପାଖରୁ । ସତେ ଯେମିତି ଅଲଗା ସ୍ୱତନ୍ତ୍ର ସ୍ରୋତଟିଏ । ଏକାକୀ ଧାଇଁ ଆସିଛନ୍ତି ତାଙ୍କର

କ୍ଷୀଣଧାରାଟିକୁ ଧରି ଗଙ୍ଗାରେ ମିଶିବା ପାଇଁ । ଋଷିକେଶ ତାଙ୍କ ପାଇଁ ନୂଆ ନଥିଲା । ମାଟି ଛୁଉଁ ଛୁଉଁ ସବୁ ଚିହ୍ନାଚିହ୍ନା ଲାଗିଲା । ଅଚିହ୍ନା ମଧ ଲାଗିଥିଲା କିଛି କିଛି । ଚିହ୍ନା ଚିହ୍ନା ପର୍ବତ ଶ୍ରେଣୀ, ଚିହ୍ନା ଚିହ୍ନା ମଠ, ମନ୍ଦିର, ଆଶ୍ରମ । ଲଛମନ ଝୁଲା, ସ୍ୱର୍ଗାଶ୍ରମ, ପରାମାର୍ଥେ ଭବନ । ଚିହ୍ନା ଚିହ୍ନା ଗଙ୍ଗା ଘାଟ, ଭରତ ମନ୍ଦିର । ଅଚିହ୍ନା ଲୋକବାକ ପରିବେଶ ଲୋକବାକ ବଜାରର ଭିଡ଼ ।

ଦିନସାରା ଏକ୍‌ଲା ଏକ୍‌ଲା ଘୂରି ବୁଲୁଥିଲେ ବରୁଣ । ଏକ୍‌ଲା ଏକ୍‌ଲା କିଛି ଖୋଜୁଥିଲେ । ତାଙ୍କ ଚାରିପଟର ମଠ ମନ୍ଦିର ପ୍ରଭୃତି, ଭକ୍ତ ବ୍ୟବସାୟୀ ସବୁ ଯେମିତି ଥିଲା ଆନୁସଙ୍ଗିକ । ଚାଳିଶ ବର୍ଷ ତଳେ ଯୁବକଟେ ଆସିଥିଲା ଏମିତି କିଛି ଖୋଜିବା ପାଇଁ । ବ୍ୟବସାୟିକ ଜୀବନ ଓ ନୀତିଗତ ଜୀବନର ପ୍ରଚଣ୍ଡ ସଂଘର୍ଷର ତାକୁ ବିଚଳିତ କରି ପକେଇଥିଲା । କେଉଁ ରାସ୍ତାଟି ଯେ ଅସଲ ରାସ୍ତା, କେଉଁ ମାର୍ଗରେ ଆଗେଇ ଯିବା ଉଚିତ ବୁଝିପାରୁନଥିଲା । ପନ୍ଦର ଦିନର ରହଣି ଦେଇଥିଲା ତାକୁ ବ୍ୟର୍ଥତା ଓ ଅନୁଶୋଚନା । ଫେରିଗଲାବେଳେ ସେ ନେଇ ଯାଇଥିଲା ସାଙ୍ଗରେ କଳା ମଚ୍ ମଚ୍ ଦାଢ଼ୀ ଓ କିଛି ଅସମାଧିତ ପ୍ରଶ୍ନ । ସ୍ୱାମୀଜୀ କହିଥିଲେ ଦି ଓ୍ୱାର୍ଲଡ ଇଜ୍ କମ୍ପୋଜିଟ୍ ହୋଲ । ଡୁ ନଟ ଏଣ୍ଟରଟେନ୍ ଦ ସ୍ପିରିଟ୍ ଅଫ୍ ସେପାରେଟନେସ୍ । ଇନ୍ ଏୟୋର୍ ହାର୍ଟ ଏଣ୍ଡ ମାଇଣ୍ଡ ବି ଓ୍ୱାନ୍ ଉଇଥ୍ ଅଲ୍ ।

ପନ୍ଦର ଦିନ, ନିଶ୍ଚୟ ଯଥେଷ୍ଟ ସମୟ ନୁହେଁ ମନ ଓ ହୃଦୟକୁ ଏକ କରିଦେବା ପାଇଁ । 'ପ୍ରଚେଷ୍ଟାର ବିକଳ୍ପ କିଛି ନାହିଁ' କେହି ଯେମିତି ବାରମ୍ବାର କହୁଥିଲା ତାଙ୍କ ହୃଦୟ ଭିତରୁ । ତଥାପି ସେ ପାରିନଥିଲେ । ତାଙ୍କୁ ଘୋଡ଼େଇ ରଖିଥିବା ମାୟାର ପର୍ଦ୍ଦାକୁ ହଟେଇ ଦେଇ ଆଉ ଗୋଟେ ଦୁନିଆକୁ ପାଦ ବଢ଼େଇ ଆଉ ଗୋଟେ ଅନୁଭୂତି ହାସଲ କରିବା ସମ୍ଭବ ହୋଇନଥିଲା । ଗୋଟେ ପଟେ କ୍ୟାରିଅର୍, ବାପା, ମା, ସ୍ୱପ୍ନ, ଆକାଂକ୍ଷା ଅନ୍ୟ ପଟେ ନିଜକୁ, ନିଜ ସ୍ଥିତିକୁ, ସଂସାରକୁ ସର୍ବୋପରି ଭଗବାନ୍‌ଙ୍କୁ ଅନୁଭବ କରିବାର ପିପାଶା ତାଙ୍କୁ ଛନ୍ଦି ପକାଉଥିଲା । ପ୍ରଶ୍ନଟିଏ ଘୁରେଇ ତୁରେଇ ହେଉଥିଲା ମନ ଭିତରେ । ଫାଇଣ୍ଡ ଏୟେର୍ ସେଣ୍ଟର । ଓ୍ୱେଲ ଅଲଓ୍ୱେଜ୍ ଇନ୍ ଦିସ୍ ସେଣ୍ଟର । ଦିସ୍ ସେଣ୍ଟର ଇଜ୍ ଆତ୍ମନ୍ ।

କିଏ ସେ ଆତ୍ମନ୍ ? କାହିଁକି ଏତେ ଖୋଜା ତାକୁ ? କଣ ପାଇଁ ଏତେ ଲୁଚକାଳି ଖେଳେ ସେ ବରୁଣ ସଂଗରେ ଯେ ଧରାଛୁଆଁ ଦିଏନା ? କାହାକୁ ପଚାରିବେ ସେ ଏ ପ୍ରଶ୍ନ ? ଅନେକ ତାଙ୍କ ପରି ଏଠି ଆତ୍ମନ ଖୋଜାରେ ବ୍ୟସ୍ତ । ଆସନ ପ୍ରାଣାୟାମ୍ ଧ୍ୟାନ ଯୋଗ ସମାଧି ଏକ ଏକ କରି ପାହାଚ କିଏ ଯେ କେଉଁ ପାହାଚରେ ତାଙ୍କୁ ଜଣାନଥାଏ । ସବୁ ଯେମିତି ମୁଣ୍ଡ ଉପରର ମେଘ । ଉପର ଦେଇ ଭାସି ଭାସି

ଯାଉଥାଏ । ସେ ଛୁଇଁ ପାରୁନଥିଲେ ସେ ମେଘକୁ । ଅନୁଭବ କରି ପାରୁନଥିଲେ । କୋଉଠି ଅସୁବିଧା ରହି ଯାଇଥିଲା କେଜାଣି । ତାଙ୍କ ପ୍ରବୃତ୍ତିରେ ଅବା ନିବୃତ୍ତିରେ । କେଉଁ ଆସକ୍ତି ତାଙ୍କୁ ଜଡେଇ ଧରିଥିଲା ସେତେବେଳେ ? କାମିନୀ ନା କାଞ୍ଚନ ? ସମ୍ଭବତଃ ତାଙ୍କୁ ଜଣାନଥିଲା ଏସବୁରୁ ମୁକ୍ତ ହେବାର ପଥ । ତାଙ୍କ ଭିତରେ ନିରାଶ ବୋଧ ତିଆରି ହେଇଥିଲା । ମନେ ହେଇଥିଲା, ଯଦି ତମେ ମାନସିକ ସ୍ତରରେ ପ୍ରସ୍ତୁତ ନୁହଁ, ଯଦି ଭଗବାନ ଚାହାନ୍ତି ନାହିଁ ଏଭଳି ଏକ ମାର୍ଗକୁ ତମେ ଆପଣେଇ ନିଅ, ଯଦି ତୁମ ଦ୍ୱାରା ଆଉ କିଛି କାମ କରେଇ ନେବାକୁ ଚାହୁଁଛନ୍ତି ସେ ତେବେ ତୁମେ ଜୋର୍ ଜବରଦସ୍ତି ତାଙ୍କ ଇଚ୍ଛା ବିରୁଦ୍ଧରେ ଯାଅ ନାହିଁ ।

ସ୍ୱାମୀଜୀ ଶିବାନନ୍ଦଙ୍କ କଥା ଉଦ୍ଧାର କରି କହୁଥିଲେ: ରିଲିଜ୍ ୟୋର୍ ରିଆଲ୍ ନେଚର । ରିଲିଜ୍ ୟୋର୍ ଆତ୍ମନ୍ । ଏ ଲାୟନ୍ ସୁଡ୍ ନଟ୍ ବି ବ୍ଲିଟ୍ ଲାଇକ୍ ଏ ଲାମ୍ବ । ମନକୁ ବିଷାଦଗ୍ରସ୍ତ କରନା । ଆଶାବାଦୀ ହୁଅ । ଜୀବନ ପ୍ରତି ନେତିବାଦୀ ଚିନ୍ତା ରଖନା । ସ୍ୱାମୀ ଯାହା କହୁଥିଲେ ଠିକ୍ ତାର ବିପରୀତ ହିଁ ଘଟି ଯାଇଥିଲା ତାଙ୍କ ସଙ୍ଗେ । ତାଙ୍କ ଚେତନାର ତରଙ୍ଗ ସବୁ ପ୍ରତିକୂଳରେ ଗତି କରୁଥିଲେ ବୋଧହୁଏ । ସେ ଫେରି ଆସିଥିଲେ ମେଂଚେ ଦାଢ଼ୀ ଓ ଅନେକ ଅସମାଧିତ ପ୍ରଶ୍ନ ନେଇ । ତା ପରଠୁଁ କେବେ ଋଷିକେଶ ଆସିବା ସୁଯୋଗ ମିଳିନି ତାଙ୍କୁ ।

ତାଙ୍କ ଘଣ୍ଟାରେ ଦିନ ତିନିଟା ବାଜିବାକୁ ଯାଉଥିଲା । କିଛି ଖାଇ ଦେବା ଉଚିତ୍ ଭାବିଥିଲେ ସେ । ବୁଲୁବୁଲୁ ଯେ ଏତେ ସମୟ ଅତିକ୍ରାନ୍ତ ହେଇ ଯାଇଛି ବୁଝି ପାରିନଥିଲେ ସେ । ଏତେ ବେଳେ କଣ ଆଉ ଭାତ ଅବା ରୁଟି ମିଳିବ ହୋଟେଲ୍‌ରେ ? ସେ ସଫା ସୁତୁରା ହୋଟେଲଟିଏ ଦେଖି ଭିତରକୁ ଯାଇ ଜଳଖିଆ ବରାଦ୍ ଦେଲେ । ହୋଟେଲ୍‌ଟି ଅବଶ୍ୟ ରାସ୍ତାକଡ଼ରେ ଥିଲା । ପିଲାଟେ ଆସି ପୁରୀ ତର୍କାରୀ ପରଶି ଦେଇଗଲା ତାଙ୍କ ଟେବୁଲରେ । ସେ ମୁହଁରେ ପୁରୀ ଦି ଟୁକୁଡା ପୁରେଇଛନ୍ତି କି ନାହିଁ, ରାସ୍ତା ଉପରୁ ପାଟିଟେ କରି ଗୌରୀ ହୋଟେଲ୍ ଭିତରକୁ ପଶି ଆସିଥିଲା । ବରୁଣ ବାବୁ ଆପଣ ଏଇଠି ଆମେ ଆପଣଙ୍କୁ କେତେ ଜାଗାରେ ଖୋଜୁଛୁ । ଯେଉଁଠିକି ଯାଉଛୁ ଆପଣ ନାହାନ୍ତି ?

ମୋତେ ଖୋଜୁଥିଲ କାହିଁକି ? ପଚାରିଥିଲେ ବରୁଣ ।

ଆରେ ଖୋଜିବୁନି, କହିଥିଲା ଗୌରୀ, ସାଙ୍ଗ ହେଇ ଏତେବାଟ ଏକାଠି ଆସିଛେ । ଗୋଟେ ଜାଗାର ଲୋକ । ଏତେ ଦିନ ଏକାଠି ରହି ରହି ଗୋଟେ ପରିବାର ପରି ଲାଗୁଛି । ଆପଣ କହୁଛନ୍ତି ଆମେ ଆପଣଙ୍କୁ ଖୋଜିବୁନି । ଚାଲୁନାହାନ୍ତି ଦେଖିବେ ମେଜର୍ ମଉସା କେମିତି ବ୍ୟସ୍ତ ହେଉଛନ୍ତି ଦେଖିବେ । ଆପଣଙ୍କୁ ନେଇ

ତାଙ୍କ ଝିଅ ସଙ୍ଗେ ଖଣ୍ଡେ ପଟେ ଝଗଡ଼ା ହୋଇ ସାରିଲାଣି । ଆପଣ ଆଜି ଭାତ ଖାଇ ନାହାନ୍ତିଟି ? ନା ଭାତ ପରେ ଏଇଟା ଜଳଖିଆ ଖାଉଛନ୍ତି ମ ?

ବରୁଣଙ୍କୁ ବଡ଼ ଅଶ୍ୱସ୍ତିକର ଲାଗୁଥିଲା । ପିଲାଟା ସେତେବେଳୁ ଗପି ଚାଲିଛି । ଆଖ ପାଖର ଲୋକ କେଇଟା ତାଙ୍କ ଆଡ଼କୁ ଧ୍ୟାନ ଦେଲେଣି । ସେ କହିଲେ: ହଉ ହେଲା ହେଲା, ବସ୍ ଏଥର । ତୁ କଣ ଖାଇବୁ କହିଲୁ ?

ଗୌରୀ ଏଥର ଲାଜେଇ ଲାଜେଇ ହସିଥିଲା । କହିଥିଲା: ନାଇମ ଏଇ ପରା ସବୁ ଗୋଟିଏ ଗୋଟିଏ ହୋଇ ମୋ ପଛେ ପଛେ ଆସୁଛନ୍ତି । କେତେ ଆଉ ଆପଣଙ୍କୁ ଅନେଇଥାନ୍ତୁ, ଲଛମନ ଝୋଲା ଦେଖିବାକୁ ଚାଲି ଆସିଲୁ । ଭାଗ୍ୟକୁ ମୋ ନଜରଟା ପଡ଼ିଗଲା ବୋଲି ସିନା ।

ନହେଇଥିଲେ କଣ ହେଇଥାନ୍ତା, ହସିଥିଲେ ବରୁଣ ।

କଣ ଆଉ ହେଇଥାନ୍ତା, ଆମେ ଗୁଡେ ଚିନ୍ତା କରିଥାନ୍ତୁ ।

ମିଠାଟେ ଖା, ବରୁଣ କହିଥିଲେ ଗୌରୀକୁ ।

ଗୌରୀ ଲାଜେଇ ଲାଜେଇ କହିଥିଲା ହଉ ଯାହା ହେଲେ ମଗାନ୍ତୁ । ଗୌରୀ ତାଙ୍କ ସାମ୍ନା ସିଟ୍‌ରେ ବସିଥିଲା । ବରୁଣ ପଚାରିଥିଲେ, ଆରେ ତୁ ଯାହା ଗପୁଡ଼ି ହେଇଛୁ, କେତେବେଳେ କଣ ଗପି ଦେଇଥିବୁ ଲାଗୁଛି । ହରିଦ୍ୱାର ସେ ରାତି କଥା କାହାକୁ କହି ଦେଇନୁ ତ ଆଜି ?

ମୁହଁରେ ଚୁଉ ଶବ୍ଦଟେ କରିଥିଲା ଗୌରୀ । ଆପଣ ମୋତେ ବିଶ୍ୱାସ କରୁନାହାନ୍ତି ? ଆପଣ ଯେଉଁ କଥା ମନା କରିଛନ୍ତି ମୁଁ କେମିତି କହିଦେବି କହିଲେ ? ସବୁଠୁଁ ବେଶି ସେଇ ମେଜର୍ ମଉସାଙ୍କ ଝିଅ । ଝାମେଲା କରି ପକେଇଥାନ୍ତା । ଆଛା, ସେ ପାଗଳୀଟା କି ?

ବରୁଣ ଏକଲୟରେ ଦେଖୁଥିଲେ ଗୌରୀକୁ । ଚାମଚରେ ରସଗୋଲାଟିକୁ କାଟୁଥିଲା ଗୌରୀ । ବେଶ୍ ସୁନ୍ଦର ଲାଜୁରା ମୁହଁଟେ ଝିଅ ପିଲାଙ୍କ ପରି । ଶାଢ଼ୀ ପିନ୍ଧେଇ ଦେଲେ ପୁରା ଝିଅଟେ ଭଳି ଲାଗିବ । ହାତଗୁଡାକ ବି ବେଶ୍ ନରମ ଲୋମହୀନ । ଆଙ୍ଗୁଠି ଗୁଡିକ ଲମ୍ବା ଲମ୍ବା । ଏ ପିଲା ଖଣ୍ଡକୁ କେଉଁଠୁ ଯୋଗାଡ଼ କଲା ପ୍ରଫେସର ମହାପାତ୍ର । ଆଗରୁ ତ କେବେ ସେ ପ୍ରଫେସର ମହାପାତ୍ରଙ୍କ ଘରେ ଏ ପିଲାକୁ ଦେଖିନଥିଲେ । ସ୍ତ୍ରୀ ସହ ଅଲଗା ହେଇଗଲା ପରେ ବୋଧହୁଏ ଏ ଟୋକୀ ଖଣ୍ଡକକୁ କେଉଁଠୁ ଯୋଗାଡ଼ କରିଛି । ଦେଖିଲେ ଚାକର ଟୋକୀ ଭଳି ଲାଗେନା । ନା ଚେହେରାରେ ନା ଚାଲି ଚଳଣରେ । ଉଚ୍ଚଶିକ୍ଷିତ ନ ହେଇଥିଲେ ମଧ୍ୟ ଆଇ.ଏ

ବି.ଏ ତ କରିଥିବ ଲାଗୁଛି । କଥା କହିଲା ବେଳେ ବେଶ୍ ନରମ ଗଳାରେ ବସେଇ ବସେଇ କହୁଥାଏ ଯେ ମନ ହେବ ଘଣ୍ଟେ ଅଧେ ତାକୁ ଧରି ବସିବା ପାଇଁ । ଏମିତି ଏଣୁତେଣୁ ଭାବୁଭାବୁ ସେ ମହାପାତ୍ରଙ୍କ ଗୋପନ ଅଭିସନ୍ଧିକୁ ପଢ଼ି ନେଇଥିଲେ; ପଚାରିଥିଲେ, ଆରେ ଗୌରୀ ତୁ ମହାପାତ୍ରଙ୍କ ଘରେ କି କି କାମ କରୁ ?

ମୁଁ କିଛି କରେନା । ବଙ୍କା ନାଁରେ ପିଲାଟେ ଅଛି ସେ ସବୁ କରେ । ରୋଷେଇବାସଠୁଁ ଘରର ଦେଖାଚାହାଁ ସବୁ ।

ତେବେ ତୋତେ ତୁଚ୍ଛାଟାରେ ଦରମା ଦେଇ ରଖିଛି କାହିଁକି ?

ତୁଚ୍ଛାଟାରେ ନୁହଁ ସାର୍ । ମୁଁ ତାଙ୍କ ବହିପତ୍ର ସମ୍ଭାଳେ । ତାଙ୍କ ଦେହ ହାତ ମୋଡେ । ସେ କୁଆଡ଼େ ଗଲେ ଆସିଲେ ଖବର ରଖେ । ପ୍ରାଇଭେଟ୍ ସେକ୍ରେଟାରୀ କୁହନ୍ତୁ ।

କୋଡିଏ ଏକୋଇଶ୍ ବର୍ଷର ଏଇ ପିଲାଟିର କଥା ତାଙ୍କୁ ବଡ କଉତୁକିଆ ଲାଗୁଥିଲା । ଖାଲି ଏତିକି କାମ ପାଇଁ ସେ ତୋତେ ରଖିଛନ୍ତି ନା କଣ ମ ? ପଚାରିଥିଲେ ବରୁଣ ।

କଥା କଣ କି ସାର୍, ଆମ ଘରଟା ମାଡାମ୍‌ଙ୍କ ଗାଁରେ । ଗାଁ କଲେଜରୁ ବି.ଏ ପାଶ୍ କରି ବସିଥିଲି । ଚାକିରୀ ବାକିରୀ ଆଜି କାଲି ମିଳୁଛି କେଉଁଠି ? ମାଡାମ୍‌ଙ୍କର ନର୍ସିଂ ହୋମ୍ ତିଆରି ବେଳେ ଲୋକଟିଏ ଦରକାର ପଡ଼ିବାରୁ, ତାଙ୍କ ଭାଇନା ମୋତେ ଯୋଗାଡ କରି ପଠେଇଥିଲେ । ବାଲିସିମେଣ୍ଟର ହିସାବ କିତାବ ରଖିବା, କଂଟ୍ରାକ୍ଟରର କାମ ତଦାରଖ କରିବା ଏୟା ତ କାମ ଥିଲା । ତାପରେ ମୁଁ ଆଉ ଯାଇନି ଗାଁକୁ ।

ସେମାନେ ହୋଟେଲ୍‌ରୁ ବାହାରି ଆସିଥିଲେ । ଗୌରୀ କହିଲା, ଗୋଟେ କଥା ପଚାରିବି ଖରାପ୍ ଭାବିବେନି ତ ସାର୍ ?

ବରୁଣ କହିଥିଲେ, ପଚାରୁନୁ କଣ ପଚାରିବୁ । ତୁ ଏମିତି କଣ ପଚାରିବୁ ଯେ ମୁଁ ଖରାପ୍ ଭାବିବି ?

ନାଇଁମ ସେ ହରିଦ୍ୱାର କଥା, କହିଥିଲା ଗୌରୀ । ଆପଣ ତୀର୍ଥ କରି ଆସିଛନ୍ତି କି ନାହିଁ କହିଲେ ? ତୀର୍ଥ କରି ଆସିଛନ୍ତିଟି ? ତୀର୍ଥ ଦିଅଁ ଦର୍ଶନ ଏଗୁଡାକରେ ମନକୁ ଶୁଦ୍ଧ ରଖିବା କଥା କି ନାହିଁ ? ଆପଣ ସେଦିନ ଲୁଚେଇ ଲୁଚେଇ ଯାହା କଲେ, ଠିକ୍ ଲାଗିଲା ନାହିଁ କଥାଟା ।

ବରୁଣ ଗମ୍ଭୀର ହେଇ ଯାଇଥିଲେ ତା କଥା ଶୁଣି । କିନ୍ତୁ ତାଙ୍କ ଗାମ୍ଭୀର୍ଯ୍ୟକୁ ଗଳା ପର୍ଯ୍ୟନ୍ତ ଓହ୍ଲେଇ ଆସିବାକୁ ଦେଇ ନଥିଲେ ସେ । ପୂର୍ବବତ୍ କହିଥିଲେ, ଏଥିରେ ଭୁଲ ରହିଲା କେଉଁଠି ? ମନ ଶୁଦ୍ଧ ହେବା କଥା କହୁଛୁ ତ ? ମୋ ମନ ଅଶୁଦ୍ଧ

ନାହିଁ । ମୁଁ ହ୍ୱିସ୍କି ପିଇଲି । ମୋ ନିତି ଦିନିଆ ଅଭ୍ୟାସ । ତୁ ତୀର୍ଥସ୍ଥାନକୁ ଆସିଚୁ ବୋଲି କଣ ଭାତ ଖାଉନାହୁଁ ? କାହିଁକି ଭାତ ଖାଉଚୁ ତୁ ? ଅଭ୍ୟାସ ଅଛି ବୋଲି ଖାଉଚୁ । ଭୋଗ ଆଉ ଉପଭୋଗ ଭିତରେ ତଫାତ୍ ଅଛି । ସେ ତଫାତ୍ ଟିକକ ବୁଝିବା ଉଚିତ୍ । ତୋତେ ମୁଁ କାହିଁକି ଲୁଚି ଲୁଚି ପିଇଲି ବୋଲି ତୋ ମନରେ ପ୍ରଶ୍ନ ଆସୁଥିବ । ଦେଖ୍, ଏଇଟା ଗୋଟେ ତୀର୍ଥ ଜାଗା । ଅଧିକାଂଶ ଯାତ୍ରୀ ତୋ ଭଳି ମଦ ମାଂସ ନାରୀକୁ ଏଇ କିଛି ଦିନ ପାଇଁ ଅସ୍ପୃଶ୍ୟ ଭାବୁଥିବେ । ମନରେ ପଛେ ହଜାର ଆସକ୍ତି ଥାଉ, ତାକୁ ପ୍ରକାଶ କରୁନଥିବେ ବାହାରକୁ । ସେମାନଙ୍କ ଜବାବ୍ ସୁଆଲ୍‌ରୁ ବଂଚି ରହିବା ପାଇଁ ମୁଁ ବାଲ୍‌କୋନୀର ଅନ୍ଧାରୁଆ କୋଣଟାକୁ ବାଛିଥିଲି । ତାଛଡ଼ା ଏଠିକାର ଅଧିକାଂଶ ହୋଟେଲ୍‌ରେ ମଦ ପିଇବା ନିଷେଧ ।

ଗୌରୀ କିଛି ଜବାବ୍ ଦେଇ ନଥିଲା । ସମ୍ଭବତଃ ତା ମୁଣ୍ଡରେ ଏ ବୌଦ୍ଧିକ ଯୁକ୍ତି ପଶିପାରୁ ନଥିଲା । କିମ୍ବା ତା ମନ ମାନୁ ନଥିଲା, ମନ ଓ ଶରୀର ଅଲଗା ଅଲଗା ଜିନିଷ ବୋଲି । କିଛି ସମୟ ଗମ୍ଭୀର ଭାବରେ ସେମାନେ ଚାଲିଥିଲେ । ତାପରେ ଗୌରୀ ପଚାରିଥିଲା ଇନ୍ଦ୍ରିୟ ସଂଯମ ପରା ଚିତ୍ତ ଶୁଦ୍ଧିର ପ୍ରଥମ ପାହାଚ ? ଆପଣଙ୍କର ରସନା ସଂଯତ କରିବା କଥା ନୁହଁକି ? ବରୁଣ ହସିଥିଲେ, କହିଥିଲେ, ହଁରେ ମୋର ଅବଧୂତ । ତୁ ବହୁତ୍ କଥା ଜାଣୁ । ମୁଁ ତୋତେ ଛୋଟ ପିଲାଟେ ଭାବି ପାସଙ୍ଗରେ ପକାଉନଥିଲି । ହସି ଦେଇ ଗୌରୀ କହିଥିଲା, ମୁଁ ତୀର୍ଥ କରି ଆସିନି । ମହାପାତ୍ର ସାର୍ ଡାକିଲେ ବୋଲି, ମୁଁ ଭାବିଲି, ଚାଲ ଯିବା ବୁଲିବାଲି କି ଆସିବା । ମାଗଣା ମାଗଣା ଏସ୍‌କରସନ୍‌ଟେ ହୋଇଯିବ ।

କିଛି ବାଟ ଦିହେଁ ଚାଲିଲା ପରେ ଗୌରୀ କହିଥିଲା, ଆପଣ ଭାବୁଥିବେ ସାର୍ ଏ ଟୋକୀ ଖଣ୍ଡକ ଇନ୍ଦ୍ରିୟ ସଂଯମ ଚିତ୍ତ ଶୁଦ୍ଧି କଥା ଜାଣିଲା କେମିତି ? ତା ଗୋଟେ ରହସ୍ୟ । ନାଇଁ, ରହସ୍ୟ ଠିକ୍ ନୁହଁ । ମୋତେ ତ ମଜା ଲାଗିଥିଲା ସେଥର ।

କୋଉ ଥର କଥା କହୁଚୁ ତୁ ? ପଚାରିଥିଲେ ବରୁଣ ।

ଆମ ଗାଁକୁ ଜଣେ ସ୍ତ୍ରୀଲୋକ ଆସିଥିଲେ ; ପାରାୟଣ କରିବାକୁ । ଅତିବେଶି ହେଲେ ପଚିଶିରୁ ତିରିଶ୍ ବର୍ଷ ଭିତରେ ହେବ ତା ବୟସ । ତାର କି ମିଠା ଗଳା । ଟୋକାଙ୍କର ଭିଡ଼, ଖାଲି ତା ଚେହେରା ଦେଖିବା ପାଇଁ ପରା । ଆଉ ସେ କଣ କହୁଛି, କଣ ବୁଝେଉଛି କିଏ ଶୁଣୁଛି । ଆମ ଗାଁ ଶ୍ୟାମ ତ ତାକୁ ଉଡେଇ ନେବ ବୋଲି ବେଟ୍ ଲଗେଇଥିଲା । କହୁ କହୁ ହସି ହସି ଗଡ଼ିଗଲା ଗୌରୀ ।

ଗପୁ ଗପୁ ସେମାନେ ଲଛମନ ଝୋଲା ପାର୍ ହେଇ ସାରିଥିଲେ । ଲଛମନ ଝୋଲାର ଅପର ପଟରେ ଥିବା ଏଗାର ତାଲା ଅଟ୍ଟାଳିକା ପାଖରେ ଭେଟ ହେଇ

ଯାଉଥିଲା ସେମାନଙ୍କର । ମେଜର୍ ଆଗେଇ ଆସି ବରୁଣଙ୍କୁ କୁଣ୍ଢେଇ ପକେଇଥିଲେ । କୁଆଡେ ବୁଲୁଛନ୍ତି ସକାଳ ପହରୁ ? କିଛି ଦିଟା ଖାଇଲେଣି କି ନାହିଁ କହିଲେ ? ବଡ଼ ଚିନ୍ତାରେ ପଡ଼ିଯାଇଥିଲି । ବାହାର ଜାଗା । ଏକାଠି ରହିଲେ ମନୋବଳ ବଢ଼େ । ମୁଁ ବୁଝିପାରିଲି ନାହିଁ କୁଆଡିକୁ ଯାଇ ଖୋଜିବି । ମନରେ ଚିନ୍ତା ପଶିଯାଇଥିଲା, ଗଙ୍ଗାରେ ବୁଡ଼ିଗଲେ କି ? ହରିଦ୍ୱାରରେ ବି ସେମିତି ବାବନା ଭୂତଟେ ଭଳି ବୁଲୁଥିଲେ । ଆମ ମାନଙ୍କ ସାଙ୍ଗ ଭଲ ଲାଗୁନି ବୋଧହୁଏ ଆପଣଙ୍କୁ । ପ୍ରଫେସର୍ ମହାପାତ୍ର କହିଥିଲେ, ଖବର କାଗଜ ବାଲା, ଭାଇ ଗୋଟେ ଜାଗାରେ ବସିବା ଅଭ୍ୟାସ ନଥିବ । ଦଶ ଜାଗାରୁ ଦଶଟା ଖବର ସାଉଁଟୁ ଥିବେ ନା କଣ ବରୁଣ ବାବୁ ।

ସେ କଥା ନୁହଁ, କହିଥିଲେ ବରୁଣ ବାବୁ, ଅସଲରେ ଋଷିକେଶ ମୋର ପୁରୁଣା ପରିଚିତ ଜାଗାଟିଏ । ଥରେ ମନରେ ସନ୍ୟାସ ନିଶା ଧରିଥିଲା, ଏଇଠି ମାସଟେ ରହିକି ଫେରିଥିଲି ।

ସତେକି ? ପ୍ରଫେସର୍ ମହାପାତ୍ର କହିଥିଲେ, ଏଥର ପୁଣି ରହିଯିବାର ପ୍ରସ୍ତାବ ନାହିଁତ ? ଯାହା କୁହନ୍ତୁ ଚମତ୍କାର ଜାଗାଟିଏ ଏ ଋଷିକେଶ । ପ୍ରକୃତି ବଡ଼ ମନୋରମ । ଏଇଠି ଦିନ କେତେଟା ରହିଗଲେ ମନ ଆପେ ଆପେ ସନ୍ୟାସ ଆଡକୁ ଢଳିଯିବ ପରା । ହଁ, ଗୋଟେ କଥା, ଛୋଟବଡ଼ ହେଇ ଯେତେଗୁଡ଼ିଏ ଆଶ୍ରମ ଦେଖିଲି କେହି ମୋତେ ଆକୃଷ୍ଟ କଲେ ନାହିଁ । କେଉଁଠି ଆଶ୍ରମ ନାଁରେ ମୋଜାଇକ୍ ମାର୍ବଲ କୋଠା ତ କେଉଁଠି ଅତି ଅସନା ପୋଚରା ଝୁମ୍ପୁଡ଼ି ପରି ଘର ।

ବରୁଣ ବାବୁ କହିଲେ, ଯେଉଁମାନେ ବିଭିନ୍ନ ବଦାନ୍ୟ ବ୍ୟକ୍ତି କି ସଂସ୍ଥା ତରଫରୁ ସାହାଯ୍ୟ ପାଉଛନ୍ତି ସେମାନେ ଚକ ଚକିଆ କରି ରଖିଛନ୍ତି ସେମାନଙ୍କ ଆଶ୍ରମକୁ । ସମସ୍ତଙ୍କୁ ସେ ପ୍ରକାର ସାହାଯ୍ୟ ମିଳୁଛି କୋଉଠି ?

ମାନୁଛି, ଆପଣଙ୍କ କଥା । କିନ୍ତୁ ଜଣେ ମୁନି ଋଷି କି ଦିବ୍ୟଦ୍ରଷ୍ଟା ଟିଏର ସନ୍ଧାନ ପାଇ ପାରି ନାହାନ୍ତି । ପ୍ରଥମ ହେଲା ଜଟାଜୁଟ ଗେରୁଆ ବସ୍ତ୍ର ଲୋକଙ୍କୁ ଦେଖି ଆପଣଙ୍କୁ ଭଣ୍ଡ ମନେ ହେଇଥିବ । ଆଉ ଦ୍ୱିତୀୟଟି ହେଲା ସାଦା ସିଧା ଲୋକଙ୍କୁ ଆପଣ ଜ୍ଞାନୀ ବୋଲି ଭାବି ପାରିନଥିବେ । ଭୋର କିମ୍ବା ସନ୍ଧ୍ୟାରେ ଆସନ୍ତୁ ମୁଁ ଆପଣଙ୍କୁ ସେଇଭଳି ଲୋକଙ୍କ ସହ ସାକ୍ଷାତ କରେଇ ଦେବି ।

ତାହା ହିଁ ହେଉ । କହିଥିଲେ ପ୍ରଫେସର୍ ମହାପାତ୍ର । ଆଜି ସଂଧ୍ୟାଟା ଏଇଠି ରହିଯିବା ।

ଶର୍ମିଷ୍ଠା ପଚାରିଥିଲା, ତାହେଲେ ଆପଣମାନେ ଆମ ସଙ୍ଗେ ଫେରିବେ ନାହିଁ । କେଉଁଠିକୁ ଯିବେ ଆପଣମାନେ ? ମୋର ଠିକ୍ ଅଛି । ଏଇ ମାୟାମୋହଠୁ ଯଥେଷ୍ଟ ଦୂରରେ ମୁଁ । ମୋର କିଏ ଆଉ ଅଛି କହୁନାହାନ୍ତି ଏଇ ବୁଢ଼ା ବାପାଙ୍କୁ ଛାଡ଼ିଦେଲେ ? ବାହା ହେଇଛି ନା ସାହା ହେଇଛି । ଆପଣ ମାନଙ୍କ ଜୀବନରେ କଣ ଅଛି, ଖାଲି ସେକ୍ସ, ଛୁଆପିଲା, ଯେତେ ଝାମେଲା । ଆପଣମାନେ ସେକ୍ସକୁ ଛାଡ଼ି ରହି ପାରିବେ ନାହିଁ । ମୋତେ ଦେଖନ୍ତୁ ମୋତେ ମାୟା ବଶୀଭୂତ କରିନାହିଁ । ଗୁରୁଜୀଙ୍କ ଆଶ୍ରମ ଆପଣମାନେ ଦେଖିନାହାନ୍ତି । କି ଶାନ୍ତିପ୍ରଦ ସ୍ଥାନ । ଆପଣ ଜାଣିଛନ୍ତି, କେମିତି ଜୀବନ ଜୀଇଁବା ଉଚିତ୍ ତାହା ସେଇଠି ଶିଖାଯାଏ । ଆପଣମାନେ ଥରେ କ୍ୟାମ୍ପରେ ଯୋଗ ଦିଅନ୍ତୁ ବୁଝିବେ । ଧ୍ୟାନ ତ ଶିଖାଯାଏ । ଆଖି ବନ୍ଦ କରି ବିଭିନ୍ନ ସ୍ଥାନକୁ କଳ୍ପନା କର । କେତେବେଳେ ମନ ପାଦ ପାଖରେ ନିବେଶ କର କେତେବେଳେ ଗୋଡ ଧିରେ ଧିରେ ସମଗ୍ର ଶରୀର । ଆସ୍ତେ ଆସ୍ତେ ଶରୀରଟା ନଥିଲା ପରି ଲାଗିବ । କିଛି ବୁଝିହେବନି । ଶୂନ୍ୟରେ ରହିଲା ପରି ଲାଗିବ । ଏ ତ ଗଲା ଧ୍ୟାନ । ମନସ୍ତତ୍ତ୍ୱ ମଧ୍ୟ ପରୀକ୍ଷା କରାଯାଏ । ଧରନ୍ତୁ ତ ଆପଣଙ୍କ ହାତରେ ଅଙ୍ଗୁରଟେ ଥୋଇବେ ସେମାନେ । ଆପଣ ଦେଖିବେ କିନ୍ତୁ ସେମାନଙ୍କୁ ନ କହିବା ଯାଏ ମୁହଁରେ ନେବେନି । ତାପରେ ଅଙ୍ଗୁରଟି ଜିଭରେ ଥୋଇବେ ଟପ୍ କରି ଗିଳିଦେବେ ନାହିଁ । ଏ କଡ କଢରୁ ସେକଡ଼ କଢକୁ କରିବେ । ଅଙ୍ଗୁରଟି ଅକ୍ଷତ ରହିବ ଯେମିତି ଦେଖୁଥିବେ । ଶେଷରେ ଖାଇବେ ସେଇଟିକୁ । ତେଲ ମସଲା ମାଛ ମାଂସ ପିଆଜ ରସୁଣ ପୁରା ମନା । ଏସବୁ ତାମସିକ ଭାବ ତିଆରି କରେ । ଖାଲି ସେତିକି ନୁହଁ । ଆପଣ ଯେଉଁଠି ବସି ଧ୍ୟାନ କରୁଥିବେ ସେଇଠି ବୁଲିପଡ଼ିବେ । ସାମ୍ନାରେ ଯିଏ ଥିବ ତା ସଙ୍ଗେ କଥୋପକଥନରେ ମଜ୍ଜି ଯିବେ । କଣ ଗପିଲେ ତାହା ଜଣେଇବେ ଗୁରୁଜୀଙ୍କୁ । ଶେଷରେ ଉଠିଲା ବେଳେ ଯିଏ ତମ ସାମ୍ନାରେ ଆସିବ, ତାକୁ କହିବେ ଆଇ ବିଲଙ୍ଗ୍ ଟୁ ୟୁ । ଏ ସବୁରୁ କିଛି ବୁଝୁଛନ୍ତି ଆପଣମାନେ ? ଅର୍ଥାତ୍ ଚିତ୍ତ ସଂଯମ କର । ତମେ ସମସ୍ତଙ୍କ ଭିତରେ, ସମସ୍ତେ ତମ ଭିତରେ ଅଛନ୍ତି ବୋଲି ଭାବ । ମୁଁ ଯେତେବେଳେ ଶିଖିଥିଲି ସେଇ ସମୟରେ ବୋଧହୁଏ ମୋ ସାମ୍ନାରେ ଥିବା ଲୋକଟି ଗୋଟେ ଅଟୋ ଡ୍ରାଇଭର୍ ଥିଲା । ମୁଁ ତାକୁ ତ ଆଇ ବିଲଙ୍ଗ୍ ଟୁ ୟୁ କହିଦେଲି । ହେଲେ ସେ କହିବାକୁ ଲାଜେଇଥିଲା । ଖାଲି ଜୀବନ ଜୀଇଁବା ଶିଖାନ୍ତି ସେ କଥା ନୁହଁ ଆମ ଗୁରୁଜୀ ଅନେକ କଥା ଆଗରୁ ଜାଣିପାରନ୍ତି । ଦିବ୍ୟଦ୍ରଷ୍ଟା ବୋଲି କୁହନ୍ତୁ । ବାପାଙ୍କ ହାର୍ଟଆଟାକ୍ ପୂର୍ବରୁ ସେ କହିଦେଇଥିଲେ, ତୋ ବାପାଙ୍କ ପାଇଁ ଗୋଟେ ଖରାପ ସମୟ ଆସୁଛି । କିନ୍ତୁ କିଛି ହେବ ନାହିଁ । ଉପରୁ ଉପରୁ ଚାଲିଯିବ । ସତ

ହେଲା ସେୟା । ମୋ ବାପାଙ୍କ ଛଡ଼ା ମୋର ଆଉ କିଏ ଅଛି କହିଲେ । ପିଲାପିଚିକା ନା ସ୍ୱାମୀ ସଂସାର ? ଆପଣ ମାନଙ୍କର ସଂସାର ଯାକର ସମସ୍ୟା ଲାଗି ରହିଛି । କେଉଁଥିପାଇଁ ଏଇ ପିଲାପିଚିକା ସ୍ୱାମୀ ସ୍ତ୍ରୀ ସଂସାର ? ସ୍ୱାମୀ ସ୍ତ୍ରୀ ସଂସାର କଣ ପାଇଁ ? ତା ମୂଳହେଲା ସେକ୍ସ । ଆମ ଗୁରୁଜୀ କହିଛନ୍ତି ସେକ୍ସ ଆଉ ସୁନା ଦିଟି ଜିନିଷରୁ ଦୂରେଇ ରହିବ । ମୋର ବହୁତ୍ ଗହଣା ଅଛି । ମୁଁ ପିନ୍ଧନ୍ତି ନାହିଁ ଯେ, ମାଳବିକା ବିରକ୍ତ ହୁଏ ବୋଲି ପିନ୍ଧି ପକାଏ । ମୋର କିନ୍ତୁ ସୁନା ପାଇଁ ଗର୍ବ ନାହିଁ । ଆଉ ସେକ୍ସ ? ଛାଡ଼ନ୍ତୁ ତା ତ ପ୍ରଶ୍ନ ନାହିଁ । ଆପଣମାନଙ୍କର ଦିନ ରାତି ଆଉ କିଛି ନାହିଁ ଖାଲି ସେକ୍ସ ।

ବରୁଣ ମେଜରଙ୍କ ଆଡ଼କୁ ଅନେଇଲେ । ପଥର ମୂର୍ତ୍ତିଟେ ଦେହରେ ଅସହାୟ ଆଖି ଦିଇଟି କିଏ ଯେମିତି ଖଞ୍ଜି ଦେଇଛି । ସେ ଶର୍ମିଷ୍ଠାକୁ ରୋକି ପାରିବେ ନାହିଁ । ଅଥଚ ଶର୍ମିଷ୍ଠାର ଅସୁନ୍ଦର କଥା, ତାର ବାଚାଳତା ତାଙ୍କ ପାଖରେ ଅସହ୍ୟ ହେଇପଡ଼ିଛି । ଆହା ବିଚାରୀ କି କଷ୍ଟ ଭୋଗୁଥିବ ଲୋକଟା ।

ବରୁଣ କହିଥିଲେ, ଆଚ୍ଛା ଆପଣମାନେ ତେବେ ଆସନ୍ତୁ ଏଥର । ଆମେ ଆଉ ଟିକେ ପରେ ପହଞ୍ଚିବୁ ।

ପରିଡା ମାଉସୀ କହିଥିଲେ, ତମେ ପ୍ରବଚନ ଶୁଣିବାକୁ ରହିବ ଯଦି, ମୁଁ ମଧ ରହିଯାଉଛି ।

ଗୌରୀ କହିଥିଲା, ପରିଡ଼ା ମାଉସୀ ରହିଲେ, ମଉସାଙ୍କୁ ମଧ ରହିବାକୁ ପଡ଼ିବ । ମୁଁ କାହିଁକି ଏକୁଟିଆ ଫେରିବି ? ମୁଁ ରହି ଯାଉଛି । ଆଉ କିଛି ସମୟ ବୁଲାବୁଲି କରି ଫେରିବି ।

ଶେଷରେ ସମସ୍ତଙ୍କୁ ଫେରି ଆସିବାକୁ ପଡ଼ିଥିଲା ହୋଟେଲ୍‌କୁ । ବରୁଣ ଲକ୍ଷ୍ୟ କରିଥିଲେ ସେଇ ସେତେବେଳୁ ମେଜର୍ ହିମାଳୟ ପାଲଟି ଯାଇଛନ୍ତି ଯେମିତି । ଦେହସାରା ଜମି ଯାଇଛି ଅସହାୟତାର ବରଫ । ତାଙ୍କୁ ତରଳେଇବାକୁ ହେବ ।

ହୋଟେଲ୍‌ଟିରୁ କୋଳାହଳ କମି ଆସିଥିଲା । ପ୍ରାୟ ଅନେକ ଯାତ୍ରୀ ଦିନ ସାରା ବୁଲା ବୁଲିରେ ଥକି ଯାଇଥିବାରୁ, ବିଛଣା ଧରି ସାରିଥିଲେ । ପ୍ରଫେସର ମହାପାତ୍ର ଯୋଗ ଚିକିତ୍ସା ନାଁରେ ବହି ଖଣ୍ଡେ କିଣିଥିଲେ, ସେଇ ଖଣ୍ଡକ ଧରି ଗଡି ପଡ଼ିଥିଲେ ବିଛଣାରେ । ଗୌରୀ ଓ ଶର୍ମିଷ୍ଠା ହୋଟେଲ୍‌ରେ ଏଣ୍ଟ୍ରାନ୍ସ ହଲ୍‌ରେ ଥିବା ଟି.ଭି. ସାମ୍ନାରେ ବସି ଯାଇଥିଲେ । ବରୁଣ ବେଶ୍ କିଛି ବେଳ ହୋଟେଲ୍‌ଟିର ଏମୁଣ୍ଡରୁ ସେମୁଣ୍ଡ ବୁଲି ଅନ୍ଧାରିଆ ଠା ଖଣ୍ଡେ ଯୋଗାଡ଼ କରି ସାରିଥିଲେ । ପଞ୍ଜାବୀ ପକେଟ୍‌ରେ ବୋତଲଟି

ରଖି, ଦିଟି ଗ୍ଲାସ୍ ଓ ପାଣି ଜଗ୍ ଉଠେଇ ଆଣିଲା ବେଳେ ଆସ୍ତେ କରି ମେଜରଙ୍କୁ ଡାକିଥିଲେ, ବାହାରକୁ ଆସନ୍ତୁ । ମେଜର ବାହାରକୁ ଆସିଥିଲେ । ଅନ୍ଧାରୁଆ ଠାରେ ଗୋଟେ ଦଦରା କାଠ ବେଞ୍ଚ୍ ଓ କିଛି ମଇଳା ଛିଣ୍ଡା ଗଦି ପଡ଼ିଥିଲା । ବେଞ୍ଚରେ ବସିପଡ଼ି ଗ୍ଲାସ୍ ଦିଟି ସାମ୍ନା ସାମ୍ନି ରଖିଥିଲେ । ମେଜର୍ ବୁଝିପାରିଥିଲେ ଘଟଣାଟି କଣ । ବେଞ୍ଚରେ ବସି ପଡୁ ପଡୁ କହିଥିଲେ, ଏଇଠି ବି ଚୁଇଛନ୍ତି ?

---

ଧୂଆଁ ଭଳି କୁହୁଡ଼ି ଘେରି ରହିଥିଲା ପାହାଡର ଚୂଡାକୁ । ଘନ ସବୁଜ ପର୍ବତମାଳାର ମସ୍ତକରେ ସଫେଦ୍ ପଗଡ଼ି ଭଳି ମନେ ହେଉଥିଲା ଦୂରକୁ । ବିସ୍ତାରିତ ବକ୍ଷ, ଜ୍ଞାନୋଜ୍ଜ୍ୱଳ ଚେହେରା । ଅତୀବ ଶାନ୍ତ ଓ ଗମ୍ଭୀର ମୁନି ଋଷି କେହି ଜଣେ ତପସ୍ୟାରେ ରତ ଥିଲା ପରି ହେଉଥିଲା ସାମ୍ନାର ପର୍ବତଟି । ଗଙ୍ଗାର ଧାର ବହି ଯାଉଥିଲା ବକ୍ଷଦେଶର ଉପବୀତ ପରି । ସବୁକିଛି ସ୍ଥିର । ନଦୀ ପର୍ବତ ଓ ପରିବେଶ । କେବଳ ନରମ ଭୋର୍‌ଟେ ମହମ ଭଳି ତରଳି ବୋହି ଯାଉଥିଲା । ଧିର ମନ୍ଥର ଗତିରେ ବୋହୁଥିବା ପବନ କାନ ପାଖରେ ଆସି ଶୁଣେଇ ଯାଉଥିଲା ଓଁକାର ଧ୍ୱନି । ପ୍ରକୃତରେ ଯାକୁ କୁହନ୍ତି ମାହେନ୍ଦ୍ର ଲଗ୍ନ ।

ସେମାନେ ଦିହେଁ ଭୋର୍‌କୁ ଚିରି ଚିରି ଆଗେଇ ଯାଉଥିଲେ । ଦିହେଁ ନୀରବ । କେବଳ ନିଜ ପାଦ ଶବ୍ଦ ଛଡ଼ା କିଛି ଶୁଭୁନଥିଲା । ଅନେକ ଥର ଏଇ ମାହେନ୍ଦ୍ର ଲଗ୍ନକୁ ଅନୁଭବ କରିଛନ୍ତି ବରୁଣ । ବେଳେବେଳେ ଭୁବନେଶ୍ୱରର ଅଟ୍ଟାଳିକା ମାନେ, ଖଣ୍ଡ ବିଖଣ୍ଡିତ କରିଥାନ୍ତି ଏଇ ଅନୁଭବକୁ । ଆଂଶିକ ତୃପ୍ତି ମିଳେ । ପୂର୍ଣ୍ଣାଙ୍ଗ ନୁହେଁ । କିନ୍ତୁ ଏଇ ପ୍ରଥମ ସେ ଯେମିତି ଅନୁଭବ କରୁଥିଲେ କ୍ଷିତ୍ ଅପ୍ ତେଜ୍ ମରୁତ ବ୍ୟୋମକୁ । ସେ ଜାଣନ୍ତି ଏଇ ମୁହୂର୍ତ୍ତକୁ ଆଉ ବେଶି କ୍ଷଣ ରଖିହେବ ନାହିଁ । ପୂର୍ବାକାଶରେ ସୂର୍ଯ୍ୟ ଉଇଁବ ଓ ଜଗତ୍ ସଂସାର ଚଳ ଚଞ୍ଚଳ ହେଇ ଉଠିବ ତାହାରି ସଙ୍ଗରେ । ସୂର୍ଯ୍ୟର ଉତ୍ତାପ ଯେତିକି ବଢ଼ିବ ମଣିଷର ସନ୍ତାପ ସେଇ ମାତ୍ରାରେ ବଢ଼ିବ ।

କିଛି ସମୟ ମାହେନ୍ଦ୍ର ବେଳାକୁ ଅନୁଭବ କରୁ କରୁ, କିଛି ସମୟ ଅନ୍ୟ ପଥଚାରୀ ମାନଙ୍କୁ ନିରୀକ୍ଷଣ କରୁ କରୁ ଅନ୍ୟମନସ୍କ ଭାବରେ ଗଙ୍ଗାକୂଳରେ ଆଶ୍ରମଟିଏ ଆଡକୁ ମୁହେଁଇଥିଲେ ବରୁଣ । ବେଶ୍ ସଫା ସୁତୁରା ରାସ୍ତାଟିଏ ଗେଟ୍ ପାଖରୁ ଲମ୍ବି ଯାଇଥିଲା ଭିତରକୁ । ଗେଟ୍ ପାଖରେ ପହଞ୍ଚି ବରୁଣ ପଚାରିଥିଲେ କଣ ଭିତରେ ପଶିବା ?

ଆପଣ ମୋ ପଥ ପ୍ରଦର୍ଶକ । ଯେଉଁଠିକୁ ନେଇଯିବେ ମୁଁ ଯିବି । କହିଥିଲେ ମହାପାତ୍ର । ଦିହେଁ ଗେଟ୍ ପାର୍ ହେଇ ପରିସ୍କାର ରାସ୍ତାରେ ଆଗେଇ ଯାଉଥିଲେ ।

ପଛ ପଟୁ ଦରୁଓ୍ୱାନ୍ ଟିଏ ଡାକ ଦେଇଥିଲା । ଦୁହେଁ ଫେରି ଆସି, ଦରୁଓ୍ୱାନ୍‌ଟି ପାଖରେ ଥିବା ରେଜିଷ୍ଟାର୍‌ରେ ନାଁ, ଗାଁ ଓ ଆସିବା ଉଦ୍ଦେଶ୍ୟ ଲେଖି, ପୁଣିଥରେ ଆଗେଇ ଯାଇଥିଲେ । ରାସ୍ତାର ଦୁଇ ପାଖରେ ତାର ଘେରା ହୋଇ ବିଭିନ୍ନ ବୃକ୍ଷ ରୋପଣ କରାଯାଇଥିଲା । ପ୍ରତିଟି ବୃକ୍ଷକୁ ଚିହ୍ନିତ କରିବା ପାଇଁ ଛୋଟ ଛୋଟ ବୋର୍ଡରେ ନାଁ ଲେଖା ହୋଇଥିଲା । ମହାପାତ୍ର ତାରବାଡ଼ କାଛେ କାଛେ ଆଗେଇ ଯାଇଥିଲେ । ଅଶ୍ୱଗନ୍ଧା, ଅଶୋକ, ଅମରପୋଇ ଠୁଁ ଆରମ୍ଭ କରି ନିମ୍ବ, ଓସ୍ତ ଆଦି ଭଳି ଚିହ୍ନା ଅଚିହ୍ନା ଅନେକ ଗଛ ରହିଥିଲା ସେ ବଗିଚାରେ । ମହାପାତ୍ରଙ୍କର ମନେ ପଡ଼ିଯାଇଥିଲା: ଋଷିକେଶ ବିଭିନ୍ନ ଔଷଧର ଜଡ଼ିବୁଟିର ପେଣ୍ଠସ୍ଥଳୀ ବୋଲି । ରାମାୟଣ ସମୟରେ ଏଇଠୁଁ ମଣିକୁଟ ପର୍ବତରୁ ବିଶଲ୍ୟକରଣୀର ସନ୍ଧାନ ପାଇ ନେଇ ଯାଇଥିଲେ । କିଛି ରାସ୍ତା ଆଗେଇଯିବା ପରେ ଆଶ୍ରମର ଲାଇବ୍ରେରୀ ଉପରେ ତାଙ୍କର ଆଖି ପଡ଼ିଥିଲା । ମହାପାତ୍ର ବରୁଣଙ୍କୁ ପଚାରିଥିଲେ, ଲାଇବ୍ରେରୀ ଆଗକୁ ଯିବା ?

ଚାଲନ୍ତୁ, କହିଥିଲେ ବରୁଣ ।

ଦିହେଁ ଡାହାଣ ପାଖରେ ଥିବା ଲାଇବ୍ରେରୀ ପାହାଚରେ ଉଠିଥିଲେ । ହିନ୍ଦୀ, ଇଂରାଜୀରେ ଆପ୍ତବାକ୍ୟ ମାନ ଲେଖା ହେଇ ବିଭିନ୍ନ ସ୍ଥାନରେ ବୋର୍ଡ ଝୁଲୁଥିଲା ବାରଣ୍ଡାରେ । ଲାଇବ୍ରେରୀର ଦୁଇଟିଯାକ ଦ୍ୱାରରେ ତାଲା ଝୁଲୁଥିଲା । ସେମାନେ ଫେରି ଆସୁଥିଲେ । ଗେରୁଆ ଧୋତି ଓ ଗେରୁଆ ଚାଦର ପିନ୍ଧିଥିବା ଯୁବକଟିଏକୁ ଭେଟିଥିଲେ ସେମାନେ । ବରୁଣ ଯୁବକଟିକୁ ପାଖକୁ ଡାକି ପଚାରିଥିଲେ, ଆଚ୍ଛା ଲାଇବ୍ରେରୀ କେତେବେଳେ ଖୋଲାଯାଏ କି ?

ସାଢ଼େ ସାତଟାରେ, କହିଥିଲା ଯୁବକଟି । ଆପଣମାନେ କେଉଁଠୁ ଆସିଛନ୍ତି କି ? ପ୍ରଶ୍ନ କରିଥିଲା ଯୁବକଟି । ସେମାନେ ଲାଇବ୍ରେରୀର ବାରଣ୍ଡାରୁ ଓହ୍ଲେଇ ଆସିଥିଲେ, ଯୁବକଟି ମଧ୍ୟ ତାଙ୍କ ସଙ୍ଗରେ ଚାଲିଥିଲା । ଓଡ଼ିଶାରୁ ଆସିଛନ୍ତି ଜାଣି, କହିଥିଲା, ଓଡ଼ିଶାର କିଛି ଶିଷ୍ୟ ଅଛନ୍ତି ଏଇଠି । ଆପଣମାନେ ସେମାନଙ୍କୁ ଦେଖା କରିବାକୁ ଚାହୁଁଛନ୍ତି କି ? ଏଇ ଟିକିଏ ଆଗେଇ ଗଲେ ଆଶ୍ରମର କ୍ୟାଣ୍ଟିନ୍ ପଡ଼ିବ । କ୍ୟାଣ୍ଟିନ୍‌ର ଡାହାଣ ପାଖେ ଆଗେଇଯିବେ, ଦେଖିବେ ଆଡମିନିଷ୍ଟ୍ରେଟିଭ୍ ଅଫିସ୍ । ସେଇଠୁ ଦିଇଟି ରାସ୍ତା ଯାଇଛି । ଆପଣମାନେ ବାଁ ପଟ ରାସ୍ତାରେ ଯିବେ । ସେଇଠି ଦେଖିବେ ବଖୁରିକିଆ ଘର ମାନ ରହିଛି । ସେଗୁଡ଼ିକ ବିଭିନ୍ନ ସ୍ୱାମୀଜୀମାନଙ୍କ ପ୍ରକୋଷ୍ଠ । ସେଇଠୁ ଟିକିଏ ଆଗେଇ ଗଲେ ଯାହାକୁ ଭେଟିବେ ତାକୁ ପଚାରିଦେଲେ ସେ ଆପଣମାନଙ୍କୁ ଓଡ଼ିଶାର ଛାତ୍ରମାନେ ରହୁଥିବା କକ୍ଷକୁ ନେଇଯିବ ।

ବରୁଣ ମହାପାତ୍ରଙ୍କୁ ଚାହିଁ ହସିଥିଲେ । ମହାପାତ୍ର ମଧ ଏ ଅଙ୍କାବଙ୍କା ଗୋଲକଧନ୍ଦାରେ ଆଦୌ ପଶି ପାରୁନଥିଲେ । ସେମାନେ ଯୁବକଟିକୁ ବିଦା କରି ଦେଇ ଆଗେଇ ଗଲେ । ବରୁଣ କହିଥିଲେ ଚାଲନ୍ତୁ କ୍ୟାଣ୍ଟିନ୍ ଯାଇ କିଛି ଖାଇନେବା ।

ସକାଳୁ ସକାଳୁ କଣ ଭୋକ ଲାଗିଲାଣି ଆପଣଙ୍କୁ ? ହସିଥିଲେ ମହାପାତ୍ର ।

ନାଇଁବା, ଅତିକମ୍‌ରେ ଚା କପେ ତ ପିଆ ଯାଇପାରେ । ଦୁଇ ତିନି ମିନିଟ୍‌ର ରାସ୍ତା ଚାଲିଲା ପରେ କ୍ୟାଣ୍ଟିନ୍ ପଡ଼ିଥିଲା । ଏତେ ସକାଳୁ କ୍ୟାଣ୍ଟିନ୍‌ଟା ଖୋଲିଥିବ କି ନାହିଁ କେଜାଣି କହିଥିଲେ ବରୁଣ । ଚାଲନ୍ତୁ କିଛି ନହେଲେ ଭିତରଟା ଟିକେ ବୁଲି ଆସିବା ।

କ୍ୟାଣ୍ଟିନ୍‌ଟା ବେଶ୍ ବଡ଼ ଥିଲା । ଲମ୍ବ ପ୍ରସ୍ଥ ଉଭୟରେ । ପୁରା ବଖରାଟିକୁ ଦେଖିଲେ ମନେ ହେଉଥିଲା କୌଣସି ବଡ଼ ରେଳଷ୍ଟେସନ୍‌ର ପ୍ରତୀକ୍ଷାଳୟ ପରି ।

ମହାପାତ୍ର କହିଥିଲେ ମୋ ଜୀବନରେ ଏତେ ବଡ଼ କ୍ୟାଣ୍ଟିନ୍ କେବେ ଦେଖିନଥିଲି ।

କାଣ୍ଟିନ୍‌ର ମଝିରେ ଛାତ ଉଚ୍ଚର କାଛଟେ ଥିଲା । ପ୍ରକୃତରେ ସେଇଟି ଥିଲା କାଉଣ୍ଟର । ପୋଷ୍ଟ ଅଫିସ୍ ଅବା ବ୍ୟାଙ୍କରେ ସୂଚିତ ହେଇଥିବା ବିଭାଗ ପରି, କେଉଁଠି ଖାଦ୍ୟ ମିଳେ ଗୋଟିଏ ଗୋଟିଏ ବୋର୍ଡରେ ଲେଖା ହେଇ ରଖାଯାଇଥିଲା ସେଇ ଦୀର୍ଘତମ କାଉଣ୍ଟରରେ । କାଛର ଆର ପାଖେ କିଛି ଲୋକ ଚଳପ୍ରଚଳ କରୁଥିଲେ, କେହି କିନ୍ତୁ ସେମାନଙ୍କ ଆଡ଼କୁ ଧାନ ଦେଲେ ନାହିଁ । ମହାପାତ୍ର ଦେଖିଲେ, ଗୋଟେ କୋଣରେ କାଉଣ୍ଟରକୁ ଲାଗି ଲୋକଟିଏ ବସିଛି । ତାର ଠିକ୍ ପଛପଟେ ଦଶଫୁଟ ଅବଧି କାଛରେ ବିଭିନ୍ନ ଖାଦ୍ୟର ସୂଚୀ ଓ ମୂଲ୍ୟ ଲେଖାଥିଲା । ମହାପାତ୍ର ଖାଦ୍ୟ ତାଲିକା ପଢ଼ିବାରେ ରହିଗଲେ । ବରୁଣ ଆଗେଇ ଯାଇ ପଚାରିଥିଲେ ଚା ଦି କପ୍ ମିଳିପାରିବ ?

ଲୋକଟି ଚାରିଟି ଟଙ୍କା ମାଗିଥିଲା । ବରୁଣ ପକେଟ୍‌ରୁ ମନିପର୍ସ କାଢ଼ି ଦେଇଥିଲେ । ଲୋକଟି ଟଙ୍କା ନେଇ କୁପନ ବଢ଼େଇ ଦେଇଥିଲା । ବରୁଣ ଚା ବୋର୍ଡ ରହିଥିବା ସ୍ଥାନକୁ ଆସି ଚା ଦି କପ୍ ମାଗିଥିଲେ ଓ ବଡ଼ ପାଟିରେ କହିଥିଲେ ମହାପାତ୍ର ବାବୁ ଆପଣଙ୍କ ଚା ଆସିଗଲା ନିଅନ୍ତୁ । ମହାପାତ୍ର କହିଥିଲେ ଆରେ ଆପଣ ଚା ମଗେଇ ଦେଲେ କି ? ଦେଖନ୍ତୁ ତ ଏଇଠି ଦୁଧ ଗ୍ଲାସକୁ ମାତ୍ର ଦି ଟଙ୍କା । ମୁଁ ଦୁଧ ପିଇବି ଭାବୁଥିଲି । ହଉ ଚା ଟା ତ ମଗେଇ ଦେଲେଣି ପିଇଦବା । ତା ପରେ ହେବ ଯଦି ଦୁଧ ଗ୍ଲାସ୍‌ଟେ କିଣି ପିଇବି । ଦେଖନ୍ତୁ ଏଇଠି କି ସିଷ୍ଟମ୍, କହିଥିଲେ ମହାପାତ୍ର, ଚା କପେର ଦାମ୍ ଦୁଇଟଙ୍କା ଆଉ ଦୁଧ ଗ୍ଲାସକ ମଧ ଦୁଇ ଟଙ୍କା । ଜଣେ ଚା କାହିଁକି ପିଇବ ଦୁଧ ନ ପିଇ ।

ବରୁଣ କହିଥିଲେ ଯାହାର ଯେଉଁଟା ଲୋଡା ସେ ସେଇଟା ପିଇବ । ଶସ୍ତା ମହରଗ ତ ଆଉ ଅଭ୍ୟାସକୁ ବଦଳେଇ ପାରିବ ନାହିଁ । ମୋର ସକାଳୁ ଚା କପେ ପିଇବା ଅଭ୍ୟାସ ଅଛି ମୋତେ ଦୁଧ ଗ୍ଲାସେ ଦେଲେ ମୁଁ ପିଇବି ନାହିଁ ।

ମହାପାତ୍ର କହିଥିଲେ ତା ସତ ଯେ । ଏଇଠି ଖାଦ୍ୟ ସାମଗ୍ରୀ ଶସ୍ତାରେ କିନ୍ତୁ ଯୋଗେଇ ଦିଆଯାଉଛି ।

ବରୁଣ ଚା ପିଇ ସାରିଥିଲେ । ମହାପାତ୍ରଙ୍କୁ ପଚାରିଲେ, ଆପଣ ଆଉ ଦୁଧ ପିଇବେ ?

ନାଇଁମ ଦି ଟଙ୍କାରେ କଣ ଭଲ ଦୁଧ ମିଳୁଥିବ ? ଥାଉ, କହିଥିଲେ ମହାପାତ୍ର ।

ଦିହେଁ ବାହାରି ଆସିଥିଲେ କ୍ୟାଣ୍ଟିନ୍‌ରୁ । ବରୁଣ ଭାବୁଥିଲେ, କୁଆଡେ ଗଲା ସକାଳର ସେଇ ଅନୁଭବ ଟିକକ । ତାଙ୍କ ମନ ଭିତରେ, ତାଙ୍କ ଚେତନା ସ୍ତରରେ ଯେଉଁ ଶିହରଣ ଜାତ ହେଇଥିଲା, ଆଶ୍ରମକୁ ଆସି ଯାହା ଦ୍ୱିଗୁଣିତ ହେବ ବୋଲି ସେ ଭାବୁଥିଲେ, ଆନୁଷ୍ଠାନିକ ଆବହାଓ୍ୱାରେ କୁଆଡେ ଉଭାନ୍ ହେଇ ଯାଇଥିଲା କିଛି ମୁହୂର୍ତ୍ତରେ । ପୁଣିଥରେ ମଧ୍ୟବିତ୍ତ ସଂସାରୀ ଲୋକଟେ ପରି ଟଙ୍କାରେ କିଏ ବେଶୀ ଖାଦ୍ୟ ପ୍ରାଣ ଯୋଗେଇ ପାରୁଛି, କାହା ଦ୍ୱାରା ସେ କେତେ ଲାଭବାନ୍ ହେଇ ପାରିବେ ସେଇ ଚିନ୍ତାରେ ଛନ୍ଦି ହେଇ ପଡ଼ିଛନ୍ତି । ଭୋର୍ ସକାଳୁ ସେ ଭେଟିଥିଲେ ଇଶ୍ୱରଙ୍କୁ । ସୂର୍ଯ୍ୟ ଉଠିବାକ୍ଷଣି କେଉଁଆଡ଼େ ଚାଲିଗଲେ ତାହା ଜଣା ପଡ଼ିଲା ନାହିଁ । ଇଶ୍ୱର ଏମିତି ହିଁ ଆସନ୍ତି ଓ ଜାଗତିକ ଦୁନିଆ ଚଞ୍ଚଳ ହୋଇ ଉଠିଲେ, କେଉଁ ଆଡ଼େ ହଜି ଯାଆନ୍ତି ଯେ ଖୋଜିବା ମୁସ୍କିଲ୍ ହେଇଯାଏ ।

ମହାପାତ୍ର କହିଥିଲେ ବୁଝିଲେ ବରୁଣ ବାବୁ ଆମ ଆନନ୍ଦ ବଜାର ଆଉ ଏଠିକା କାଣ୍ଟିନ୍ ଭିତରେ ଆକାଶ ପାତାଳ ପ୍ରଭେଦ । ସେଇଠି ଆତ୍ମୀୟତାଟେ ଅନୁଭବ କରିହୁଏ ଆଉ ଏଇଠି ଅନାତ୍ମୀୟତା । ଏଠି ସବୁ ମିଳୁଛି, ଶସ୍ତା ମିଳୁଛି ହେଲେ କେହି ଯେମିତି କହୁନି ଖା ତୋ ପାଇଁ ସବୁ ତିଆରି ହେଇଥିଲା ।

ବରୁଣ ହସିଥିଲେ ମହାପାତ୍ରଙ୍କ କଥା ଶୁଣି । ଆପଣ ବଡ ଭାବପ୍ରବଣ ଲୋକ । କିଏ ଆପଣଙ୍କୁ ଅଭଡ଼ା କିଣିଲା ବେଳେ କହି କହି ଦେଉଥାଏ, ଖା, ଖାଇଦେ ଦିଟା ବୋଲି ମ । କଣ ସେବାୟତ ପଣ୍ଡାମାନେ ?

ନାଇଁ ହୋ ବରୁଣ ବାବୁ, କାଛିଆ କହେ । ଆଉ କିଏ କହିବ କହୁନାହାନ୍ତି । ମହାପାତ୍ର କହିଥିଲେ । ଏଠିକାର ଆଶ୍ରମ ଗୁଡ଼ିକରେ ଆପଣ ଏମିତି ଅନେକ ସ୍ୱାମୀଜୀଙ୍କୁ ଭେଟିବେ, ଯେଉଁମାନେ କି ଅନ୍ୟୁନ କୋଡ଼ିଏ ବାଇଶ ଥର ବିଦେଶ

ଯାଇଥିବେ, ଧର୍ମ ପ୍ରଚାର ପାଇଁ । ପାଶ୍ଚାତ୍ୟ ବସ୍ତୁବାଦୀ ଦେଶମାନେ ଆମକୁ ବସ୍ତୁ ମାଧ୍ୟମରେ ଶୋଷଣ କରୁଛନ୍ତି, ଆଉ ଆମେ ଅଧ୍ୟାତ୍ମ ମାଧ୍ୟମରେ ଯେତେ ସୁବିଧା ସୁଯୋଗ ଉଠେଇ ନେଉଛୁ । ଇଏ ବି ଗୋଟେ ପ୍ରକାର ଶୋଷଣ ।

ଆମ ପାଖରେ ଅଧ୍ୟାତ୍ମବାଦ ଛଡ଼ା ଆଉ କଣ ଅଛି ଯେ ? କହିଥିଲେ ବରୁଣ, ଆମେ ଭାଷଣ, ଭଜନ, ପ୍ରବଚନ ମାଧ୍ୟମରେ ସେମାନଙ୍କୁ ଆକର୍ଷିତ କରୁଛୁ । ଜାଣନ୍ତୁ ସେଇ ଭଜନ, ପ୍ରବଚନ ଆଦି ଆମର ପୁଞ୍ଜି । କେଉଁ ବୌଦ୍ଧ, ଜୈନ ଧର୍ମ ପ୍ରତିଷ୍ଠିତ କାଳରୁ ଆଧ୍ୟାତ୍ମକୁ ପୁଞ୍ଜି କରି ଦେଶ ବିଦେଶକୁ ଆକର୍ଷିତ କରି ଆସିଛୁ ।

ଦୁହେଁ ଗପି ଗପି ଆଶ୍ରମର ଡାକ୍ତରଖାନା ଯାଏ ପହଞ୍ଚି ଯାଇଥିଲେ । ଗେରୁଆ ବସ୍ତ୍ରଧାରୀ ଲୋକଟିଏ ତରତର ହେଇ ବାହାରି ଆସୁଥିଲା, ବରୁଣ ଆଗେଇ ଯାଇ ନିଜର ପରିଚୟ ଦେଇଥିଲେ ଓ ପଚାରିଥିଲେ, ଆମେ ସ୍ୱାମୀଜୀଙ୍କୁ ଦେଖା କରିବାକୁ ଚାହୁଁଛୁ । ଏହା କଣ ସମ୍ଭବ ହୋଇ ପାରିବ ?

ଗେରୁଆ ବସ୍ତ୍ରଧାରୀ ଲୋକଟି ଲାଇବ୍ରେରୀରେ ଭେଟିଥିବା ଲୋକଠୁଁ ବୟସ୍କ ଥିଲା । ଲୋକଟି ପାଖରୁ ଅଧିକ ସାହାଯ୍ୟ ମିଳିବ ବୋଲି ସେମାନେ ଆଶା କରିଥିଲେ ।

ଲୋକଟି କହିଥିଲା, ମୁଁ ସେ ବିଷୟରେ କିଛି କହି ପାରିବି ନାହିଁ । ଆପଣ ଇନ୍‌କ୍ୱାରୀରେ ଦୟାକରି ପଚାରନ୍ତୁ ।

ବରୁଣ ସାମାନ୍ୟ ଆଶ୍ଚର୍ଯ୍ୟ ହେଇଥିଲେ । ଜଣେ ବୟସ୍କ ଆଶ୍ରମ ବାସିନ୍ଦା ହୋଇ ସ୍ୱାମୀଜୀଙ୍କ ବିଷୟରେ କିଛି ଜାଣନ୍ତି ନାହିଁ କିପରି ? ସ୍ୱାମୀଜୀ କଣ ଭଗବାନଙ୍କ ପରି ଅଦୃଶ୍ୟ ଅଣାକାର ? ସମ୍ଭବତଃ ଲୋକଟି ସାହାଯ୍ୟ କରିବା ପାଇଁ ଚାହୁଁ ନଥିଲା । ଏହି ସମୟରେ ବରୁଣଙ୍କର ଦୃଷ୍ଟି ପଡ଼ିଗଲା ଗୋଲାକୃତି ସବୁଜ ଲନ୍‌ରେ, ଯେଉଁଠି ଗୋଟିଏ ବୋର୍ଡ ପୋତା ହୋଇ ସମଗ୍ର ଆଶ୍ରମର ନକ୍ସାର ସୂଚନା ଥିଲା । ବରୁଣ ନକ୍ସାରୁ ଇନ୍‌କ୍ୱାରୀ ଠାବ କରୁଥିଲେ, ମହାପାତ୍ର ଯୁବ ସନ୍ୟାସୀଟିଏକୁ ସାଙ୍ଗରେ ଧରି ପହଞ୍ଚିଗଲେ । ବେଶ୍ ସରଳ ଓ ବୁଦ୍ଧିଦୀପ୍ତ ଦିଇଟି ଆଖି ଥିଲା ଯୁବକଟିର । ବରୁଣ ପଚାରିଥିଲେ, ସେ କେତେ ବର୍ଷ ହେଲା ଏ ଆଶ୍ରମରେ ଅଛନ୍ତି ବୋଲି ?

ଯୁବକଟି କହିଥିଲା, ଏଇ ବର୍ଷେ ହେଲା । ଗ୍ରାଜୁଏସନ୍ କଲା ପରେ ପରେ ଏଇ ଆଶ୍ରମ ସହ ଯୋଡ଼ି ହେଇ ଯାଇଥିଲି । ପ୍ରକୃତରେ ହାଇସ୍କୁଲ ସମୟରୁ ସ୍ୱାମୀଜୀଙ୍କ ଲିଖିତ ବିଭିନ୍ନ ପୁସ୍ତକ ପଢ଼ି ମୁଁ ସ୍ୱାମୀଜୀଙ୍କ ଦର୍ଶନରେ ଖୁବ୍ ପ୍ରଭାବିତ ହେଇ ଯାଇଥିଲି । ଆମ ଘରେ ଭଡ଼ାରେ ଥିବା ପରିବାରଟି ସ୍ୱାମୀଜୀଙ୍କ ଭକ୍ତ ଥିଲେ । ସେଇମାନଙ୍କ

ପ୍ରଭାବରେ ମୋ ମନ ଏପଟକୁ ଢ଼ଳିଥିଲା । ମୋ ବାପା ମା ଚାହୁଁ ନଥିଲେ ମୁଁ ଆଶ୍ରମ ଆସି ବ୍ରହ୍ମଚର୍ଯ୍ୟ ପାଳନ କରେ ବୋଲି । ମୋର ଇଞ୍ଜିନିୟରିଂ ଏଣ୍ଟ୍ରାନ୍ସରେ ଫ୍ରି ସିଟ୍ ମିଳିଥିଲା । ମୋ ବାପା ମା ଚାହୁଁଥିଲେ ମୁଁ ଇଞ୍ଜିନିୟରିଂ ପଢ଼େ । ମାତ୍ର ମୁଁ ଆଶ୍ରମ ଚାଲି ଆସିଲି । ମୋ ଉପରେ ଆଦୌ ସନ୍ତୁଷ୍ଟ ନୁହନ୍ତି । ବାପା ମା ତମେ କଣ ଏଇଠି ସନ୍ତୁଷ୍ଟ ଅଛ ? ପଚାରିଥିଲେ ବରୁଣ । ପିଲାଟି ଗମ୍ଭୀର ହେଇଯାଇ କହିଥିଲା, ଯାହାକୁ ଚାହିଁଥିଲି, ତାର ସନ୍ଧାନ ଏ ପର୍ଯ୍ୟନ୍ତ ପାଇନାହିଁ । ସନ୍ତୁଷ୍ଟ ହେଇପାରିବି କେମିତି ? ମୁଁ ଜାଣେ ଏଇଠି ରହିଲେ ମୁଁ ଆଦୌ ଆକାଂକ୍ଷା ପୂରଣ କରି ପାରିବି ନାହିଁ । ତେବେ ଗୋଟେ ପ୍ରକାର ଶୃଙ୍ଖଳିତ ଜୀବନ ଯାପନ କରି ହେଉଛି ।

ଯୁବକଟି ରାସ୍ତା ସାରା ଗପି ଗପି ଚାଲିଥିଲା, କେତେବେଳେ ତା ବାପା ମାଙ୍କ କଥା କେତେବେଳେ ସ୍ୱାମୀଜୀଙ୍କ କଥା । ମୋ ବାପା ମାଙ୍କର ମୁଁ ଗୋଟିଏ ବୋଲି ପୁଅ, କହିଥିଲା ପିଲାଟି । ମୁଁ ମାନୁଛି ମୋ ବାପା ମାଙ୍କ ବୃଦ୍ଧକାଳରେ ମୋର ସାହାରା ହେବା ଉଚିତ୍ । କିନ୍ତୁ ଗୌତମ ବୁଦ୍ଧ କଣ ତାଙ୍କ ବାପା ମାଙ୍କର ଏକମାତ୍ର ପୁଅ ନଥିଲେ ? ବାପା ମା ପାଇଁ ମାୟାରେ ବୁଡ଼ିବି, ତା ପରେ ସ୍ତ୍ରୀ ପିଲା ପାଇଁ । ଶେଷକୁ ନାତି ନାତୁଣୀଙ୍କ ମାୟା ମଧ ମୋତେ ଛାଡ଼ିବ ନାହିଁ । ଜୀବନଟା ପଳେଇଯିବ ସିନା ଅକାରଣରେ, ଅନ୍ଧାର ଭିତରେ । ପିଲାଟି ପୁଣି ପ୍ରସଙ୍ଗ ବଦଳେଇ କହିଥିଲା ସ୍ୱାମୀଜୀଙ୍କର ଆମେରିକାରେ ଅନେକ ଭକ୍ତ ଅଛନ୍ତି । ସ୍ୱାମୀଜୀ ଦୁଇଶହରୁ ଅଧିକ ପୁସ୍ତକ ରଚନା କରିଛନ୍ତି । ଜାଣିଛନ୍ତି, କହିଥିଲା ଯୁବକଟି, ସ୍ୱାମୀଜୀଙ୍କ ପୁସ୍ତକ ବିଶ୍ୱର ଏଗାରଟି ଭାଷାରେ ଅନୁବାଦ ହେଇ ସାରିଛି । ଆପଣ ମାନେ ସକାଳୁ ଟି.ଭି. ଖୋଲନ୍ତି କି ନାହିଁ ? ଦେଖିବେ ସକାଳେ ସାତଟାରେ ସ୍ୱାମୀଜୀଙ୍କ ପ୍ରବଚନ କିଛି ଦିନ ହେଲା ଚାଲିଛି ।

ସତେ କି ? କହିଥିଲେ ମହାପାତ୍ର । ତେବେ ସ୍ୱାମୀଜୀଙ୍କ ପ୍ରବଚନ ସଭା କେଉଁଠି ଚାଲିଛି ? ବମ୍ବେ ନା ଦିଲ୍ଲୀରେ ?

ଯୁବକଟି ହସିଦେଇ କହିଥିଲା, ନା ନା ଆପଣ ଏବେ ଯାହା ଟି.ଭି.ରେ ଦେଖିବେ ତାହା ସ୍ୱାମୀଜୀଙ୍କ ପୁରୁଣା ରେକର୍ଡ । ବାରମ୍ବାର ଦେଖେଇ ସାରିଲାଣି ଟି.ଭି.ରେ ।

ସେମାନେ ବୁଲିବୁଲି ଲାଇବ୍ରେରୀ ପାଖରେ ପହଞ୍ଚି ଯାଇଥିଲେ । ମହାପାତ୍ର କହିଲେ, ଆରେ ଆମେ ପୁଣି ସେଇ ଗେଟ୍ ଆଡକୁ ଚାଲି ଆସିଲେ । ଯୁବକଟି କହିଥିଲା ଆପଣ ମାନେ ଇନ୍‌କ୍ୱାରୀ ଖୋଜୁଥିଲେ ପରା ? ଲାଇବ୍ରେରୀ ଆରପଟଟି ଇନ୍‌କ୍ୱାରୀ କିନ୍ତୁ ଆପଣମାନଙ୍କର ଇନ୍‌କ୍ୱାରୀରେ କାମ କଣ ? ଯାହା କାମ ଥିଲା ମୋତେ କହିଲେ ନାହିଁ ?

ବରୁଣ କହିଲେ ଆମେ ସ୍ୱାମୀଜୀଙ୍କୁ ଦେଖା କରିବାକୁ ଚାହୁଁଛୁ । ଯୁବକଟି ଟିକିଏ ଚିନ୍ତାରେ ପଡ଼ିଯାଇଥିଲା । ତାପରେ କହିଥିଲା ମୁଁ ଆପଣଙ୍କୁ କିଛି ସାହାଯ୍ୟ କରିପାରେ ?

ବରୁଣ କହିଲେ, ନିଶ୍ଚୟ ନିଶ୍ଚୟ । ଆପଣ ଆମକୁ ସାହାଯ୍ୟ କଲେ ଆମେ ବରଂ ଖୁସୀ ହେବୁ ।

ଇନ୍‌କ୍ୱାରୀ ବଡ ହଲ୍ ନହେଲେ ମଧ ଛୋଟିଆ ବଖରା ନଥିଲା । କେବଳ ଦୁଇ ଜଣ ଲୋକ ଥିଲେ କାଚ କାନ୍ଥର ଆରପଟେ । ତାଙ୍କ ସାମ୍ନାରେ କେବଳ ଦୁଇଟି କଂପ୍ୟୁଟର୍ ଥିଲା । ହାତ ଓ ମୁହଁ ଗଳେଇଲା ଭଳି ଫାଙ୍କରେ ଯୁବକଟି ନଇଁ ପଡ଼ି କିଛି କଥାବାର୍ତ୍ତା କରିଥିଲା । ତାପରେ ଲାଇବ୍ରେରୀକୁ ଯାଇ କାଗଜ ଓ କଲମ ମାଗି କିଛି ଲେଖି, ଫାଙ୍କ ବାଟେ ବଢ଼େଇ ଦେଇଥିଲା । ତା ପରେ ବରୁଣଙ୍କୁ ଚାହିଁ କହିଥିଲା, ଆମର ଏଇଠି ଇଣ୍ଟରନେଟ୍ ଇମେଲ୍ ସବୁ ବ୍ୟବସ୍ଥା ଅଛି ।

ବରୁଣ ଧିରେ କହିଥିଲେ, କଣ ଭଗବାନଙ୍କ ପାଖରେ ପହଞ୍ଚିବାକୁ ବି ।

ମହାପାତ୍ର କହିଥିଲେ, ସତେ କି ? କବୀର, ଭୀମଭୋଇ ଆଦିଙ୍କ ସମୟରେ ଏତେ ସବୁ କିଛି ନଥିଲା ବୋଲି ପଦବ୍ରଜରେ ପ୍ରଚାର କରିବାକୁ ପଡୁଥିଲା ସେମାନଙ୍କୁ ।

ପିଲାଟି ମହାପାତ୍ରଙ୍କ କଥା ପାଖରେ ଅଟକି ଯାଇଥିବାରୁ ବରୁଣଙ୍କ ମନ୍ତବ୍ୟ ଶୁଣି ପାରି ନଥିଲା । ସେ ମହାପାତ୍ରଙ୍କ ଉଦ୍ଦେଶ୍ୟରେ ପ୍ରଶ୍ନ କରିଥିଲା ଏ ଭୀମଭୋଇଟି କିଏ ?

ଜଣେ ଦିବ୍ୟଦ୍ରଷ୍ଟା, କହିଥିଲେ ମହାପାତ୍ର ।

ଏହି ସମୟରେ କମ୍ପୁଟର ପାଖେ ବସିଥିବା ଲୋକଟି ଯୁବକଟିକୁ ଡାକିଥିଲା ଓ କହିଥିଲା ସ୍ୱାମୀଜୀଙ୍କ ସହ ସାକ୍ଷାତ୍ କରିବା ପାଇଁ ସେମାନଙ୍କୁ ଅନୁମତି ମିଳିଯାଇଛି । ବରୁଣ ହାତ ଘଣ୍ଟାକୁ ଦେଖିଲେ । ସାତଟା ପଇଁଚାଳିଶ ହେବାକୁ ଯାଉଥିଲା ସେତେବେଳକୁ ।

ସାତଟା ପଇଁଚାଳିଶ ହେଇଗଲାଣି । ଆମକୁ ନଅଟା ଆଗରୁ ହୋଟେଲ୍‌ରେ ପହଞ୍ଚିବାକୁ ପଡ଼ିବ । ବରୁଣ ମହାପାତ୍ରଙ୍କ ଉଦ୍ଦେଶ୍ୟରେ କହିଲେ ।

ଏତେ ବେଳ ହେଇଗଲାଣି ଏ ଭିତରେ, ଆମକୁ ଜଣା ପଡୁନାହିଁ ଆଦୌ, କହିଥିଲେ ମହାପାତ୍ର ।

ଦିହେଁ ଯୁବକଟି ସଙ୍ଗରେ ଆଗେଇ ଯାଇଥିଲେ ସ୍ୱାମୀଜୀଙ୍କୁ ସାକ୍ଷାତ କରିବା ଉଦ୍ଦେଶ୍ୟରେ । ଯୁବକଟି ପଚାରିଥିଲା, ସମ୍ଭବତଃ ଆପଣଙ୍କର ଅନ୍ୟ କେଉଁ ଆଡେ

ଯିବାର ଅଛି । ଥରେ ଫୁରସତ୍‌ରେ ଆସନ୍ତୁ । ଆଶ୍ରମରେ କିଛିଦିନ ରହି କରି ଯାଆନ୍ତୁ । ଆସିବା ପୂର୍ବରୁ ମୋ ପାଖକୁ କେବଳ ପୋଷ୍ଟକାର୍ଡଟେ ପଠେଇ ଦେଇଥିବେ । ମୁଁ ମୋର ଠିକଣା ଦେଇ ଦେଉଛି । ବରୁଣଙ୍କର ମନେ ପଡ଼ି ଯାଇଥିଲା ପଇଁତିରିଶ ଚାଳିଶ ବର୍ଷ ତଳର କଥା । ସେ ଯୁବକଟି ଭିତରେ ନିଜକୁ ଯେମିତି ଦେଖି ପାରିଥିଲେ । ସେତେବେଳେ ତାଙ୍କର ମୋହଭଙ୍ଗଟେ ହେଇଥିଲା ଅଥବା ରାସ୍ତା ଭୁଲି ବସିଥିଲେ ନିଜ ଅଯୋଗ୍ୟ ପଣରୁ । ଏବେ କଣ ସେ ଏତେ ଦିନରେ ସେଇ ସବୁ ପ୍ରଶ୍ନର ଉତ୍ତରମାନ ପାଇଛନ୍ତି, ଯେଉଁ ପ୍ରଶ୍ନ ଗୁଡ଼ିକ ତାଙ୍କୁ ଚାଳିଶ ବର୍ଷ ତଳେ ବ୍ୟଥିତ ମଥିତ କରୁଥିଲା ? ଜୀବନରେ ଅନେକ ତିକ୍ତ ମଧୁର ଅନୁଭୂତି ହେଇଛି ତାଙ୍କର । ସେଇ ଅନୁଭୂତିରୁ ସେ କିଛି ପ୍ରଶ୍ନର ଉତ୍ତର ପାଇ ଯାଇଛନ୍ତି, କିଛି ଅସମାଧିତ ରହିଯାଇଛି ନିଶ୍ଚୟ । ଯେମିତି ମଣିଷ ଜନ୍ମନିଏ କାହିଁକି ? ମୃତ୍ୟୁ ବରଣ କରେ କାହିଁକି ? ମରିଯାଇ ଯାଏ କୁଆଡ଼େ ସେ ? ପ୍ରକୃତରେ କଣ ଜନ୍ମ ମୃତ୍ୟୁର ଚକ୍ରରୁ ରକ୍ଷା ପାଇବାର ଏକମାତ୍ର ରାସ୍ତା ନିବୃତ୍ତିରେ ଅଛି ? ତେବେ ପ୍ରବୃତ୍ତିର ସୃଷ୍ଟି କାହିଁକି ?

ମହାପାତ୍ର ପିଲାଟିକୁ କହୁଥିଲେ ଆଜି ସକାଳେ ଆମେ କେଦାରନାଥ ଅଭିମୁଖେ ବାହାରିଯିବୁ । ନଅଟା ଦଶଟା ଆଡକୁ ଋଷିକେଶ ଛାଡ଼ିବାର ଅଛି । ସ୍ୱାମୀଜୀ କଣ ପ୍ରବଚନ ଦେବାପାଇଁ ବସିଯାଇଛନ୍ତି ?

ନା ନା, ସନ୍ଧ୍ୟା ସମୟରେ ହିଁ ପ୍ରବଚନ ଚାଲେ ଆଶ୍ରମରେ । ସକାଳଟି ଧ୍ୟାନ ଯୋଗ ଆସନର ସମୟ । ସେ ସମୟ ମଧ୍ୟ ଅତିକ୍ରାନ୍ତ ହେଇ ଯାଇଛି । ଆପଣମାନଙ୍କ ହାତରେ ସମୟ ଥିଲେ ମୁଁ ମଧ୍ୟ କେତେଗୁଡ଼ିଏ ଆସନ ଶିଖେଇ ଦେଇ ପାରିଥାନ୍ତି । ଖୁବ୍ ସହଜ ଆସନ କିନ୍ତୁ ସମଗ୍ର ଶରୀରରେ ଆପଣ କଂପନ ଅନୁଭବ କରିପାରିବେ । ଆପଣଙ୍କ ଶରୀର ଭିତରେ ପ୍ରତିଟି ଅଙ୍ଗ ଅଧିକ କାର୍ଯ୍ୟକ୍ଷମ ହୋଇ ପାରିବ ।

ସେମାନେ ସ୍ୱାମୀଜୀଙ୍କ ବଖରାରେ ପହଞ୍ଚି ଯାଇଥିଲେ । ଯୁବକଟି କଥାବାର୍ତ୍ତା ବନ୍ଦ କରି ଦେଇ ନୀରବ ହୋଇ ଯାଇଥିଲା । ତା ଚେହେରାରେ ଥିବା ଚଞ୍ଚଳ ଭାବ ସ୍ଥିର ଜଳ ଭଳି ଶାନ୍ତ ହୋଇ ଯାଇଥିଲା । ସେମାନେ ମଧ୍ୟ ମାନସିକ ସ୍ତରରେ ନିଜକୁ ଅଲଗା ଭାବରେ ପ୍ରସ୍ତୁତ କରି ନେଇଥିଲେ । ଏଥର ଯୁବକଟି ଅନ୍ୟ ଜଣେ ସନ୍ୟାସୀଙ୍କ ସହ ସେମାନଙ୍କର ପରିଚୟ କରେଇଦେଇ ନିଜେ ବିଦାୟ ନେଇଥିଲା । ଏଇ ନୂତନ ସନ୍ୟାସୀଟିର ବୟସ ପଇଁଚାଳିଶ ବର୍ଷରୁ ସାମାନ୍ୟ ଅଧିକ ଥିଲା ପରି ଲାଗୁଥିଲା । ତେବେ ଇଏ ଯେ ସ୍ୱାମୀଜୀ ନୁହନ୍ତି ସେମାନେ ବୁଝିପାରିଥିଲେ । କାରଣ ସ୍ୱାମୀଜୀ ସାଧାରଣ ଗୃହସ୍ଥ ନୁହନ୍ତି ଯେ ଅତିଥି ଆସିଛନ୍ତି କହି ପାଛୋଟି ନେଇଯିବେ । ସେମାନେ ସେଇ ନୂତନ ସନ୍ୟାସୀଟି ସଙ୍ଗେ ସ୍ୱାମୀଜୀ ଥିବା ବଖରାକୁ ଯାଇଥିଲେ ।

ବଖରାଟି ବିଶେଷ ଆଲୋକିତ ନଥିଲା । ସ୍ୱାମୀଜୀ ଖଟଟିଏରେ ବସିଥିଲେ । ତାଙ୍କ ତିନିପଟେ ତକିଆର ଢେର ଦିଆଯାଇଥିଲା । ସେ ଆଖି ବୁଜି ବସି ରହିଥିଲେ । ତାଙ୍କ ମୁହଁର ଚମଡ଼ା ସବୁ ଢ଼ିଲା ହେଇ କୁଞ୍ଚିତ ହେଇ ଯାଇଥିଲା । ବରୁଣ ଆଗରୁ ମାନସିକ ସ୍ତରରେ ପ୍ରସ୍ତୁତ ହେଇଥିଲେ, ମନର ଅସମାଧିତ ପ୍ରଶ୍ନ ମାନଙ୍କରୁ ଗୋଟେ ଅଧେ ପଚାରିବେ ବୋଲି । ମାତ୍ର ସ୍ୱାମୀଜୀଙ୍କୁ ଦେଖି ତାଙ୍କର ସେ ଆଶା ମଉଳି ଯାଇଥିଲା । ମାଟି ଘରଟେ ବର୍ଷାପାଣି ଖାଇ ଧସେଇ ପଡ଼ିଲା ପରି ଦେଖାଯାଉଥିଲେ ସେ । ବହୁତ କ୍ଲାନ୍ତ ହେଇ ଘାଲେଇ ପଡ଼ିଛନ୍ତି ପରା, ସେମିତି ଦିଶୁଥିଲା ତାଙ୍କ ମୁହଁଟି । ସେମାନେ ଯାଇ ତଳେ ପରା ହେଇଥିବା ଦରିରେ ବସିଲେ । ଦଶ ମିନିଟ୍ ଅତିକ୍ରାନ୍ତ ହେଇଯାଇଥିଲା । ସ୍ୱାମୀଜୀ ଆଖି ଫିଟେଇ ଥରଟିଏ ପାଇଁ ମଧ ଦେଖି ନଥିଲେ । ବରୁଣଙ୍କ ଧୈର୍ଯ୍ୟ ଚ୍ୟୁତି ହେଉଥିଲା । ସେ ଘଣ୍ଟା ଦେଖିଲେ । ମହାପାତ୍ର ମୁଣ୍ଡ ନୁଏଁଇ ଅନ୍ୟମନସ୍କ ଭାବରେ ଦରିରୁ ସୂତା ଉଠଉଥିଲେ, ନଖରେ ଟାଣି ଟାଣି । ଘରଟି ଭିତରେ ଆଉ କେହି ନଥିଲେ ସେ ତିନିଜଣଙ୍କୁ ଛାଡ଼ିଦେଲେ । ଗୋଟେ ପ୍ରଚଣ୍ଡ ନିରବତା ଘରଟିକୁ ରାଜତ୍ୱ କରୁଥିଲା । ସ୍ୱାମୀଜୀଙ୍କ ବକ୍ଷର ଉତ୍‌ଥାନ ପତନକୁ ଲକ୍ଷ୍ୟ କରୁଥିଲେ ବରୁଣ, ପ୍ରକୃତରେ ସ୍ୱାମୀଜୀ ସମାଧିସ୍ଥ ଅଥବା ମୃତ ଜାଣିବା ପାଇଁ । କିଛି ବୁଝି ହେଉ ନଥିଲା । ମହାପାତ୍ର ଇଶାରାରେ କିଛି କହିବାକୁ ଚାହୁଁଥିଲେ ତାଙ୍କୁ । ବରୁଣ ଉଠି ଛିଡ଼ା ହେଇଗଲେ । ତାଙ୍କ ପଛେ ପଛେ ମହାପାତ୍ର ବି । ଦୁହେଁ ବଖରାରୁ ବାହାରି ଆସିଥିଲେ । ତାଙ୍କୁ କେହି ଅଟକେଇ ନଥିଲା । ମହାପାତ୍ରଙ୍କର ମନେ ପଡ଼ି ଯାଇଥିଲା ଥରେ ବୁକ୍‌ଷ୍ଟଲ୍‌ରେ ପତ୍ରିକାଟିଏ ଆଡ଼ଉ ଆଡ଼ଉ ସ୍ୱାମୀଜୀଙ୍କର ଠିକ୍ ଏଇ ପୋଜ୍‌ର ଫଟଟିଏ ସେ ସେଥିରେ ଦେଖିଥିଲେ । ବାହାରକୁ ଆସି ବରୁଣ କହିଥିଲେ ସ୍ୱାମୀଜୀ ଏବେ ସମାଧିରେ । ଆଉ ପ୍ରବଚନ ଦେବା ଅବସ୍ଥାରେ ନାହାନ୍ତି ।

ମହାପାତ୍ର କହିଥିଲେ ହଁ, ସେ ଏବେ କାଛରେ ଝୁଲୁଥିବା ଫଟୋ କିମ୍ବା ଚଟାଣରେ ଥୁଆ ହେଇଥିବା ମୂର୍ତ୍ତିଟେ ସଙ୍ଗେ ସମାନ । ସେ ଗୋଟେ କଳ୍ପ, ଗୋଟେ ବିଶ୍ୱାସରେ ଚାଲିଛି । ବିଶ୍ୱାସ ଅପେକ୍ଷା ଆହୁରି ଯୁକ୍ତିଯୁକ୍ତ ଶବ୍ଦ କୁହାଯାଇପାରେ, ନାଓ ହି ଇଜ୍ ଏ କମୋଡିଟି । ବସ୍ତୁରେ ପରିଣତ ହେଇ ଯାଇଛନ୍ତି । ହସି ଦେଇ ବରୁଣ କହିଥିଲେ, କଣ ଯେମିତି ଆମ ଜଗନ୍ନାଥ ?

ମହାପାତ୍ର ଅନ୍ୟମନସ୍କ ଥିଲେ । ନହେଲେ ହୁଏତ ଯୁକ୍ତି କରିଥାନ୍ତେ । ବୋଧହୁଏ ସେ ଠିକ୍ ଭାବରେ ଶୁଣି ପାରିନଥିଲେ । ଆଶ୍ଚର୍ଯ୍ୟ ଓ ଅନ୍ୟମନସ୍କ ଗଳାରେ ପଚାରିଥିଲେ, କିଏ, କାହା କଥା କହୁଛନ୍ତି, କଣ ହେଲା ଜଗନ୍ନାଥଙ୍କର ?

---

ମେଜର ଦେଖିଲେ ଶର୍ମିଷ୍ଠା ତା ପାଖ ସିଟ୍‌ରେ ବସିଥିବା ଲୋକଟି ସହ, ବେଶ୍ ଖୁସି ମନରେ ଅନେକ ବେଳୁ ଗପ କରୁଛି । ତାଙ୍କୁ ଭଲ ଲାଗିଥିଲା, ଡର ବି ଲାଗିଥିଲା । କେତେବେଳେ କଣ କହି ବସିବ ଶର୍ମିଷ୍ଠା କିଏ ଜାଣେ । ଝିଅଟା କିନ୍ତୁ ଏତେ ପରିମାଣରେ ଆବ୍‌ନର୍‌ମାଲ ନଥିଲା ଛୋଟବେଳରେ । ହଁ ଗପୁଡି ଥିଲା ଟିକିଏ । କିନ୍ତୁ ଧିରେ ଧିରେ ତା କଥାବାର୍ତ୍ତା ଗୁଡ଼ିକ ଅସ୍ୱାଭାବିକ ଜଣାଗଲା । ଯେମିତି, ସଂସାରର ସମସ୍ତଙ୍କୁ ସେ ଘୃଣା କରେ । କେହି ଗୋଟିଏ ଭଲ ମଣିଷ ନାହିଁ ଏ ସଂସାରରେ । ସଂସାର ଗୋଟାକ ଯାକର ଲୋକ, ପୋକ ଜୋକ, ସରୀସୃପ ପଶୁ ପକ୍ଷୀଙ୍କ ଭଳି କେବଳ ଦିଇଟି ଭୋକକୁ ଚିହ୍ନିଛନ୍ତି । ଗୋଟେ ପେଟର ଅନ୍ୟଟି ଦେହର । ପେଟର ଭୋକକୁ ସେ ବରଦାସ୍ତ କରିପାରେ ମାତ୍ର ଦେହର ଭୋକ ତାର ବରଦାସ୍ତର ବାହାରେ । ତାର ଧାରଣା ସଂସାରର ସବୁଠୁଁ ନିମ୍ନମାନର କାମ ହେଉଛି ଯୌନତା । ବାପ ହେଇଥିବା ଯୋଗୁଁ କି କଣ ସେ ତାକୁ ବୁଝେଇ ପାରନ୍ତି ନାହିଁ ସୃଷ୍ଟିର ମୂଳତତ୍ତ୍ୱ ସେଇ ଯୌନତା ଉପରେ ନିର୍ଭର କରୁଛି ବୋଲି । ଯୌନତା ଅଶ୍ଳୀଳ ନୁହେଁ । ତାରି ଭିତରେ ଲୁଚି ରହିଛି ସୌନ୍ଦର୍ଯ୍ୟ । ସେ ଜାଣନ୍ତି, କାହିଁକି ଶର୍ମିଷ୍ଠାର ଏ କ୍ଷୋଭ । ସବୁ କିଛି ଥାଇ ମଧ, କିଛି ନଥିବାର ନିଃସ୍ୱତା ତାକୁ ବ୍ୟାକୁଳ କରେ, ତା ନାରୀ ଜୀବନକୁ ଅପମାନିତ କରେ । ସେ ଚାହିଁଲେ ମଧ ବୈବାହିକ ଜୀବନ ବିତେଇ ପାରିବ ନାହିଁ । ଡାକ୍ତରୀ ଶାସ୍ତ୍ର ତାକୁ ଯୌନ ଜୀବନ ବିତେଇବା ପାଇଁ ନିଷେଧ କରିଛି । ଏତ ଏକ ପ୍ରକାରର ଅଭିଶାପ । ପଣ୍ଡୁଙ୍କ ପରି ତାକୁ ବାଛି ନେବାକୁ ପଡ଼ିବ ମୃତ୍ୟୁ ଅବା ଜୀବନର ଶ୍ରେଷ୍ଠତମ ସୁଖ, କେଉଁଟି ଲୋଡ଼ା ତା ପାଇଁ । ସେ ଜୀବନକୁ ପୂର୍ଣ୍ଣାଙ୍ଗ କରିବାକୁ ଚାହେଁ ମୃତ୍ୟୁ ପ୍ରତିବଦଳରେ, ଅବା ନୁହଁ । ମେଜର ନିଜେ କଣ କରିଥାନ୍ତେ ଏଭଳି ଅବସ୍ଥାରେ, ନିଜକୁ ନିଜେ ପ୍ରଶ୍ନ କରିଥିଲେ ସେ । ମୃତ୍ୟୁ ତ ମଣିଷର ଶେଷତମ ନିୟତ, ତେବେ କାହିଁକି ସେ ଆଗେଇ ଆସିବେ ନାହିଁ ଏକ ସୁନ୍ଦର ଅନୁଭବ ଆଡ଼କୁ । ତେବେ ଶର୍ମିଷ୍ଠାକୁ କଣ ସେ, ସେଇ ଉପଦେଶ ଦେବେ, ଯେ ଥରୁଟିଏ ପାଇଁ ହେଉ ବରଂ, ଜୀବନର ମହାର୍ଘ ଅନୁଭବରୁ ବଞ୍ଚିତ ହନା । ନା, ସେ କହିବେ ନାହିଁ । କହି ପାରିବେ ନାହିଁ । ଶର୍ମିଷ୍ଠା ତାଙ୍କ ସନ୍ତାନ । ସେ ତାକୁ ହରେଇବାକୁ ଚାହାନ୍ତି ନାହିଁ ।

ଶର୍ମିଷ୍ଠା ହସି ହସି କିଛି କହୁଥିଲା ଲୋକଟିକୁ । ଲୋକଟି ମଧ ବେଶ୍ ମନଧ୍ୟାନ ଦେଇ ଶୁଣୁଥିଲା ଶର୍ମିଷ୍ଠାର କଥା । ମଝିରେ ମଝିରେ ମୁରୁକି ମୁରୁକି ହସୁଥିଲା ଯାହା । ଏ ହସ ସୌହାର୍ଦ୍ଦ୍ୟର ଅଥବା ବ୍ୟଙ୍ଗର ସେ ବୁଝିବାକୁ ଚେଷ୍ଟା କଲେ । ହେଲେ ପାରିଲେ ନାହିଁ । ଆଜିର ଯାତ୍ରା ଆରମ୍ଭ ପୂର୍ବରୁ ସିଟ୍‌ଟି ମିଳିନଥିଲା । ଅପେକ୍ଷାକୃତ ବୟସ୍କ ଲୋକମାନଙ୍କୁ ସାମ୍ନା ସିଟ୍ ଛାଡ଼ି ଦେଇ କମ୍ ବୟସ୍କ ଲୋକମାନେ ପଛକୁ ଚାଲି

ଯାଉଥିଲେ । ଟ୍ରାଭେଲ୍ ଏଜେନ୍ସିର ଯେଉଁ ବସ୍‌ଟି ସେମାନଙ୍କୁ ନେଇ ଆସିଥିଲା ସେଇଟି ଖରାପ୍ ହେଇ ଯାଇଥିବାରୁ, ତା ବଦଳରେ ଅନ୍ୟ ବସ୍‌ଟିଏରେ ସେମାନେ ଯାତ୍ରା କରିଥିଲେ । ପଛ ବସ୍‌ଟିରେ କୌଣସି ନମ୍ବର ନଥିବାରୁ କେହି ଆଉ ଆପତ୍ତି କରି ନଥିଲେ । ତାଛଡ଼ା କଣ୍ଡକ୍ଟର ପ୍ରଥମରୁ ଅନୁରୋଧ କରି ସାରିଥିଲା ଯେହେତୁ, କେହି ମୁହଁ ଫିଟେଇ ପାରିନଥିଲେ । ଏଇ ନୂଆ ବସ୍‌ରେ ବରୁଣ ଓ ମେଜର୍ ବସିଥିଲେ ପାଖାପାଖି ସିଟ୍‌ରେ । ପ୍ରଫେସର ମହାପାତ୍ର ପରିଡା ନାଁରେ ଥିବା ଲୋକଟି ପାଖରେ ବସିଥିଲେ । ଶର୍ମିଷ୍ଠା କଣ କରୁଥିଲା କେଜାଣି ହୋଟେଲ୍ ଭିତରେ, ଡେରିରେ ପହଞ୍ଚିଥିଲା ବସ୍ ପାଖକୁ । ତାକୁ ସିଟ୍ ମିଳିଥିଲା ଗୋଟେ ହିନ୍ଦୀଭାଷୀ ଲୋକ ପାଖରେ । ମେଜର୍ କିମ୍ବା ବରୁଣ ନିଜର ସିଟ୍ ବଦଳେଇବା ଆଗରୁ ଶର୍ମିଷ୍ଠା କହିଥିଲା, ତମେ ସେଇଠି ବସଥାଅ ବାପା, ମୁଁ ଏଇ ବାବୁଙ୍କ ପାଖରେ ବସି ଯାଉଛି । ଆପଣମାନେ ଗପସପ କରିକରି ଯାଆନ୍ତୁ । ମେଜର ଟିକେ ଆଶ୍ଚର୍ଯ୍ୟ ହେଉଥିଲେ ଶର୍ମିଷ୍ଠାର କଥା ଶୁଣି । ଶର୍ମିଷ୍ଠାର ଏ ଲୋକ ସଙ୍ଗେ ଚିହ୍ନା ପରିଚୟ ହେଇ ଯାଇଛି କିମ୍ବା ଜାଗା ନାହିଁ ବୋଲି ସେ ସେଇଠି ବସିବ ବୋଲି କହିଲା । ପୁଅମାନଙ୍କ ସମ୍ପର୍କରେ ତାର ଧାରଣା ସେତେଟା ଭଲ ନୁହଁ । ପୁଅମାନଙ୍କୁ ସେ ବିଶ୍ୱାସର ଆଖିରେ ଦେଖିପାରେ ନାହିଁ । କିନ୍ତୁ ମେଜର ଆହୁରି ଆଶ୍ଚର୍ଯ୍ୟ ହେଇଥିଲେ, ଯେତେବେଳେ ଦେଖିଥିଲେ ଶର୍ମିଷ୍ଠା ହସି ହସି ଗପି ଚାଲିଛି ଲୋକଟି ସହିତ । ଲୋକଟି ମଧ ତା ସହ ଗପରେ ମଜି ଯାଇଛି । ଯା ଅର୍ଥ ବେଶ୍ ଗୁରୁତ୍ୱର ସହ ଶୁଣୁଛି ସେ ଶର୍ମିଷ୍ଠାର କଥା । କାହିଁକି କେଜାଣି ମେଜରଙ୍କୁ ଭଲ ଲାଗିଲା । ଖୁସି ଲାଗିଲା ଝିଅ.ମୁହଁରେ ହସ ଦେଖି । ତାଙ୍କର ମନେ ହେଲା ଏମିତି ବାହାରକୁ ବାହାରିଲେ, ପାଞ୍ଚ ଦଶଟା ଅଜଣା ଲୋକଙ୍କ ସଙ୍ଗେ ମିଶିଲେ ଝିଅଟାର ମନ ଭଲ ରହିବ । ବାରମ୍ବାର ତାଙ୍କ ଧ୍ୟାନ ସେଇ ଆଡ଼କୁ ଟାଣି ହେଇ ଯାଉଥିଲା । ସେମାନେ ଦି ଟିକିଆ ସିଟ୍‌ରେ ବସିଥିଲେ । ତାଙ୍କଠୁଁ ଦୁଇଟି ପଛ ସିଟ୍‌ରେ ବସିଥିବାରୁ ଦେଖିବା ବେଳେ ସ୍ୱାଭାବିକ ଭାବେ ବେକ ବାଙ୍କି ହେଇ ଯାଉଥିଲା । ସେ ବୁଲି ବୁଲି ଦେଖୁଛନ୍ତି ବୋଲି ଲୋକଟି ଜାଣି ସାରିଛି କି ? କଣ ଭାବୁଥିବ କେଜାଣି । ନା, ଆଉ ଦେଖିବା ଠିକ୍ ହେବ ନାହିଁ । ଲୋକଟାର ବୟସ ପ୍ରାୟ ଶର୍ମିଷ୍ଠା ବୟସର ପାଖାପାଖି ହେଇଥିବ । ବେଶ୍ ସ୍ୱାସ୍ଥ୍ୟବାନ୍ ଓ ହିନ୍ଦୀ ଭାଷୀ ଲୋକଙ୍କ ଗଢ଼ଣ ପରି ଥିଲା ମୁହଁଟି । କପାଳ ମଝିରେ ଲମ୍ବା ସିନ୍ଦୁର କଳିଟେ ଟାଣିଥିଲା ସେ । ମୁହଁରେ ଅଳ୍ପ ଅଳ୍ପ ଦାଢ଼ୀ ରଖିଥିଲା । ଏ ଲୋକଟି ଏତେଦିନ ଧରି ସେମାନଙ୍କ ସହ ଯାତ୍ରା କରି ଆସିଥିଲା, ଅଥଚ ସେ ଲକ୍ଷ୍ୟ କରି ପାରି ନଥିଲେ କେମିତି ? ଲୋକଟି ବେଶ୍ ଶ୍ରଦ୍ଧାର ଦୃଷ୍ଟିରେ ଦେଖୁଥିଲା

ଶର୍ମିଷ୍ଠାକୁ । ମେଜର ଦେଖିଲେ ଶର୍ମିଷ୍ଠା ଶାଢ଼ୀ ସଙ୍ଗେ ମ୍ୟାଚିଂ କରି ଲମ୍ବା ହାତର ବ୍ଲାଉଜଟିଏ ପିନ୍ଧିଛି । ଆଇବ୍ରୋରେ କଳା ପେନ୍‌ସିଲ୍ ଲମ୍ବା କରି ଟାଣି ଦେଇଛି । ଗୋଲାପୀ ରଙ୍ଗର ହାଲ୍‌କା ଲିପ୍‌ଷ୍ଟିକ୍ ଲଗେଇଛି କିନ୍ତୁ ମୁହଁରୁ ପାଉଡରର ପ୍ରଲେପ ଛାଡ଼ିଯାଇ ଥିବାରୁ ଦେହର ଚମଡ଼ା ସଙ୍ଗେ ଏ ପ୍ରକାର ସାଜସଜ୍ଜା କେମିତି ଅବାଗିଆ ଦିଶୁଛି । ସତେ ଯେମିତି ରଙ୍ଗଛଡ଼ା କଣ୍ଢେଇଟେ ଠାଏ ଠାଏ ମଳି ପିଇ ଯାଇଛି । ଶର୍ମିଷ୍ଠାଟା ଟିକିଏ ଭଲ ଭାବରେ ନିଜକୁ ସଜେଇ ପାରିଲା ନାହିଁ ଆଜି ସୁଦ୍ଧା ।

ତଥାପି ଲୋକଟି ମୁଗ୍ଧ ହେଇ ଶୁଣିଯାଉଥିଲା ଶର୍ମିଷ୍ଠାର କଥା । ଭାରି ଭଲ ଲୋକଟିଏ ହେଇଥିବ ନିଶ୍ଚୟ । କଣ କେଜାଣି ନାଁ ଗାଁ ତାର । ବସ୍ ଅଟକିଲେ, ସେ ନିଜେ ଯାଇ ଗପ କରିବେ ତା ସଙ୍ଗେ । ଲୋକଟି ବାହାସାହା ହେଇ ପରିବାର କରିଥିବ କି ନାହିଁ କେଜାଣି ? ଏକୁଟିଆ ତ ଆସିଛି । ସାଙ୍ଗରେ ସ୍ତ୍ରୀ ପିଲା ଥିଲେ କଣ ଏତେ ଖୋଲାଖୋଲି ଭାବରେ ଶର୍ମିଷ୍ଠା ସଙ୍ଗରେ ଗପ କରି ପାରୁଥାନ୍ତା ? ସାଙ୍ଗରେ ସ୍ତ୍ରୀଟି ନାହିଁ ମାନେ ବାହା ହେଇ ନଥିବାର ସମ୍ଭାବନା ବେଶି । ବିପତ୍ନୀକ ମଧ ହେଇ ଥାଇପାରେ । ଲୋକଟିର ଚେହେରା ଦେଖିଲେ ମନେ ହେଉନି ବାହା ହେଇ ସଂସାର ଜଞ୍ଜାଳରେ ଛନ୍ଦି ହେଇଥିବ ବୋଲି । ଜଞ୍ଜାଳିଆ ଲୋକ ମୁହଁରେ ଏତେ ନିର୍ମଳ ହସ ଆସିବ କାହୁଁ ? ଶର୍ମିଷ୍ଠା ଭଳି ଝିଅକୁ ସେ କଣ ପ୍ରକୃତରେ ପସନ୍ଦ କରି ପାରିବ ? ଶର୍ମିଷ୍ଠାକୁ ନେଇ ତାଙ୍କର ଯେତେ ଚିନ୍ତା । ଝିଅଟା ଯଦି ବାହାସାହା ହେଇ ସଂସାର କରନ୍ତା, ସେ ନିଶ୍ଚିନ୍ତରେ ମରିପାରନ୍ତେ ।

ଲୋକଟି ଏଥର ତା ପକେଟରୁ ଷ୍ଟିଲ୍ ପାନ ଡବାଟିଏ ବାହାର କଲା । ଖଣ୍ଡିଏ ପାନ କଳରେ ଯାକି ଡବାଟିକୁ ଶର୍ମିଷ୍ଠା ଆଡ଼କୁ ବଢ଼େଇ ଦେଲା । ଶର୍ମିଷ୍ଠା ନାହିଁ ନାହିଁ କରୁଥିଲା ଲୋକଟି ଡବାରୁ ନିଜେ ପାନ ଖଣ୍ଡେ ବାହାର କରି ତା ହାତରେ ଧରେଇ ଦେଇଥିଲା । ଶର୍ମିଷ୍ଠା କେବେ ପାନ ଖାଏ ନାହିଁ । ପାନ ଖାଉଥିବା ଲୋକ ତାକୁ ଭଲ ଲାଗନ୍ତି ନାହିଁ । ଅଥଚ ପାନ ଖଣ୍ଡିକ କଳରେ ଯାକି ଚୋବଉ ଚୋବଉ ଲୋକଟି ଆଡ଼କୁ ଅନେଇ ହସି ଦେଇଥିଲା ସେ ।

ଏହି ସମୟରେ ବରୁଣ ବାବୁ ପଚାରିଥିଲେ ଦେହ କଣ ଭଲ ନାହିଁ କି ମେଜର ? ଚୁପ୍‌ଚାପ୍ ହେଇ ବସିଛନ୍ତି । ମେଜର ଭାବିଥିଲେ ସତେତ ପାଖରେ ବରୁଣ ବାବୁ ବସିଛନ୍ତି । ଗାଡ଼ିରେ ଚଢ଼ିଲାବେଳୁ ସେ ପଦୁଟିଏ ହେଲେ କଥା ହେଇ ନାହାନ୍ତି ତାଙ୍କ ସହିତ । କଣ ଭାବୁଥିବେ ବରୁଣ ବାବୁ ? ଶର୍ମିଷ୍ଠା ଉପରେ ତାଙ୍କର ନଜରଟା ପଡ଼ିଯାଇନି ତ । କିଛି ଭାବୁଥିଲେ କି ବରୁଣବାବୁ ଯେ ବାପା ସାମ୍ନାରେ ଝିଅଟା ଅନ୍ୟ ଲୋକ ସାଙ୍ଗରେ, ହେଁ ହେଁ ହେଇ ଗପ କରୁଛି । ପାନ ଚୋବେଇ ଫୁଲେଇ

ହେଉଛି କେମିତି । ହଅ ଭାବିବେ କଣ ? ଶର୍ମିଷ୍ଠା ତ ଆଉ ଛୋଟ ଝିଅ ନୁହେଁ । ଭିତର ହେଲାଣି ଆସି । ବୟସ ଆସି ଅଡଚାଳିଶ୍ ଅଣଚାଶ । ଆଉ ବର୍ଷ କେଇଟା ଗଲେ ରିଟାୟାର୍ଡ କରିବ । ବାପ ବୋଲି ତାକୁ ଝିଅର ବୟସଟା ଜଣା ପଡେ ନାହିଁ ସିନା । ବରୁଣଙ୍କ ଉଦ୍ଦେଶ୍ୟରେ ମେଜର କହିଥିଲେ, ଆଉ କଣ ବଳବୟସ ଅଛି ଏତେ ବାଟ ବସ୍‌ଯାତ୍ରାର କଷ୍ଟ ସହି ନେବା ପାଇଁ ? ଦେହ ଖଣ୍ଡକ ଜାଣ ଟାଣି ଘୋଷାଡ଼ି ନେବାକୁ ପଡୁଛି । ଦେବପୀଠ ନ ହେଇଥିଲେ କଣ ଏତେ ବାଟ ଆସି ହେଇଥାନ୍ତା ? ବରୁଣ ହସିଥିଲେ, ଆପଣ ଏମିତି କଥା କହୁଛନ୍ତି ଯେମିତି ବହୁତ ବୁଢ଼ା ହେଇ ଯାଇଛନ୍ତି । ଆପଣଙ୍କ ବୟସ କେତେ ହେଲା କହିଲେ ? ହେଇ ହେଇ ମୋଠୁଁ ଦଶ ଏଗାର ବର୍ଷ ବଡ଼ ହେଇଥିବେ ।

ବୟସ ହିସାବ କିଏ ରଖୁଛି କହିଲେ ବରୁଣବାବୁ ? ସବୁ ଲାଗୁଛି ଏଇ କାଲି କାଲିକା ଘଟଣା ଭଳି ପରା । ମୋ ଜନ୍ମ ହେଉଛି ଉଣେଇଶ ଅଠେଇଶ ମସିହାରେ । ବ୍ରିଟିଶ ଅମଳର ଅତ୍ୟାଚାର ଓ ଉତ୍ତେଜନାକୁ ଅନୁଭବ କରିଛି ମୁଁ । ଗାଁରେ ଥିଲାବେଳେ ତ ବୁଝି ହେଉନଥିଲା । ହଁ, ତା ବୋଲି ଗୋରାଙ୍କ ଦୌରାତ୍ମ୍ୟ ଆମେ ନଭୋଗିଛୁ ବୋଲି ମଧ କହିହେବ ନାହିଁ । ବାଜି ରାଉତର ଘଟଣା ଆମ ସେଇ ଗଡଜାତ ଅଞ୍ଚଳର କଥା । ଆମେ ସେତେବେଳକୁ ଛୋଟପିଲା । ବାପାଥିଲେ ଆମର ବଡ଼ଚାଷୀ । ଗାଁ ପ୍ରଧାନ । ହଳିଆ ମୂଲିଆଙ୍କ ହିସାବ କଣ ଦେବି ଆପଣଙ୍କୁ । ଗାଁର ଏକ ଚଉଥାରୁ ବେଶି ହେବେ ଆମ ଜମିରେ କାମ କରୁଥିବା ଲୋକ । ସାଙ୍ଗକୁ ବାପା ମହାଜନୀ କାରବାର କରୁଥିଲେ । ଟଙ୍କା କଉଡ଼ିରେ ଅଭାବ ନାହିଁ । ମୁଁ ଭଲ ପଢୁଥିଲି । ହେଲେ ପ୍ରକୃତିରେ ଥିଲି ବିଛୁଆତି । ଯାହାକୁ କୁହନ୍ତି ଚାଲିଲା ଶଗଡ଼ରେ ହାତ ମାରିଲା ପିଲା । ଗୋଟେ ପୁଅ । ଗେଲ ବସରରେ ବଢ଼ିଥିଲି । ବାପାଙ୍କର ପ୍ରତିପତ୍ତି ଥିଲା, କିଏ କାହିଁକି ମୋ ନାଁରେ ଆପତ୍ତି ଅଭିଯୋଗ ଆଣିବ କହୁନାହାନ୍ତି । ସ୍କୁଲ ପିଲାଙ୍କୁ ମତେଇ ଭୋଜି ଭାତ କୁକୁଡ଼ା ହଉଥିଲା ରବିବାରକୁ ରବିବାର । ବୁଝିଲେନା ବରୁଣ ବାବୁ, ଗୋଟେ ଘଟଣା ଥରେ ଘଟିଥିଲା ଶୁଣନ୍ତୁ, ପ୍ରତିମାସରେ ଆମ ସ୍କୁଲ୍‌ରେ ହେଡ୍ ପଣ୍ଡିତ ଆଉ ମାଷ୍ଟରଯାକ ମିଶି ତ୍ରିନାଥ ମେଳା କରୁଥାନ୍ତି । ପିଲାଙ୍କଠୁଁ ପାହୁଲେ ଅଧଲେ କରି ଆଦାୟ ହୁଏ । ହେଲେ ପିଲାଙ୍କୁ ଡକାଯାଏ ନା ସେ ପୂଜାକୁ । ଠିକ୍ ସନ୍ଧ୍ୟା ସନ୍ଧ୍ୟା ଆଡ଼କୁ ପୂଜା ଆରମ୍ଭ ହୁଏ । ରାତି ନଅଟା ସାଢ଼େ ନଅଟା ଆଡ଼କୁ ହେଡ୍ ପଣ୍ଡିତ ସହ ମିଶି ମାଷ୍ଟର ଯାକ ପୁରା ଗଞ୍ଜେଇ ନିଶାରେ ଚୁର୍ ହେଇ ଯାଆନ୍ତି । ଚିଲମ ବୁଲୁଥାଏ ଯା ପାଖରୁ ତା ପାଖକୁ । ଗୋଲ୍ କରି ଘେରି ବସିଥାନ୍ତି ସଭିଏଁ । କିଏ ଢୁଳେଉ ଥାଏ ତ କିଏ ଧାଡ଼ିଏ ଅଧେ କରି ଗୀତ ଗାଉଥାଏ । ଥରେ ପିଲାଙ୍କୁ ମୁଁ ମତେଇଲି ।

ଆମ ପଇସାରେ ଶଳା ମାଷ୍ଟର ଚିଲମ ଟାଣିବେ ? ତାଙ୍କ ପୂଜା ଭଣ୍ଡୁର କରିବା । ଦଶ କି ପନ୍ଦର ସରିକି ପିଲା ହେବେ, ନାନା କୋଡ଼ିଏ ପଚିଶ ସରିକି ପିଲା ଜୁଟେଇ ଥିଲି ମୁଁ । ରାତିରେ ବାହାରି ପଡ଼ିଲୁ । ସ୍କୁଲ ଯେତିକି ପାଖ ହେଉଥାଏ, ମାଡ଼ ଡରରେ ଗୋଟେ ଗୋଟେ କରି ଖସି ଯାଉଥାନ୍ତି । ସେପଟେ ମାଷ୍ଟ୍ରମାନଙ୍କର ରୋଷେଇ ଚାଲିଥାଏ । ବେଣୁ ବୋଲି ପିଲାଟେ ରାନ୍ଧୁଥାଏ । କ୍ଷିରି ପୁରିର ବାସ୍ନାରେ ବହକୁ ଥାଏ ଜାଗା ଖଣ୍ଡକ । ଏ ପଟେ ତ୍ରିନାଥ ମେଳା ଚାଲିଥାଏ, ଗଞ୍ଜେଇ ଚିଲମ୍ ବୁଲୁଥାଏ ପାଳିଙ୍କରି । ଗୋବିନ୍ଦା ମହାକୁଡ ନାଁରେ ପିଲାଟିକୁ ଆମେ ଭାତ ଡେକ୍‌ଚି ମୁଣ୍ଡେଇବାକୁ ଦେଇଥାଉ । ବଟ ଓଝା ଧରିଥାଏ କୁକୁଡା ତର୍କାରୀ ଡେକ୍‌ଚିଟା । ସ୍କୁଲରେ ପହଞ୍ଚିଲା ବେଳକୁ ଖାଲି ପିଲା ଆଠଟା ଥାନ୍ତି ଆମ ସାଙ୍ଗରେ । ପୂଜା ମଣ୍ଡପଠୁଁ ଟିକିଏ ଦୂରରେ ଖଲି ବନା ପକାହେଲା । ଭାତ ବଢ଼ା ହେଲା ତର୍କାରୀ ବଢ଼ା ହେଲା ଗୋପମାଷ୍ଟ୍ର ପାଟିଟେ କରି ଡାକଦେଲେ, କିଏ କିରେ ଶଙ୍କେ ସେଇଠି ବସିଛ ? ଭଗବାନ ସାର୍ କହିଲେ କୁକୁଡ଼ା ତର୍କାରୀ ପରି ବାସୁଛି ତ । ଆରେ ବେଣୁ ଦେଖ୍, ଦେଖ୍ ତ କିଏ ଶଳେ ଚଣ୍ଡାଳ ସେଇଠି ଗୁଳୁର ଗାଳୁର ହଉଛନ୍ତି । ହେଡ୍‌ପଣ୍ଡିତେ ନିଶାରେ ଚୁର୍ ହେଇ ତାଙ୍କ ବାଡ଼ିଖଣ୍ଡକ ଖୋଜୁଥାନ୍ତି ହେଲେ ମିଳୁନଥାଏ । ମିଳନ୍ତା କୁଆଡ଼େ ସେଇଟା କଣ ତାଙ୍କ ଶ୍ରେଣୀ ହୋଇଛି ଯେ ମିଳିଯିବ । ଆମେ ସବୁ ଅସମୟରେ ଅଜାଗାରେ ପହଞ୍ଚିଥାଉ, କାହା ସାର୍ଟ ଝିଙ୍କି, କାହା ବାହାଟେକି ପିଟିବେ ବୋଲି ଉଠିଲେ ମାଷ୍ଟର ଯାକ । ଅଙ୍କ ମାଷ୍ଟର ଟା ଠାକୁରଙ୍କ କଳସ ଉଞ୍ଚେଇଥାଏ ମାରିବ ବୋଲି । ଆମେ ଯେ ଯୁଆଡ଼େ ପାରିଲୁ ଛୁ ମାରିଲୁ ।

ସକାଳେ ବାପା ସବୁ କଥା ଶୁଣିଲେ । ଅମରି ଡାଳ ଖଣ୍ଡକରେ ଗୋଡ଼ରୁ ମୁଣ୍ଡଯାଏ ପିଟି ଦେଇଗଲେ । ବିଧର୍ମୀ କୁଳାଙ୍ଗାର କହି ଗାଳିଦେଲେ । ପଚାରିଥିଲେ କହ କଣ ପାଇଁ ଏ କାଣ୍ଡ କଲୁ । ନହେଲେ ତୋତେ ଆଜି ପିଟି ପିଟି ମାରିଦେବି ।

ମୁଁ କାନ୍ଦୁ କାନ୍ଦୁ କହିଥିଲି, ମାଷ୍ଟରଗୁଡା ଆମ ପଇସାରେ ତ୍ରିନାଥ ମେଳା ନାଁରେ ମଉଜ ମଜଲିସ୍ କରୁଛନ୍ତି କିଆଁ ?

ତୋ ବାପର କଣ ପଇସା ଅଭାବ ଯେ ଚାନ୍ଦା ପଇସା କେଇଟା ଦେଇଦେଲେ ସରିଯାଉଛି ? ହଉ ହେଲା ଯଦି ତୋର ମାଷ୍ଟର ଉପରେ ରାଗ ଥିଲା ମୋତେ କହିଲୁନି, ଏମିତି ଠାକୁରଙ୍କୁ ମାରା କଲୁ କିଆଁ ? ତ୍ରିନାଥ ମେଳା କଣ ଜାଣିଛୁ ? ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତିନି ଠାକୁରଙ୍କ ପୂଜା । ତୁ ପାପୀ, ଏ କି ପାପ ଅର୍ଜନ କଲୁ ? ମୁଁ ବି ପାପ କରିଥିଲି ଯେ ତୋ ପରି କୁଳାଙ୍ଗାର ଅଧର୍ମୀକୁ ଜନ୍ମ କଲି । ବାପାଙ୍କର ରାଗ କ୍ରମଶଃ ଗୋଟେ ଭାବପ୍ରବଣତା ଆଡ଼କୁ ଗଡ଼ି ଯାଉଥିଲା । ଯାହାର ଯେତେ

ଥାଏ ତାର ସେତେ ଭୟ । ସାହି ପଡ଼ିଶାଙ୍କୁ ଭୟ, ଚୋର ଡକେଇତଙ୍କୁ ଭୟ ଶେଷକୁ ଭଗବାନଙ୍କୁ ମଧ ଭୟ । ବାପାଙ୍କର ଧାରଣା ହେଇଯାଇଥିଲା ତାଙ୍କ ସମ୍ପତ୍ତି ଓ ସାମ୍ରାଜ୍ୟ ପତନର ପ୍ରଥମ ପଦଧ୍ୱନି ସେ ମୋ ମାର୍ଫତ୍ ଶୁଣିବାକୁ ପାଉଛନ୍ତି । ସେ ବଦ୍‌ରାଗି ଓ ଯିଦ୍‌ଖୋର ସ୍ୱଭାବର ଥିଲେ । ତେଣୁ ରାଗିଯାଇ କହିଥିଲେ, ଆଜି ଠୁଁ ତୋର ସ୍କୁଲ ଯିବା ବନ୍ଦ ।

ବୁଝିଲେ ବରୁଣ ବାବୁ, ମୁଁ ଆଉ ସ୍କୁଲ ଗଲି ନାହିଁ । ବାପା ରାଗି ଯାଇ କହିଲେ । ଘରେ ଯେତେ ଗାଈ ଗୋରୁ ଅଛି ନେଇ ଗୋଠକୁ ଯା । ସତକୁ ସତ ଟିମା ଗଉଡକୁ ବନ୍ଦ କରି ଦେଇଥିଲେ । ମୁଁ ଗୁହାଳରୁ ଗାଈ ଗୋରୁ ଫିଟେଇ ଗୋଠକୁ ନେଇଥିଲି । ଦିନ କେତେ ଗଲା ପରେ ସେଇଠି ପୁଣି ମୋର ଗୋଟେ ଦଳ ତିଆରି ହେଲା । ଦଳର ଦଳପତି ହେଲି ମୁଁ ଆଉ ଗୋରୁ ଚରାଳି ପିଲା ଗୁଡା ହେଲେ ବାକି ସଦସ୍ୟ । ଚଗଡ଼ା ଉପରେ ଚାଲିଲା ପୁଣି ଭୋଜିଭାତ, ଖେଳ ତାମସା । ଶୁଣ୍ଢି ଘର କଅଁଳିବୋଦା ଛୁଆଟା ମାରି ରନ୍ଧା ହେଲା ମାଂସ ତର୍କାରୀ । ସଭିଏଁ ଘରୁ ପାଏ ପୋଷେ କରି ଚାଉଳ କାନିରେ ବାନ୍ଧି ଆଣିଥାନ୍ତି । ତେଲ ମସଲା ମୋର । ଗାଈ ମୁଣ୍ଡକୁ ଛୁଇଁ ସଭିଏଁ ରାଣ ପକେଇଲୁ ବୋଦା ମରା କଥା କେହି ଯେମିତି ପ୍ରଘଟ ନକରନ୍ତି । ଯଦି କେହି ପ୍ରଘଟ କଲା ତେବେ ଆସନ୍ତା ଜନ୍ମରେ ବଳଦ ହେଇ ହମ୍ପା ରଡ଼ି କରିବ । ବୋଦାଟାର ଚମଡ଼ା ପୁଣ୍ଡା ପୁଣ୍ଡି ଗାତ ଖୋଳି ପୋତି ଦେଲୁ । ଶୁଣ୍ଢି ଘରେ କୁହାଗଲା ଶିଆଳ ଟାଣି ନେଲା । ଏଡେ ବଳଟେ ବୋଦାଛୁଆ ଥିଲା ଦାନ୍ତରେ କାମୁଡ଼ି ନେଇ ପଳେଇଲା । ରାଣ ନିୟମ ପଡ଼ିଥିଲେ ବି ପ୍ରକୃତ କଥା ଲୁଚି ରହି ନଥିଲା । ସମସ୍ତେ ଭୋଜି ଭାତ ଖାଇଥିଲେ ସତ କିନ୍ତୁ ସବୁ ଦୋଷ ହେଲା ମୋର । କାରଣ ଗୋରୁ ଚରାଳି ଟୋକାଗୁଡାଙ୍କର ପୁରୁଣା ରେକର୍ଡ଼ରେ ଏମିତି ଦୁଃସାହସିକ କାର୍ଯ୍ୟ ନଥିଲା । ମୋ ଲାଗି ସେମାନେ ଖରାପ୍ ହେଲେ ବୋଲି ବାପା ମତେ ପଘାରେ ପିଟିଲେ । ଗୋମାତା ଛୁଇଁ ରାଣ ଦେଇଛି ଓ ମିଛି କହିଛି ବୋଲି, ମୁଁ ଯେ ଗୋଟେ ପକ୍କା ଅଧର୍ମୀ ତାଙ୍କର ଦୃଢ଼ମୂଳ ଧାରଣା ହେଇଯାଇଥିଲା । ପାଖ ଗାଁରୁ ଖଡ଼ିରତ୍ନଙ୍କୁ ଡକେଇ ଗଣାପୋଛା କରେଇଥିଲେ ବାପା । ରାହୁଙ୍କୁ ଶନି ଚଳିଥିଲା ଭଗବାନ୍ ଜାଣନ୍ତି । ଘରେ ଭୋଗ, ପୂଜା ଆଦି ହେଇଥିଲା । ବ୍ରାହ୍ମଣ ଭୋଜନଟେର ଆୟୋଜନ ମଧ କରିଥିଲେ ବାପା । ସେ ଘଟଣାର ଦୁଇଦିନ ପରେ ମୋ ଲୁଗାପଟା ବହିପତ୍ର ବାସନକୁସନ ବନ୍ଧା ହେଇଥିଲା । ଟ୍ରେଙ୍କ୍ ଚଉକି, ଫିତା ଖଟଟେ ଶଗଡ଼ରେ ଲଦା ହେଇଥିଲା । ମୁଁ ଟାଉନ୍‌କୁ ଆସି ମେସ୍‌ରେ ରହିଲି । ଶଶିରଥ ନାଁରେ ମାଷ୍ଟରଟିଏର ହେପାଜତରେ ମୋର ନୂଆ ସ୍କୁଲ୍‌ରେ ପାଠପଢ଼ା ଆରମ୍ଭ ହେଲା । ସେଇ ସମୟର

କଥା, ବାଜି ରାଉତ୍‌ର ମୃତ୍ୟୁକୁ ନେଇ ବଡ଼ ହଇଚଇ ସୃଷ୍ଟି ହେଇଗଲା ଚାରିଆଡ଼େ । ଆମରି ପରି ପିଲାଟେ ଏତେ ବଡ଼ କାମ କରି ପକେଇଲା ? ସେଇ କଥା ଆମେ ବସି ବସି ଭାବୁଥାଉଁ ମେସ୍ ଯାକର ପିଲା । କେତେ ଗପସପ ଚାଲିଥାଏ । ମନ ହଉଥାଏ ଆମେ ଭଲା ଗୋଟେ ଗୋଟେ ବାଜି ରାଉତ ହେଇ ଯାନ୍ତୁ ପରା । ଗୋରା ସାହିବକୁ ନାଲି ଆଖି ଦେଖେଇ, ବାହା ହଲେଇ ଜବାବ୍ ଦିଅନ୍ତୁ । ବେଳେବେଳେ ମୁଁ ସ୍ୱପ୍ନ ମଧ ଦେଖି ପକଉଥିଲି, ଏତେ ବଡ଼ ଖଣ୍ଡାଟେ ଧରି, ଗୋରା ସାହିବଟିଏକୁ ହତ୍ୟା କରୁଛି । ଅପେରା ଷ୍ଟାଇଲ୍‌ରେ ଗୋରା ସାହେବ୍‌ର ଛାତିରେ ପାଦ ଥୋଇ ହା ହା ହା ହସୁଛି ।

ହସିଥିଲେ ବରୁଣବାବୁ ମେଜରଙ୍କ କଥା ଶୁଣି । କହିଥିଲେ, ଆପଣ ସେଇଥିପାଇଁ ବୋଧହୁଏ ବଡ଼ ହେଇ ମିଲିଟାରୀରେ ଗଲେ ବୋଲି ଲାଗୁଛି ?

ମେଜର୍ ହସିଥିଲେ ବରୁଣଙ୍କ କଥା ଶୁଣି । ଟିକିଏ ରହିଲା ପରେ କହିଲେ ଯୌବନରେ ପାଦ ଦେଇ ମୁଁ ପୁଣି ଏକ ଅଧର୍ମର କାମ କଲି, ଫଳରେ ମିଲିଟାରୀ ଜୀବନ ବିତେଇବାକୁ ପଡ଼ିଥିଲା । ମୋତେ ଯେତେବେଳେ ବାଇଶ୍ ବର୍ଷ ହେଇଥାଏ ମୁଁ ମିଲିଟାରୀରେ ଭର୍ତ୍ତି ହେଲି । ମିଲିଟାରୀରେ କଣ ଦେଶ ପାଇଁ ପଶିଲି ଭାବୁଛନ୍ତି ? ନା ନା, ସେ ଆଉ ଏକ କାହାଣୀ । ଆମ ଦେଶରେ କେଉଁମାନେ ଯୁଦ୍ଧକୁ ଯାଆନ୍ତି କହିଲେ ? ବହୁତ ଗରିବ ଘରର ପିଲା ହେଇଥିବେ, ନହେଲେ ବାପା ମିଲିଟାରୀରେ ଅଛି, ତା ପୁଅକୁ ମଧ ସେଇ ଲାଇନ୍‌ରେ ଭର୍ତ୍ତି କଲା । ଆଉ ଦଳଟେ ଯାଆନ୍ତି ଘରର ଲୋକଙ୍କ ଉପରେ ଅଭିମାନ କରି । ପାଠଶାଠ ପଢ଼ୁନି, ଘରେ ବେକାର ବସିଛି ବାପା ମା ଅସନ୍ତୁଷ୍ଟ ହେଉଛନ୍ତି ତ ପିଲା ଘର ଛାଡ଼ି ପଳେଇଲା । ବୁଝିଲେ ବରୁଣବାବୁ, ମୁଁ ହେଲି ସେଇ ତୃତୀୟ ପକ୍ଷୀ । ଆପଣଙ୍କୁ କହୁନଥିଲି, ମୋ ବାପାଙ୍କ ଧାରଣା ଥିଲା ମୁଁ ଅଧର୍ମୀଟା । ଶେଷଯାଏ ତାଙ୍କର ସେ ଧାରଣା ସେମିତି ରହିଗଲା । ମୋ ଜୀବନରେ ଏମିତି ସବୁ ଘଟଣାମାନ ଘଟୁଥିଲା ଯେ ତାକୁ ଆକସ୍ମିକତା କୁହାଯିବ ଅଥବା ମୋ ପ୍ରକୃତି ପାଇଁ ମୁଁ ସେମିତି ଘଟଣାମାନ ଭିଏଇଥିଲି କହି ପାରିବି ନାହିଁ । ମୁଁ ମିଲିଟାରୀରେ ଯାଇ ନଥାନ୍ତି, ହେଲେ ମୋତେ ଯିବାକୁ ପଡ଼ିଲା । ମୁଁ ବାଧହେଲି ଯିବାପାଇଁ । ସ୍କୁଲ ପଢ଼ା ସାରି ମୁଁ ସିଧା ରେଭେନ୍ସା କଲେଜରେ ନାଁ ଲେଖେଇଲି । ଏତେଗୁଡ଼ାଏ ଦିନ ବାହାରେ ରହି, ସାଙ୍ଗ ସାଥୀ, ଗାଁ, ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନଙ୍କ ଆଡ଼କୁ ଟାଣଟା କମି ଆସୁଥାଏ । ଗାଁକୁ ଗଲେ ବେଶିଦିନ ରହିବାକୁ ଇଛା ହୁଏ ନାହିଁ । ମୋ ଛଡ଼ା କାହାକୁ ଆପଣାର ଲାଗେ ନାହିଁ । ବାପାଙ୍କ ମୁହଁକୁ ଚାହିଁବାକୁ ଇଛା ହେଉନଥାଏ ଆଦୌ । ବାପାଙ୍କର କିନ୍ତୁ ଗର୍ବ ଥାଏ, ମୋ ପାଠ ପାଇଁ । ଆମ

ବଂଶରେ କେହି ଏତେ ପଢ଼ି ନଥିଲେ ଆଗରୁ । ବାପା ମୋ ପାଇଁ ଗର୍ବ କରୁଥିଲେ ହେଁ ମୁଁ ବୁଝିପାରୁ ଥିଲି ବାପା ଆଉ ମୋ ଭିତରେ ଦୂରତାଟେ ତିଆରି ହେଇ ସାରିଛି । ମୁଁ କଟକ ଚାଲି ଆସୁଥିଲି । ଆମ ଗଡ଼ଜାତିଆ ପିଲା ଯେତକ ସବୁ ଇଷ୍ଟ ହଷ୍ଟେଲରେ ରହୁଥାନ୍ତି । ବଡ଼ମ୍ବା, ଢେଙ୍କାନାଳ, ତାଳଚେର, ସମ୍ବଲପୁର, ସୁନ୍ଦରଗଡ଼, ଆଦି ଅଞ୍ଚଳରେ ପିଲାମାନଙ୍କୁ ଇଷ୍ଟହଷ୍ଟେଲ୍‌ରେ ଜାଗା ମିଳୁଥିଲା । ହଷ୍ଟେଲ୍ ଚାର୍ଜ ବାରଟଙ୍କା । କଲେଜ ଫିସ୍ ଛ ଟଙ୍କା । ମାସକୁ ପଚିଶ ଟଙ୍କା ହେଲେ ସବୁ ହେଇ ଯାଉଥିଲା । ପଇସାକୁ ଚାରିଟା ଖିଲିପାନ ମିଳୁଥିଲା ସେତେବେଳେ । ଷି.କେ ପରିଜା ଥାନ୍ତି ଆମ ପ୍ରିନ୍‌ସିପାଲ୍ । ଘୋଷାଲ୍ ବୋଲି ଜଣେ ସାର୍ ଆମକୁ ଲଜିକ୍ ପଢ଼ଉଥାନ୍ତି । ବିପିନ୍ ବିହାରୀ ରାୟ ଥାନ୍ତି ଫିଲୋସଫିର ପ୍ରଫେସର । ନୀଳମଣି ରାଉତରାୟ ଆଉ ସଚ୍ଚି ରାଉତରାୟ ବିଏ ପାଶ୍ କରି ସାରିଥାନ୍ତି । ହଁ ମାୟାଧର ମାନସିଂହ ପଢ଼ଉଥାନ୍ତି ଇଂରାଜୀ । ମୋର ମନେ ପଡୁଛି, ଲାଫ୍ ଏଣ୍ଡ୍ ବି ମେରି, ବେଟର୍ ରିମେମ୍ବର ଦିସ୍ ୱାର୍ଲଡ ଉଇଥ୍ ଏ ସଙ୍ଗ୍, ଏଇ କବିତା ସବୁ ପଢ଼ଉଥିଲେ ଶ୍ରେଣୀରେ । ଏମିତିରେ ମାନସିଂହଙ୍କ ରୋମାଣ୍ଟିକ୍ କବିତାର ଚର୍ଚ୍ଚା ପିଲାଙ୍କ ମୁହଁରେ ଚାଲିଥାଏ । କାହ୍ନୁ ମହାନ୍ତିଙ୍କର ଖଣ୍ଡିଏ ଖଣ୍ଡିଏ ଉପନ୍ୟାସ ବାହାରୁଥାଏ ସେଇ ସମୟକୁ । ଆମେ ପିଲାମାନେ ଲୁଚେଇ ଲୁଚେଇ କବିତା ଲେଖୁଥାଉ । ହେଲେ ପତ୍ରପତ୍ରିକାକୁ ପଠେଇବାକୁ ସାହସ ହେଉ ନଥାଏ ।

ଏବେର କଲେଜଛକ ଭଳି ଏତେ ଭିଡ଼ ନଥିଲା ସେତେବେଳେ । ରେଭେନ୍ସା କଲେଜ ସାମ୍ନାରେ ତେଲୁଗୁ ଲୋକଟେ ଦୋଷା ଇଡ୍‌ଲିର ଦୋକାନଟେ ଦେଇଥିଲା । ଗୁଜୁରାତି ହୋଟେଲ୍‌ଟିଏ ମଧ ଥାଏ । କଲେଜ ଛକରୁ ମଙ୍ଗଳାବାଗ୍ ଭିତରେ ବହୁତ କମ୍ ଦୋକାନ ବଜାର ଥିଲା । ହିନ୍ଦ୍ ସିନେମା ହଲ୍ ହେଇ ନଥାଏ । ଆଉ ମେଡ଼ିକାଲ୍ କଲେଜ୍ ଜାଗାରେ ଥାଏ ମେଡ଼ିକାଲ୍ ସ୍କୁଲ । କ୍ୟାପିଟାଲ୍ ସିନେମା ହଲ ଥାଏ ଆଉ ଥାଏ ଅନ୍ନପୂର୍ଣ୍ଣା ରଂଗମଞ୍ଚ । ପ୍ରମଥେଶ୍ ବଡୁଆ ଆଉ କାନନବାଳାର ଫିଲ୍ମ ବେଶ୍ ଲୋକପ୍ରିୟ ଥାଏ ସେତେବେଳେ । ଆମେ ସବୁ ପିଲାମାନେ ଷ୍ଟେସନ୍‌ର ହ୍ୱିଲର୍‌ରୁ ବହି କିଣି ପଢୁଥାଉ । ସେଇ ସମୟର କଥା, ଭାଇସ୍ ରାୟ ଲିନ୍‌ଲିଥ୍‌ଗୋଙ୍କର କଟକ ଆସିବାର ଥାଏ । ତା ପୂର୍ବରୁ ସୁବାସ ବୋଷ୍ ଆସିଥାନ୍ତି । ସୁବାସ୍ ବୋଷ୍‌ଙ୍କୁ ହାତୀ ଉପରେ ବସେଇ ପାଟିଲୋକ ବୁଲେଇ ସାରିଥାନ୍ତି । କିନ୍ତୁ ଲିନ୍‌ଲିଥ୍ ଗୋ ଆସିବାବେଳେ ଦି ପ୍ରକାରର ଅବସ୍ଥା ହେଇ ଯାଇଥାଏ । ଗୋଟେ ପଟେ ସରଗରମ ବେଳକୁ ଅନ୍ୟ ପଟେ ଥମ୍‌ଥମ୍ ଭାବଟେ ବ୍ୟାପି ଯାଇଥାଏ । କଲେଜ ପିଲାମାନଙ୍କ ଭିତରେ ଫୁସ୍‌ଫାସ୍ ଚୂପୁର ଟାପୁର ଆରମ୍ଭ ହେଇଯାଇଥାଏ । ଏପଟେ ଆମେ ସବୁ

କ୍ଲାସକୁ ଯାଉଥାଉ, ରୋଲ୍‌କଲ୍ ସରିଲା ଓ କିଏ କେଉଁବାଟେ ଖସି ପଳେଇଲା ଜଣା ପଡ଼ିଲାନି । ବଟନିକାଲ ଗାର୍ଡେନ୍ ଥାଏ ପିଲାଙ୍କ ଗୁପ୍ତ ମନ୍ତ୍ରଣାର ଜାଗା । କଥା ଥାଏ, ଲିନ୍‌ଲିଥ୍ ଗୋ ସାହାବ ଓହ୍ଲେଇବେ କଟକ ରେଲଷ୍ଟେସନରେ । ଦି ଚାରିଦିନ ଧରି କଡ଼ା କଟକଣା ବ୍ୟବସ୍ଥା ହେଉଥାଏ । ତଥାପି ପିଲାଯାକ ଏକାଠି ହେଇ ସ୍ଲୋଗାନ୍ ଦେବା ଆରମ୍ଭ କରିଦେଲୁ ଲିନ୍‌ଲିଥ୍ ଗୋ ଗୋ ବ୍ୟାକ୍ ଗୋ ବ୍ୟାକ୍, ବ୍ରିଟିଶ ରୁଲ୍ ଡାଉନ୍ ଡାଉନ୍ । ରାଣୀହାଟର ତାଳଦଣ୍ଡା କେନାଲ ଉପରେ ଜୋର୍ ସୋର ପିକେଟିଂ ଆରମ୍ଭ ହେଇ ଯାଇଥାଏ । ଆରମ୍ଭ ହେଇଗଲା ଲାଠି ଚାର୍ଜ । ଆଖି ପିଛୁଳାକେ କିଏ କୁଆଡ଼େ ଛିନ୍ନଛତର ହେଇଗଲେ । ତିନିଦିନ କାଳ ଆମକୁ ଲୁଚି ରହିବାକୁ ପଡ଼ିଲା । ସେତେବେଳେ ଓଡ଼ିଆ ବଜାରରେ ସୁବାସ୍ ବୋଷ୍‌ଙ୍କ ଘର ଜାନକୀ ଭବନଟା ଖାଲି ପଡ଼ିଥାଏ । ଶରତ୍ ବୋଷ୍ ପିଲାଙ୍କୁ ଆଶ୍ରୟ ଦେଲେ । ସବୁ ପିଲାଙ୍କ ଖିଆପିଆ ବାବଦକୁ ପଇସା ଯୋଗାଡ଼ ହେଇଗଲା । ବ୍ୟବସାୟୀ ଓକିଲ ଯିଏ ପାରିଲା ପାଣ୍ଠିକୁ ସାହାଯ୍ୟ କରିଲା । ଭାତ ଡାଲ୍‌ମା ଖାଇ ଭୂଇଁରେ ଗଡ଼ିବା କଥା । ଏଣେ ହଷ୍ଟେଲ ଖାଲି । ପ୍ରିନ୍ସିପାଲ ପି.କେ. ପରିଜା ଘରମାନଙ୍କୁ ଚିଠି ପଠାଇଲେ । ଚିଠି ପାଇ କାହା ବାପା, କାହା ଭାଇ କଟକରେ ହାଜର୍ ହେଇଗଲେ । ମୋ ସାଙ୍ଗରେ ସେଇ ସମୟରେ ଅସୁବିଧାଟେ ହେଇଗଲା । ଖିଆପିଆର ଠିକଣା ନଥିଲା କି ଶୋଇବା ବସିବାର ଠିକଣା ନଥିଲା । ତା ସାଙ୍ଗକୁ ଜ୍ୱର ଧରି ପକେଇଥିଲା । ଓକିଲ ଅପୂର୍ବ ରାୟ ମୋତେ କଟକ ମେଡ଼ିକାଲ୍‌ରେ ଭର୍ତ୍ତି କରିଦେଲେ । ଜ୍ୱର ମାମୁଲି ଜ୍ୱର ନୁହଁ ମେଲେରିଆ । ରାତିକୁ ଜୋରଦାର୍ କମ୍ପ ଆସୁଥାଏ । ସେଇ ଡାକ୍ତରଖାନାରେ ମୋର ଦେଖା ହେଲା ହେମାଙ୍ଗିନୀ ସାଥିରେ । ନୂଆ ନୂଆ ନର୍ସ ଚାକିରୀ ପାଇଥାଏ । ଓଡ଼ିଶା ଖ୍ରୀଷ୍ଟିଆନ୍ ଝିଅ । ବଡ଼ ସେବାଯତ୍ନ କଲା ମୋର । ବାପା ଖବର ପାଇ ଗାଁରୁ ଆସିଥିଲେ । ଆଗ ସମୟ କଥା, ବସ୍‌ରୁ ଓହ୍ଲେଇ ଡଙ୍ଗାରେ କଟକକୁ ଆସିବାକୁ ପଡୁଥିଲା । ମଙ୍ଗଳାବାଗରେ ଘରଟିଏ ଭଡ଼ା ନେଇ ଦିନ କେଇଟା ରହିଥିଲେ ସେ । ଦେହ ଭଲ ହେଇଯିବାରୁ ମୋତେ ହଷ୍ଟେଲ୍‌ରେ ଛାଡ଼ି ଦେଇ ଗାଁକୁ ଫେରିଥିଲେ ।

ବାପା କିମ୍ୱା ମୋତେ କାହାରିକୁ ଜଣାନଥିଲା ସେଇ ହେମାଙ୍ଗିନୀ ଦିନେ ଆମ ଘରର ସଦସ୍ୟ ହେଇଯିବ । ହଷ୍ଟେଲ୍‌ରେ ରହିଲି ସିନା ହେମାଙ୍ଗିନୀ କଥା ବହୁତ ମନେ ପଡୁଥିଲା । ତା ଚଳଚଞ୍ଚଳ ଚେହେରାଟି ଆଖିରୁ ହଟୁ ନଥିଲା ଆଦୌ । ଦିନେ ସାହସ ଜୁଟେଇ ମେଡ଼ିକାଲ୍ ଯାଇ ତାକୁ ଦେଖାକଲି । ହେଲେ ଗପିବି କଣ ? ମୋ ମନକଥା ସେ ପଢ଼ିନେଲା । ମୁଁ ମଧ୍ୟ ତା ମନ କଥା ପଢ଼ିନେଲି ସେଇ ଅଳ୍ପକ୍ଷଣରେ । ପ୍ରେମ ଜାହିର କରିବା ପାଇଁ ଭାଷାର ଆବଶ୍ୟକତା ପଡ଼େନା । ମୁଁ ମଝିରେ ମଝିରେ

ଡାକ୍ତରଖାନା ଯାଇ ତାକୁ ଦେଖା କରୁଥାଏ । ଆସ୍ତେ ଆସ୍ତେ ତା ଘରକୁ ଯା ଆସ ଲାଗିଲା । ଖ୍ରୀଷ୍ଟିଆନ୍ ଘର ଶିକ୍ଷାଦୀକ୍ଷା ସାଙ୍ଗକୁ ଘର ଦୁଆର ମଧ ବେଶ୍ ସଫାସୁତୁରା ଥିଲା । ତାଙ୍କ ଘରର ସମସ୍ତଙ୍କ ବ୍ୟବହାର ମଧ ମୋତେ ଭଲ ଲାଗୁଥିଲା । ବେଶ୍ ମାର୍ଜିତ ଓ ଭଦ୍ର ମନେ ହଉଥିଲେ ତାର ବାପା ମା ।

ବରୁଣ ବାବୁ କହିଥିଲେ, ମୁଁ ଛୁଆବେଳେ ମିଶନ୍ ସ୍କୁଲ୍‌ରେ ପଢୁଥିଲି ଯେ । ଆମମାନଙ୍କୁ ସହଜେ ସେ ସ୍କୁଲ୍‌ରେ ପଢ଼ିବା ପାଇଁ ସୁଯୋଗ ମିଳୁନଥିଲା ।

ହଁ ସେଇ କଥା ପରା, କହିଥିଲେ ମେଜର୍ । ଏ ଜାତି ଜାତିଆଣ କଥା କଣ କହିବେ । ହେମାଙ୍ଗିନୀର ପୂର୍ବପୁରୁଷ ଥିଲେ ହିନ୍ଦୁ ପ୍ରକୃତରେ । ନଅଙ୍କ ଦୁର୍ଭିକ୍ଷ ବେଳେ କିଏ କୁଆଡେ ପେଟ ବିକଳରେ ଭିଟାମାଟି ଛାଡ଼ିଗଲେ । ଯେଉଁ ଜଣେ ଅଧେ ଜୀବନ ଧରି ରହିଗଲେ ତାଙ୍କ ଦୁଃଖ କହିଲେ ନସରେ । ଗାଁକୁ ଫେରି ଆସିଲେ କପର୍ଦ୍ଦକ ଶୂନ୍ୟ ହେଇ । ଧନ ସମ୍ପତ୍ତି ତ ନାହିଁ । ଜାତିରେ ମିଶିବେ କେମିତି ? ଗାଁ ଲୋକ ସହଜେ ଜାତିଟିକୁ ଯେମିତି ଧରି ବସନ୍ତି ଜାଣିଛନ୍ତି ଆପଣ । ଛତର ଖାଇଥିବାରୁ ଗାଁ ସହଜରେ ଗ୍ରହଣ କଲା ନାହିଁ । ସେଇଠୁ ବାଧ ହେଇ ହିନ୍ଦୁରୁ ଖ୍ରୀଷ୍ଟିଆନ୍ ହେବାକୁ ପଡ଼ିଥିଲା ।

ବରୁଣ ବାବୁ ହାଇ ଟିଏ ମାରି, ହାତର ଆଙ୍ଗୁଠି ଓ ଅଣ୍ଟା ଫୁଟେଇଲେ । ଅଳସ ଭାଙ୍ଗୁ ଭାଙ୍ଗୁ କହିଲେ ଅନେକ ବେଳୁ ବସି ବସି ଗୋଡ଼ ହାତ ଅସାଡ ହୋଇଗଲାଣି । ଗୋଡ଼ଗୁଡ଼ା ଟିକିଏ ଲମ୍ବେଇ ହେଉଥିଲେ ଭଲ ଲାଗନ୍ତା । ମେଜର୍ କହିଥିଲେ ହେମାଙ୍ଗିନୀ ମୋଠୁ ବୟସରେ ବଡ଼ ଥିଲା । ହେଲେ ଏଇ ବୟସରେ ଭାବଦୋସ୍ତିରୁ ଯାହା ହୁଏ ।

ବରୁଣଙ୍କ ନିଦ ଭାଙ୍ଗି ଯାଇଥିଲା ମେଜରଙ୍କ ଶେଷୋକ୍ତି ଶୁଣି । ପଚାରିଥିଲେ କଣ ହୁଏ ? କେଉଁ ଦୀର୍ଘପଥ ଅତିକ୍ରମ କରି ଆସିଥିବା ନଦୀଟେ ଅଚାନକ ପାହାଡଟେ ସାମ୍ନାରେ ପାଇ ଗତି ସ୍ଥିର କରି ନ ପାରିଲା ପରି ମେଜର୍ ଚୁପ୍ ହେଇ ଯାଇଥିଲେ ଦଣ୍ଡେ । ଶର୍ମିଷ୍ଠାକୁ ଲକ୍ଷ୍ୟ କରିଥିଲେ । ଶର୍ମିଷ୍ଠା ନୀରବରେ ବସି ଲୋକଟିର କଥା ଶୁଣୁଥିଲା । ତା ପାନଖିଆ ଓଠ ଲାଲ୍ ଦିଶୁଥିଲା । ମେଜର୍ ଧିରେ ଧିରେ କହିଥିଲେ, ମୁଁ ବାହା ହେବା ପାଇଁ ବାଧ ହେଲି । ସେତେବେଳ ସୁଦ୍ଧା ମୁଁ ପାଶ୍ କରିସାରିନଥାଏ । ବାପାଙ୍କ ପାଖକୁ ଚିଠି ଲେଖି ଜଣେଇଲି । ବାପା ଦିନା କେତେ ଅସୁସ୍ଥ ହେଇ ବିଛଣା ଧରିଲେ । ଅଧର୍ମୀ, ବିଧର୍ମୀ କହି ଗାଳି ଗୁଲଜ କଲେ । ବାପାଙ୍କ ହିସାବରେ ମୁଁ ଆଉ ଏକ ପାପ କଲି । ଯା ଦ୍ୱାରା ମୋ ପିତୃପୁରୁଷ ପାଣି ପାଇବେ ନାହିଁ । ମୁଁ ବାପାଙ୍କ ପାଇଁ ମୃତ ହେଇଗଲି । ସେ ମୋତେ ତ୍ୟଜପୁତ୍ର କରିଦେଲେ । ଦୁଃଖରେ

ବୋଉର ଅବସ୍ଥା ଶୋଚନୀୟ ହେଇଗଲା । ଏପଟେ ବାସନ୍ତି ମୋ ପଢ଼ା ଖର୍ଚ୍ଚ ତୁଲୋଉଥାଏ । ବି.ଏ ପାଶ୍ କରି ବସି ରହିଲି । କେତେଦିନ ବାସନ୍ତୀ ମୁଣ୍ଡରେ ବୋଝ ହେଇଥାନ୍ତି ? ମାନସିକ ଯନ୍ତ୍ରଣା ଓ ଗ୍ଲାନି ବୋଧରୁ ମୁକ୍ତି ପାଇବା ପାଇଁ ମନ ପ୍ରାଣ ଅସ୍ଥିର ହେଉଥାଏ । କିଛି ଭଲ ଲାଗୁନଥାଏ । ଚାହୁଁ ଚାହୁଁ ବୟସ ବଢ଼ିଗଲା ପରି ଲାଗୁଥାଏ । ସଂସାରର ଯାବତୀୟ ରୁକ୍ଷତା ଗ୍ରାସ କରି ପକଉଥାଏ । ମିଲିଟାରୀ ଯିବି ବୋଲି ଠିକ୍ କରିଦେଲି । ଘର ସଂସାରକୁ ଛାଡ଼ି କେଉଁଆଡ଼କୁ ପଳେଇଯିବାକୁ ମନ ହେଉଥିଲା । ହଠାତ୍ ବାହା ହେଇ ସିନା ଘଟଣାଟି ମୋତେ ବୟସ୍କ କରି ଦେଇଥିଲା । ହେମାଙ୍ଗିନୀକୁ ପାଇବା ପାଇଁ ବାପା ବୋଉ ଗାଁ ଛାଡ଼ିଥିଲି । ହେଲେ ହେମାଙ୍ଗିନୀକୁ ପାଇଲି ଆଉ କେତେବେଳେ ? ମିଲିଟାରୀରେ ମିଳିଗଲା ପରେ ତାକୁ ଛାଡ଼ି ଯିବାକୁ ହେଲା । ବହୁତ୍ ବୁଝେଇଥିଲା ହେମାଙ୍ଗିନୀ ମୋତେ ମିଲିଟାରୀରେ ନଯିବା ପାଇଁ । ବହୁତ କାନ୍ଦିଥିଲା । କିନ୍ତୁ ନଯାଇ ମୋର ଉପାୟ ନଥିଲା । ମୁଁ ହେମାଙ୍ଗିନୀ ସହ ରହି, ସେଇ ସମୟରେ ସଂସାର ପାତିଥିଲେ ମୋ ବୋଉ ବାପାଙ୍କ ମୁହଁଟି ମାନ ମନେ ପଡ଼ିଥାନ୍ତା । ଅପରାଧବୋଧରେ ମନ ଉଦାସ ହେଇଥାନ୍ତା । ମୁଁ ଆପଣଙ୍କ ବୁଝେଇ ପାରିବି ନାହିଁ ସେ ସମୟରେ ଥିବା ମୋ ମାନସିକ ଅବସ୍ଥାର କଥା । ଦେଖନ୍ତୁ ତ ବରୁଣ ବାବୁ, ମଣିଷର ମନଟା କେତେ ଅଦ୍ଭୁତ । ହେମାଙ୍ଗିନୀ ପାଇଁ ସବୁ ଛାଡ଼ିଲି ହେଲେ ସେଇ ହେମାଙ୍ଗିନୀକୁ ଯେତେବେଳେ ହାତ ପାଆନ୍ତାରେ ପାଇଲି ଖୁସି ହେଇ ପାରିଲି ନାହିଁ । ଏମିତି କାହିଁକି ହୁଏ କହିଲେ ? ସତ କହିବାକୁ ଗଲେ ଜୀବନଟା ସାରା ମୁଁ କେବେ ସୁଖରେ ରହିପାରିଲି ନାହିଁ । ଲୋକେ ମୋତେ ଭାରି ସୁଖୀ ଲୋକ ଭାବନ୍ତି, ହେଲେ ପ୍ରକୃତରେ ମୁଁ କଣ ଭାରି ସୁଖୀ ଲୋକ ? କେଜାଣି ?

---

ବସ୍ ରୁଦ୍ରପ୍ରୟାଗରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ହୋଇଯାଇଥିଲା । ପରିଡ଼ା ମାଉସୀଙ୍କର ଗୋଡ଼ ହାତ ଧରି ଯାଇଥିଲା ସେତେବେଳକୁ । ଏତେ ବାଟ ବସ୍‌ରେ କେଉଁଆଡ଼କୁ ସେ ଯାଇନାହାନ୍ତି କେବେ । ମଝିରେ ଦିନେ ଅଧେର ବିଶ୍ରାମ ପରେ ପୁଣି ନୂଆ ଜାଗାକୁ ବାହାରିପଡ଼ । ବସ୍‌ରୁ ଓହ୍ଲେଇଲା କ୍ଷଣି ତାଙ୍କ ଗୋଡ଼ର ଶିରା ଟାଣି ହେଇଗଲା କି କଣ, ଛଟପଟ ହେଇ ଯାଇଥିଲେ ସେ ଯନ୍ତ୍ରଣାରେ । ରାସ୍ତାଟା ଉପରେ ଗୋଡ଼ ଲମ୍ବେଇ ବସି ପଡ଼ି, ମାଲୋ ମରିଗଲି ବୋଲି ପାଟି କରିଥିଲେ । ଗୌରୀ ଧାଇଁ ଆସି ପଚାରିଥିଲା କଣ ହେଲା ମାଉସୀ ? ଦେହ ପା କଣ ବିଗିଡ଼ି ଗଲା କି ? ଏମିତି ରାସ୍ତାଟା ଉପରେ ଲଥ୍ କରି ବସି ପଡ଼ିଲ ଯେ । ପରିଡ଼ା ମଉସା

ଓହ୍ଲେଇ ଆସୁଥିଲେ ବସ୍‌ରୁ କହିଲେ ମୁଁ ପରା ସେଇଥିପାଇଁ କହୁଥିଲି, ଯାକୁ ନେଇ କରି ଯିବି ସିନା ହେଲା ଇଏ ବାଟରେ ମୋ ମୁଣ୍ଡରେ ବୋଝ ହେଇ ବସିବ । ପରିଡା ମଉସାଙ୍କର ଏ ମନ୍ତବ୍ୟ ଗୌରୀକୁ ଭଲ ଲାଗିଲା ନାହିଁ । ତେଣୁ ସେ କହିଥିଲା ମଉସା ଏମିତି କଣ କହୁଛନ୍ତି ମ । ଆପଣ ହଟା କଠା ହେଇଛନ୍ତି କିନ୍ତୁ ମାଉସୀଙ୍କ ଦେହରୁ ପଳ ମାଂସ ବାହାରିବ ନାହିଁ । ଦୁର୍ବଳ ଲୋକ ଏତେଗୁଡ଼ାଏ ବାଟ ଆସିଲେ । ଦେହଟା ବିଗିଡ଼ି ଯିବା ଅସମ୍ଭବ । କଣ କହୁ ନାହାନ୍ତି ?

ପରିଡ଼ା ମାଉସୀ ଗୌରୀ ପାଖରୁ ଆଶ୍ୱାସନା ପାଇ କହିଥିଲେ ପୁଅରେ ଟିକିଏ ଧରିଲୁ । ମୋ ବାଁ ଗୋଡଟାର ଶିର ଟାଣି ହେଇଗଲା କି କଣ । ଗୌରୀ ପରିଡ଼ା ମାଉସୀଙ୍କୁ ଧରି ଛିଡ଼ା କରେଇଥିଲା । କହିଥିଲା ମୁଁ ଧରୁଛି ତମେ ଗୋଡଟା ଛାଟି ଦେଲ ।

ବରୁଣ ଆଗେଇ ଯାଉଥିଲେ ତାଙ୍କ ଜିନିଷପତ୍ର ଧରି ହୋଟେଲ୍ ଆଡକୁ । ଗୌରୀ ଓ ପରିଡା ମାଉସୀଙ୍କୁ ଦେଖି ପଚାରିଥିଲେ କଣ ହେଲା ? ଗୌରୀ କହିଥିଲା ତାଙ୍କ ଗୋଡ଼ର ଶିର ଟାଣି ନେଇଛି ତ ସେଥିପାଇଁ ଚାଲି ପାରୁ ନାହାନ୍ତି ।

ଆଣ୍, ଆଣ୍, ତାଙ୍କୁ ନେଇଆ କୌଣସିମତେ । ମୋ ପାଖରେ ମଲମ ଅଛି ମାଲିସ୍ କରିଦେଲେ ଠିକ୍ ହେଇଯିବ । ଗୌରୀ ଉପରେ ଭରା ଦେଇ ପରିଡ଼ା ମାଉସୀ ହୋଟେଲ୍ ଭିତରକୁ ଆସିଥିଲେ । ବସ୍ କଣ୍ଡକ୍ଟର ପରିଡ଼ା ମାଉସୀଙ୍କ ଏ ଅବସ୍ଥା ଦେଖି ପଚାରିଥିଲା, କଣ ହେଲା ତାଙ୍କର ? ଡାକ୍ତର ଡାକିବା ଦରକାର କି ?

ଗୌରୀ କହିଥିଲା ନା ନା ସେମିତି କିଛି ହେଇ ନାହିଁ । କେବଳ ଗୋଡ଼ଟା ଟାଣି ହେଇ ଯାଇଛି ଯାହା ।

ପ୍ରଫେସର ମହାପାତ୍ର ଚିଡ଼ିଚିଡ଼ା ହେଇ ଅନେଇଥିଲେ । ହେଲେ କିଏ କଣ ଭାବିବ ଚିନ୍ତା କରି କିଛି କହି ପାରୁନଥିଲେ । ପୂର୍ବପରି ଡରମିଟରୀର ବ୍ୟବସ୍ଥା ଥିଲା ଏଇ ହୋଟେଲ୍‌ଟିରେ । ଗୌରୀ ପରିଡା ମାଉସୀଙ୍କୁ ବିଛଣାଟିଏରେ ଶୁଏଇ ଦେଇଥିଲା । ପରିଡ଼ା ବାବୁ ହାଣ୍ଡିମୁହଁଟେ କରି ଆସି ବସିଥିଲେ ପାଖରେ । ବରୁଣ ତାଙ୍କ ଆଟାଚି ଖୋଲି ମଲମ ବାହାର କରିଥିଲେ । ମେଙ୍କର ତଳକୁ ଯାଇ କେଉଁଠୁ ଗରମ୍ ପାଣି ଜଗ୍‌ଟିଏ ମାଗି ଆଣିଥିଲେ । ଶର୍ମିଷ୍ଠା ତା ବିଛଣାରେ ହାତ ପାଦ ଉଠେଇ ବସିଥିଲା । ଠିକ୍ ପରିଡା ମାଉସୀଙ୍କ ପାଖ ବିଛଣାଟି ତାର ବିଛଣା ଥିଲା । ସେତିକି ବେଳୁ ସେ ବିଛଣାରେ ବସି ବକ୍ ବକ୍ କରି ଚାଲିଥିଲା । ସାଙ୍ଗରେ ଥିବା ସବୁ ଲୋକ ଯଦିଓ ଏତେ ଦିନ ତା ବକ୍ ବକ୍ ଶୁଣିବାରେ ଅଭ୍ୟସ୍ତ ହେଇ ଯାଇଥିଲେ, କିନ୍ତୁ ଏଇ ସମୟରେ

ବସି ବକ୍ ବକ୍ କରିବାଟା କାହାରିକୁ ଭଲ ଲାଗିନଥିଲା । ତା କଥା ଶୁଣି ଆଜି ସୁଦ୍ଧା ଚୁପ ରହୁଥିବା ମେଜର୍ ଧମକେଇ ଦେଇଥିଲେ 'ଶର୍ମିଷ୍ଠା ଚୁପକର କେତେ ବକ୍ ବକ୍ କରୁଛୁ ।'

କିଛି ସମୟ ଆଗରୁ ଶର୍ମିଷ୍ଠା ସାଙ୍ଗରେ ଏକତ୍ର ବସି ଯାତ୍ରା କରୁଥିବା ହିନ୍ଦୀ ଭାଷୀ ଲୋକଟା ସଭିଙ୍କୁ ଦି ହାତରେ ଅଡେଇ ଯାଇ ବସିଥିଲା ପରିଡ଼ା ମାଉସୀଙ୍କ ଗୋଡ଼ ପାଖରେ ଓ କହିଥିଲା କିଛି ହେଇନି । ଦେଖିବେ ଏକ ମିନିଟରେ ଠିକ୍ ହେଇଯିବ । ତାପରେ ଗୋଟେ ହାତରେ ଗୋଇଠି, ଅନ୍ୟ ହାତରେ ପାଦ ଆଙ୍ଗୁଠିକୁ ମୁଠେଇ ଗୋଟେ ଝଟକା ଲାଗିବା ପରି ମୋଡ଼ି ଦେଇଥିଲା ।

ପରିଡ଼ା ମାଉସୀ ବିକଳରେ ମରିଗଲି ଲୋ କହି ଚିତ୍କାରଟେ କରିଥିଲେ । ତାଙ୍କ ଆଖିରୁ ଲୁହ ଧାରଟେ ବୋହି ଯାଇଥିଲା । ଘଟଣାଟା ଏତେ ଅଚାନକ ଘଟିଲା ଯେ କିଛି କହିବାକୁ କେହି ସୁଯୋଗ ପାଇନଥିଲେ । ଗରମ ପାଣି ଧରି ମେଜର ସେମିତି ଛିଡ଼ା ହେଇ ରହିଥିଲେ । ଗୌରୀ ମଲମଟି ଥରେ ଅଧେ ବୋଳିଥିଲା ପାଦରେ । କିନ୍ତୁ ଭଲ ଭାବରେ ମାଲିସ୍ କରିପାରି ନଥିଲା । କିଛି ସମୟ ପରେ ପରିଡ଼ା ମାଉସୀ ନିଜେ ଉଠି ବସିଥିଲେ ଓ କହିଥିଲେ ଦରଜଟା ଛାଡ଼ିଗଲା ଲାଗୁଛି । ସେ ନିଜେ ଏଥର ଗୋଡ଼କୁ ବିଭିନ୍ନ ଆଡ଼କୁ ବୁଲେଇ ସଙ୍କଖ କରିବାକୁ ଚେଷ୍ଟା କରିଥିଲେ ଓ କହିଥିଲେ ହଁ ହଁ ଛାଡ଼ିଗଲା । କେତେ ଜୋର୍‌ରେ ଶିରଟା ଟାଣି ଧରି ଥିଲା ଲୋ । ମେଜର୍ କହିଥିଲେ, ଯା ହେଉ ତଥାପି ସେ ମଲମ୍‌ଟା ମାଲିସ୍ କରି ପକାନ୍ତୁ, ନହେଲେ ପେଣ୍ଡାରୁ ଦରଜଟା ସହଜେ ଯିବନି ।

ପରିଡ଼ା ମାଉସୀ ମଲମଟାକୁ ଘଷି ଘଷି ଦେହରେ ମିଶାଉଥିଲେ । ଆସ୍ତେ ତାଙ୍କୁ ଘେରି ରହିଥିବା ଭିଡ଼ଟା ଭାଙ୍ଗି ଯାଇଥିଲା । ଶେଷ ପର୍ଯ୍ୟନ୍ତ ଗୌରୀ ବସି ରହିଥିଲା ତାଙ୍କ ପାଖରେ । ପ୍ରଫେସର୍, ଗୌରୀକୁ ଡାକି କହିଥିଲେ ଗଲୁ ଦେଖିବୁ ପଇସାପତ୍ର ଦେଇ କୋଉଠୁ ଗରମ ପାଣି ବାଲ୍ଟିଟେ ଯୋଗାଡ଼ ହେଇ ପାରିବ କି ? ଗୌରୀ ହସି ଚାଲି ଯାଇଥିଲା । ସମସ୍ତେ ଯେ ଯୁଆଡ଼େ ଚାଲିଗଲା ପରେ ପରିଡ଼ା ମଉସା ମୁହଁ ଫିଟେଇଥିଲେ, ଆଉ ଟିକେ ନାଟକ କଲୁନି । ଏଇ ଅଧାଟାରୁ କିଆଁ ନାଟକ ବନ୍ଦ କରିଦେଲୁ ? ତୋ ଫେଶନ୍ ଜମା ଯିବନି ପରା ।

ପରିଡ଼ା ମଉସାଙ୍କ ତାଚ୍ଛଲ୍ୟଭରା କଥା ଶୁଣି, ପରିଡ଼ା ମାଉସୀ ଭାବିଥିଲେ ମୋ କପାଳ । କପାଳ ନୁହଁ ତ ଆଉ କଣ ? ଏତେ ଲୋକ, କିଏ କୋଉଠୁଁ ଆସିଛି ନା ଚିହ୍ନା ନା ପରିଚୟ, ସଭିଏଁ ବ୍ୟସ୍ତ ହେଇ ଧାଁ ଦଉଡ଼ କରି ପକେଇଲେ, ଖାଲି ଇଏ ଗୋଟେ ମଣିଷ ହେଇଛନ୍ତି, ଛାଡ଼ ସେଥିରେ ପୁଣି ଛିଗୁଲେଇ ହଉଛନ୍ତି ମୁଁ ନାଟକ

କରୁଛି ବୋଲି । ପରିଡ଼ା ମଉସାଙ୍କୁ କିଛି କହିଲା ଭଳି ସାହସ କେବେ ସେ ଜୁଟେଇ ପାରି ନାହାନ୍ତି । ସାରା ଜୀବନଟା କେବଳ ତାଙ୍କ ଆଦେଶ ନିର୍ଦ୍ଦେଶ ମାନିବା ଛଡ଼ା ଯେମିତି କିଛି ଉପାୟ ହିଁ ନଥିଲା ।

ଜଳଖିଆ ଖାଇବା ପାଇଁ ଏପଟ ବଖରାରେ ଥିବା ସବୁ ସ୍ତ୍ରୀଲୋକଯାକ ବାହାରି ଯାଇଥିଲେ । ପରିଡ଼ା ମଉସା କହିଥିଲେ ଚାଲ୍ ଯିବୁ ଯଦି ।

ନା, ମୁଁ ଖାଇବି ନାହିଁ । ଦେହଟା ଜମା ଭଲ ଲାଗୁ ନାଇଁ । ତମେ ଯାଅ ଖାଇ ଆସିବ । ମୁଁ ଏଇଠି ବିସ୍କୁଟ ଦିଟା ଚୋବେଇ ଦେବି । ପରିଡ଼ା ମଉସା ଅପେକ୍ଷା କରି ନଥିଲେ । ତାଙ୍କ ରୋଷକଷାୟିତ ଆଖି ପରିଡ଼ା ମାଉସୀଙ୍କୁ ଯେମିତି ସାବଧାନ କରି ଦେଇଥିଲା, ବହୁତ ହେଇଗଲା, ଆଉ ନାଟକ କରିବୁ ନାହିଁ ।

ସମସ୍ତେ ଚାଲିଯିବା ପରେ ପରିଡ଼ା ମାଉସୀ ଗୋଡ଼ ହାତ ଲମ୍ବେଇ ଶୋଇ ପଡ଼ିଲେ । ବର୍ଷ ବର୍ଷ ଧରି ଛାତିରେ ବରଫ ପାଲଟି ଯାଇଥିବା ଦୁଃଖ ଝରଣା ହେଇ ବୋହି ଯିବାକୁ ଚାହେଁ ଯେମିତି । ସେ ଆସିଥିଲେ ଦେବଦର୍ଶନ କରିବେ । ମନରୁ ପୋଛି ପକେଇବେ ସବୁ ରାଗରୋଷ ଦୁଃଖକୁ । ଏ ସଂସାରରେ କଣ ଅଛି ଯେ । ମିଛ ମାୟାର ନାଟକ ଛଡ଼ା । କିଏ କାହାର ଏ ଦୁନିଆରେ । ମରିଗଲେ ଦିନ ଦଶଟାରେ କର୍ମ ସାରି, ନଖ କାଟି ପକେଇ ଶୁଦ୍ଧ ହେଇଯିବେ ଜ୍ଞାତି କୁଟୁମ୍ବ । ପୁଣି ନଖ କଅଁଳିବ, ବାଳ କଅଁଳିବ, ପୁଣି ବଂଶ ବଢ଼ିବ, ପୁରୁଣା ମଣିଷ ଯାକ ପାଶୋରି ହେଇ ଯିବେ । କେତେ ଦହଗଞ୍ଜ ସାରାଟା ଜୀବନ ହେଇ ନାହାନ୍ତି ସେ । ମର କହିଲେ ମରି ହେଉନି କି ବଂଚ କହିଲେ ଜୀଇଁ ପାରିଲେନି । ଚାରିଟା ପୁଅ, ତିନିଟା ଝିଅ ଜନମ କରିଥିଲେ । ବଡ଼ ପୁଅ ରାତି ଅଧିଆ ମରିଗଲା, କେହି ଜାଣିଲେନି, କେହି ସୋଷ୍ ଶବ୍ଦ ପାଇଲେନି । ଛାଡ଼ି ଦେଇଗଲା ତିନି ତିନିଟା ସନ୍ତାନ । ନାତୁଣୀ ତିନିଟାଙ୍କ ପାଇଁ ତାଙ୍କର ଯେତେ ଚିନ୍ତା । କେମିତି ସେଗୁଡ଼ା ମଣିଷ ହେବେ, ବାହାଚୋରା କରିବ ଏଇ ଚିନ୍ତା ଦିନରାତି ଖାଇ ଯାଉଛି ତାଙ୍କୁ । ବାକି ତିନିପୁଅଙ୍କୁ କହିଥିଲେ ସେ ଭାଇର ତିନିଝିଅଙ୍କୁ ତମେ ବାଣ୍ଟି ନିଅ । ପାଳିବ ପୋଷିବ ବାହାଚୋରା କରେଇବ । ନିଜ ରକତ । ତାଙ୍କୁ ହୀନିମାନ କରିବାକୁ ଛାଡ଼ି ଦିଅନି ।

ହେଲେ ମଣିଷଠୁଁ କିଏ ଆଉ ବେଶୀ ସ୍ୱାର୍ଥପର ଅଛି ? କୁକୁର ଥନରୁ ବିଲେଇ ଛୁଆ କ୍ଷୀର ପିଉଛି - ବାଘ କୋଳରୁ ହରିଣ ଛୁଆ ଉଷୁମ ନଉଛି ହେଲେ ମଣିଷ ଛୁଆଙ୍କୁ ମଣିଷ ଅନେଇଲା ବେଳକୁ ଟଙ୍କା କଉଡ଼ିର ହିସାବ ନିକାଶ କରୁଛି । ମୁହଁ ଫିଟେଇ କେହି କିଛି ନ କହିଲେ ବି ଛୁଆ ତିନିଟାକୁ ଆଦରିଲେନି । ସେ ଯେଉଁଦିନ ଆଖି ବୁଜିଦେବେ, କଣ ହେବ କେଜାଣି ଛୁଆ ଗୁଡାଙ୍କର । ବୋହୂଟା ଆଇ.ଏ.

ପାସ, ହିନ୍ଦୀରେ ରତ୍ନ କରିଛି । କିନ୍ତୁ ଆଜିକାଲି ଚାକିରୀ କୋଉଠି ମିଳୁଛି । ପରିଡା ମାଉସୀଙ୍କର ତାଙ୍କ ସ୍ୱାମୀଟି ଉପରେ ଆଦୌ ଭରସା ନଥିଲା । ବଡ଼ ଅବାଗିଆ ମଣିଷ । ମୁହଁରୁ ମିଠା କଥା ପଦୁଟେ ବାହାରିଲା ନାଇଁ । ଦିନେ କାଳେ ଧାନ ହଲର ଘର ଆଗକୁ, ଦାଣ୍ଡ ପଟ ଧଡା ପାଖ ବଉଳ ମୂଳେ ଘର ଦି ବଖରା ତୋଳି ଅଲଗା ରହିଲେଣି । ଆଜିକୁ ତିରିଶି ବର୍ଷ ହେଲା ଯେ, ଦିନକ ପାଇଁ ଭିତର ଖଞ୍ଜାରେ ପାଦ ଦିଅନ୍ତି ନାହିଁ । ତିରିଶି ବର୍ଷ ତଳେ କାନ ପଛ ପାଖେ ଧଳା ଛଉ ଖଣ୍ଡେ ଦେଖା ଦେଇଥିଲା ଆଗେ । ଦିନା କେତେ ଅବହେଳାରେ ଅବହେଳାରେ କଟିଗଲା । ତାପରେ କେଜାଣି କେମିତି ନାକ କାନ ନାଲି ପଡ଼ି ଆସିଲା । ଫୁଲା ଫୁଲା ବେଢଙ୍ଗିଆ ଦିଶିଲା । ଗାଁ ଲୋକେ ଫୁଟଫାଟ ହେଲେ । ସାହି ପଡ଼ିଶା ଖଞ୍ଜାକୁ ଆସିବା କମେଇ ଦେଲେ । ଗାଁ ଛାଡ଼ି କୁଆଡିକି ଗଲେ ନାଇଁ ସେ । ଲୋକେ ବାଛନ୍ଦ କଲେ । ବଡ଼ ହୀନସ୍ତାର ଦିନ । ଛୁଆଗୁଡା କିଏ କୋଳରେ, କାଖରେ । ସରମରେ ସେ ଆଉ ବାହାରକୁ ବାହାରିଲେ ନାହିଁ । ଦିନେ ସାହସ ବାନ୍ଧି ପରିଡ଼ା ମାଉସୀ ବାପ ଘରକୁ ଗଲେ । ଭାଇମାନଙ୍କ ପାଖରେ ନିଜ ଦୁର୍ଭାଗ୍ୟ କହି ଢେର କାନ୍ଦିଲେ । ବଡ଼ ଭାଇ କହିଲେ, ତାଙ୍କୁ ବୁଝେଇ ସୁଝେଇ ରାଜି କରା, କୁଷ୍ଠାଶ୍ରମରେ ଛାଡ଼ି ଆସିବା ।

କୁଷ୍ଠାଶ୍ରମରେ ଛାଡ଼ିବା କଥା ତାଙ୍କ ମନକୁ ପାଇଲା ନାହିଁ । ଏତେ ଦିନ ସାଙ୍ଗ ହେଇ ଘରସଂସାର କରିଛନ୍ତି । ଆଜି ସ୍ୱାମୀର ରୋଗ ହେଲା ବୋଲି କୋଢ଼ିଆଙ୍କ ଭିତରେ ଛାଡ଼ି ଦେବେ ? ପରିଡା ମାଉସୀଙ୍କ ସାନ ଭାଇର ବଡ଼ ନାଁ ହାକ, ହେଲେ ତାଙ୍କ ସାମ୍ନାକୁ ଯିବାକୁ ଡର ଲାଗେ ତାଙ୍କୁ । ତଥାପି ଗଲେ ସେ ତା ଖଞ୍ଜାକୁ । ଲୁଗା କାନିରେ ମୁହଁ ଲୁଚେଇ କାନ୍ଦିଲେ ଘଡ଼ିଏ । ମଝିଆଁ ଭାଇ ସବୁ ଶୁଣିଲା, କିଛି ଉତ୍ତର ଦେଲାନି । ତାର ଅଭ୍ୟାସ ସେମିତି । ଗମ୍ଭୀର ରହେ, ଶୁଣେ,ଆଶ୍ୱାସନାର ବାଣୀ ଶୁଣାଏନି । କିନ୍ତୁ ସାହାଯ୍ୟ କରେ ।

ଭାଉଜମାନେ ଜାଣିଲେ ସବୁକଥା । ମୁହଁରେ କିଛି କହିଲେନି । କିନ୍ତୁ ପଛଆଡ଼େ ଫୁସ୍‌ଫାସ୍ ହେଲେ । ଜୀବନରେ ସବୁ କିଛି କେତେ ଜଲଦି ବଦଳି ଯାଏ ଦେଖ । ଚାରି ଭାଇରେ ଗୋଟେ ଭଉଣୀ ଥିଲେ ସେ । ଚାରି ଭାଇଙ୍କ ନାଁରେ ଜମିବାଡ଼ି କଲାବେଳେ, ବାପା ତାଙ୍କ ନାଁରେ ମଧ ତିନି ଏକର ଜମି କରି ଦେଇଥିଲେ । ଭାଇମାନେ ବେଭାର ଚଳାଉଥିଲେ । କେବେ କେମିତି ବାପଘର ଆସିଲେ ଚାରି ଚାରିଟା ଶାଢ଼ୀ ନେଇ ଶାଶୁଘରକୁ ଲେଉଟୁଥିଲେ ସେ । ଯା ଘରେ ଦି ପହରେ, ତା ଘରେ ରାତି ଖାଇବା ପାଇଁ ଟାଣୁଥିଲେ ଭାଉଜମାନେ ଆଉ ଜଣେ ଜଣକ ନାଁରେ ଚୁଗୁଲି କରୁଥିଲେ । ସବୁ ଶୁଣୁଥିଲେ ସେ । ହେଲେ ଏ ଘର କଥା ସେ ଘରେ କି ସେ

ଘର କଥା ଏ ଘରେ କହୁ ନଥିଲେ । କଣ ଲାଭ, ସେ ଯାଉଁ ନ ଯାଉଁଣୁ ଭାଉଜ ଗୁଡା ମଝି ଅଗଣାରେ ଛିଡ଼ା ହେଇ କଳି କଜିଆ ଲାଗିବେ । ପରେ କହିବେ, ଆସିଥିଲା କଳି ଲଗେଇ ଦେଇ ଗଲା । ଅଥଚ ସେଇ ଭାଉଜମାନେ, ନଣନ୍ଦେଇକୁ ବଡ଼ ରୋଗ ହେଇଛି ବୋଲି କହି ଏକାଠି ଫୁଟୁରୁ ଫାଟୁରୁ ହେଲେ । ତାଙ୍କୁ ଦେଖିଲେ, ଆଡ଼େଇ ହେଇ ରହିଲେ ।

ତାଙ୍କୁ ଭଲ ଲାଗିନଥିଲା ଘଟଣାଟା । ବାପ ଘରୁ ପଳେଇ ଆସିଥିଲେ ଉଦାସ ହୋଇ । ଫେରି ଆସି କି କୋଉ ଶାନ୍ତି ? ବଡ଼ ଝିଙ୍ଗାସ ସହିବାକୁ ପଡ଼ିଥିଲା ତାଙ୍କୁ । ବାପ ଘରେ ପ୍ରଘଟ କରି ଆସିଲୁଟି ତୋ ଗେରସ୍ତକୁ କୋଢ଼ ହେଇଛି ବୋଲି ? ସେଇ ଦିନୁ ଜାଣି ତାଙ୍କ ଜୀବନର ସବୁ ସୁଖ ସରିଗଲା । ରାଗରେ ପିମ୍ପୁଡ଼ି ଗଦା ଉପରେ ଠିଆ କରେଇ ରଖିଥିଲା ଲୋକଟା । ଯମ ଯନ୍ତ୍ରଣା, ନର୍କ ଯନ୍ତ୍ରଣା କଥା ଶୁଣିଥିଲେ ସେ । ହେଲେ ସେଇ ପ୍ରଥମ ଭୋଗିଲେ ଜାଣ ନର୍କ ଯନ୍ତ୍ରଣାକୁ । ପିମ୍ପୁଡ଼ିଗୁଡାଙ୍କୁ ବା କି ଜଣା, ମଣିଷଟେ ଦଣ୍ଡ ପାଉଛି ବୋଲି ? ଦାନବୀ କି ରାକ୍ଷସୀଟେ କିଏ ତାଙ୍କ ବସା ଭାଙ୍ଗି ଦେଇଛି ଭାବି ଦେହମୁଣ୍ଡ କାମୁଡ଼ି ପଳେଇ ଦେଇଥିଲେ । ଆଉ ତାଙ୍କୁ ଦେଖ, ରାଣ ନିୟମର ଅଦୃଶ୍ୟ ବନ୍ଧନରେ ବନ୍ଧା ହୋଇ ରହିଲେ ସେଇଠି । ପିମ୍ପୁଡ଼ି ଗଦାରୁ ଟିକେ ହଲିଲେ ତୁ ମୋ ମୁଣ୍ଡ ଖାଇବୁ, ମୋ ରାଣ ରହିଲା । ଅଭିମାନରେ ଛାତି ଫାଟି ଯାଉଥିଲା ତାଙ୍କର । ଘଡ଼ିଏ କାଳ ପରେ ତ୍ରାହି ମିଳିଥିଲା ତାଙ୍କୁ ନର୍କ ଯନ୍ତ୍ରଣାରୁ । କୋଳ ଛୁଆଟା ଦୁଧ ପାଇଁ ହାଉଳୁଥିଲା । ବଡ଼ ଛୁଆଗୁଡା ଖାଇ ପିଇ ସ୍କୁଲ ପଳେଇଥିଲେ । କେହି ଦେଖିଲାନି ତାଙ୍କ ଦୁଃଖ । ଜୀଇଁ ରହୁ ରହୁ ସେ କେମିତି କୁମ୍ଭୀପାକ ନର୍କର ତତଲା କଡ଼େଇରେ ଛଣା ହେଇଗଲେ । ଆହା କରିବାକୁ କେହି ନଥିଲା ପାଖରେ ।

ମଝିଆ ଭାଇ ଡାକ୍ତର ନେଇ ଆସିଥିଲେ ସାଙ୍ଗରେ । ଡାକ୍ତର ବୁଝେଇଲା ଡରିବାର କିଛି ନାହିଁ । ଠିକ୍ ହେଇଯିବ ସବୁ । ଔଷଧପତ୍ର ଦେଲା । ତିହ ଖଣ୍ଡେ ବିକି ଦାଣ୍ଡ ପଟେ ଘର ଦି ବଖରା ତୋଳା ହେଲା । ସେଇଠିକୁ ବୁହା ହେଇଗଲା । ଅଲଗା ଖଟ, ଚଉକି, ବାସନ କୁସନ, ସପ ମସିଣା ଠୁ ପାନ ଡାଲା ଯାଏ । ଘରର ମଣିଷଟା ଘର ମଣିଷ ପରି ଅଲଗା ଠାଁ କଲା । ଆଉ ସଂସାର ଯାକର ଦାଉ ଦସ୍ତୁର ସହିଲେ ସେ । ଗଲା, ଆଇଲା, କିଏ ଖାଇଲା କିଏ ନ ଖାଇଲା । କିଏ ବାଧିକି ପଡ଼ିଲା ସବୁ କିଛି ବୁଝିଲେ । ତଥାପି ଜୀବନରେ ଶାନ୍ତି କାହିଁ ।

ଭାତ ଭୁଜା ତାହା ସବୁ ବୁହା ହେଇ ଯାଉଥିଲା ଦାଣ୍ଡପଟ ଘରକୁ । ଅଛବ ଥାଳିରେ ଢ଼ାଳି ଦେଲା ପରି, ଭାତ ତରକାରୀ ଓଜାଡ଼ି ଦେଉଥିଲେ ସେ ଅଲଗା ବାସନ ସବୁକୁ ।

ଖାଇ ସାରିଲା ପରେ ବାସନ ମାଜୁଥିଲେ, ଲଂଠନ କାଚ ପୋଛୁଥିଲେ, ଘରଟା ଓଳେଇ ଦେଉଥିଲେ । ଯଦି ସେ କାନରେ ତୁଳା ଗେଂଜି ଦାଣ୍ଡପଟ ଖଞ୍ଜାକୁ ଯାଉଥାନ୍ତେ ତାହାହେଲେ, ଖୁସି ଖୁସି ଫେରି ଆସୁଥାନ୍ତେ, କିନ୍ତୁ ସେମିତି କରୁନଥିବାରୁ ସବୁ ଦିନ କାନ୍ଦି କାନ୍ଦି ଫେରୁଥିଲେ ସେ ଦାଣ୍ଡପଟ ଘରୁ । ଗାଳୁରୁଗାଳୁରୁ ହେଇ ଗାଳି ଗଲାବେଳକୁ ଆସିଲା ବେଳ ଯାଏ କାନ ପାଖରେ ଫଟା ବାଇଦ ଭଳି ବାଜୁଥିଲା । ପ୍ରତିଦିନ ଶୁଣିଶୁଣି ଛାତି ପଥର ହେଇ ଯାଉଥିଲା ତାଙ୍କର । ବେକାର ବସିଲେ ମୁଣ୍ଡରେ ଯେତେ ଦୁର୍ବୁଦ୍ଧି । ଥରେ କହିଥିଲେ, ଏତେ ତ ବାପ ଘର ଟେକ ଦେଖେଇ ହେଉଛ, ତୋ ମା ନାଁରେ ଥିବା ପାଞ୍ଚ ଏକର ଜମିରୁ ଏକରଟେ ତୋ ଭାଗ ମାଗି ଆଣିବୁ ଭାଇମାନଙ୍କ ଠୁଁ । ଆଉ ମା କଣ ବଂଚିଛି ଯେ ସେ ସବୁ ଭୋଗ କରିବ ? ମା ସମ୍ପତ୍ତିରେ ଝିଅର ବଡ଼ ଭାଗ ।

ଏ କି କଥା ? ଭାଇମାନେ ପିଲାଗୁଡ଼ାଙ୍କ ପାଠଶାଠ ଖର୍ଚ୍ଚ ହାତ ଗୁଞ୍ଜା ପରି ମଝିରେ ମଝିରେ ଗୁଞ୍ଜି ଦେଇ ଯାଆନ୍ତି । ବିପଦ ଆପଦ ପଡ଼ିଲେ ପାଞ୍ଚ କୋଶ ବାଟରୁ ଧାଇଁ ଆସନ୍ତି । ଫେରାଦ୍ କଲେ ଅଳି ଅର୍ଦ୍ଦଳି ରଖନ୍ତି । କୋଉ ମୁହଁରେ ସେ ଭାଗ ମାଗିବେ ? ଏମିତିରେ ବି ଧାନ ଚାଉଳର ଅଭାବ ତ ନାହିଁ ତାଙ୍କର । ଟଙ୍କା କଉଡ଼ିର ଟାଣ ଟୁଣ ପଡ଼ିଯାଏ ଯାହା । ତାଙ୍କ ପାଦ ଉଠିଲା ନାଇଁ, ଭାଗ ମାଗି ଯିବା ପାଇଁ, ମୁହଁ ଫିଟିଲା ନାଇଁ । ସେ ଆଉ ଯାଇ ପାରି ନଥିଲେ ।

ଅଭି ବାପା ରାଗିଯାଇ ଦଣ୍ଡ ଦେଇଥିଲେ, ଗରମ ପାଣିରେ ହାତବୁଡ଼ା । ହଁ ହାତ ବୁଡ଼େଇଥିଲେ ସେ । ଅଭି ବାପା ଡହଡହ ଫୁଟୁଥିବା ଡେକ୍‌ଚିଏ ପାଣି ସାମ୍ନାରେ ତାଙ୍କୁ ହାତ ବୁଡ଼େଇବାକୁ ବାଧ କରିଥିଲେ ସେଦିନ, ନିଜର ଭାଇ ସୋହାଗର ପ୍ରାୟଶ୍ଚିତ ପାଇଁ । ସାହି ମାଇକିନା ପଚାରିଥିଲେ, କେମିତି ଜାକି ଦେଲୁ ହାତଟାକୁ ଏତେ ଜୋର୍‌ରେ ? ଫୋଟକା ପଡ଼ି ଯାଇଛି ହାତଟା ପୁରା । ସତ କଥା କଣ କହି ପାରିଥାନ୍ତେ ସେ ସଭିଙ୍କୁ ? କହି ଥିଲେ ଅଭି ବାପାଙ୍କ ପାଇଁ ଗରମ ପାଣି ନେଇ ଯାଉଥିଲି ଯେ ଢାଳିଗଲା । ଚାରି ଦିନ କାଳ ହାତରେ ଜିନିଷଟେ ଟେକି ଉଠେଇ ପାରିନଥିଲେ ସେ ।

ତଥାପି, ପ୍ରତି ସୋମବାର ଖାଡ଼ା ଉପାସ ରହି ଶିବ ଉପାସନା କରୁଥିଲେ ସେ, ଅଭି ବାପା କେମିତି ଭଲ ହେଇ ଯାନ୍ତୁ ବୋଲି । ଶିବ ପୂଜା କଣ ବ୍ୟର୍ଥ ଯାଏ କେବେ ? ବର୍ଷେ କେଇଟାରେ ଦେହ ହାତ ବାଗର ଦିଶିଲା । ଡାକ୍ତର କହିଲେ, ଡରିବାର କିଛି ନାଇଁ । ତେବେ ଆହୁରି କିଛି ଦିନ ଚିକିତ୍ସାରେ ରହିବେ । ସେ ରୁଦ୍ରାଭିଷେକ କରେଇଥିଲେ । ଭାବିଥିଲେ ରୋଗଟା ପାଇଁ ମନରେ ରାଗ ରଷା ଆସୁଥିଲା, ଦିହ

ଘା ଠିକ୍ ହେଇଗଲା ପରେ ସବୁ ଠିକ୍ ହେଇଯିବ ପରା ଆସ୍ତେ ଆସ୍ତେ । କିନ୍ତୁ କାହିଁ ! କ୍ରୋଧ କମିଲାନି କି ଭିତର ଖଞ୍ଜାରେ ପାଦ ଦେଲେନି ସେ ଆଉ । ବାହାର ଲୋକ ପରି ଖଞ୍ଜା ବାହାର ବାରଣ୍ଡାରେ ବସି, ମାମଲତକାରୀ କଲେ, ଗାଳି ଫଜିଲ କଲେ, ଖିଟଖିଟ କରେଇଲେ ପିଲାଗୁଡ଼ାକ ସଙ୍ଗେ । ବଦଳିଲେ ନାହିଁ ଆଦୌ ।

ପୁଅଗୁଡ଼ା କୁଆନ୍ ହେଇ ଯାଇଥିଲେ । ବଡ଼ ପୁଅ ଚାକିରୀ କରି ଚାକିରୀ କାହିଁକି ଛାଡ଼ିଲା ବୋଲି କମ୍ ବେଇଜତି ସହିଲାନି ବାପର । ଯା ତୋ ପିଲା ମାଇପ ନେଇ ପଳା ବୋଲି, ବୋହୂଟା ସାମ୍ନାରେ ପୁଅଟାକୁ ଗାଳି ଦେଉଥିଲେ । ପୁଅଟା ଦେବ ଅଂଶରେ ସବୁ ଶୁଣୁଥିଲା । କିନ୍ତୁ ପଦୁଟେ ହେଲେ ଉତ୍ତର ଦେଇନଥିଲା । ଚୁପ୍‌ଚାପ୍ ଯାଉଥିଲା ଧାନ ହଲବ୍, ଚୂଡ଼ା ହଲବ୍ ଘରେ ବସୁଥିଲା । କେତେବେଳେ କେମିତି ଚାକର ବାକର ସଙ୍ଗେ ମିଶି କାମ କରୁଥିଲା । ହେଲେ ସେଠି ବା କେଉଁ ଶାନ୍ତି ପାଉଥିଲା ସେ ? ଚାକର ବାକରଙ୍କ ସାମ୍ନାଟାରେ ଯାଛାତା ବକି ଯାଉଥିଲେ ସେ । ଗଧଟା ଅଳସୁଆଟା ମାଇପ ମୋହ ଛାଡ଼ି ବାହାରକୁ ଯାଇ ପାରୁନି । ବୁଢ଼ା ବାପର ରୋଜଗାରରେ ବସି ବସି ଖାଉଛି । ହଜାର ହଜାର ଟଙ୍କା ଖର୍ଚ୍ଚ କରି ପାଠ ପଢ଼େଇଲି ସବୁ ଚୁଲିକୁ ଗଲା । ଶନି ଚଳନ୍ତି ତାର, ନହେଲେ କଲମ ଚାଷ ଛାଡ଼ି ଆସି ଗୋଡି ଖଟନ୍ତା କାଇଁକି ?

ମା ହେଇ ମଧ୍ୟ ସେ ବୁଝି ପାରିନଥିଲେ, ଅଭିଟା ଚାକିରୀ ଛାଡ଼ି ଆସି ଗାଁରେ ବସିଲା କିଆଁ ? ଲୁହ ପୋଛିଥିଲେ ପରିଡ଼ା ମାଉସୀ । ଆଉ ଚିନ୍ତା କୋଉଥିପାଇଁ । ପୁଅ ତ ରହିଲା ନାଇଁ । ଚାକିରୀଟା ଛାର । ଯେତିକି ଦିନକୁ କଷ୍ଟ କରି ଆସିଥିଲା, ସେତିକି ଦିନରେ ଚାଲିଗଲା ।

ଗୌରୀ ପ୍ଲେଟଟିଏରେ ପକୁଡ଼ି ଆଉ ଚା ଗ୍ଲାସଟିଏ ଆଣି ପହଞ୍ଚିଥିଲା ତାଙ୍କ ପାଖରେ । ପାଦ ଶବ୍ଦ ଶୁଣି ପରିଡ଼ା ମାଉସୀ ଲୁହ ପୋଛି ଉଠି ବସିଥିଲେ । ଆଖିଗୁଡା ତାଙ୍କର କାନ୍ଦି କାନ୍ଦି ଲାଲ ପଡ଼ି ଯାଇଥିଲା । ଗୌରୀ ପଚାରିଥିଲା, ମାଉସି, ଗୋଡ଼ଟା ଭାରି କଷ୍ଟ ହେଉଛି କି ?

ନାଇଁରେ ଧନ ମୋର, କହି ଗୌରୀର ମୁଣ୍ଡ ବାଳକୁ ସ୍ନେହରେ ଆଉଁସି ପକେଇଲେ ପରିଡ଼ା ମାଉସୀ । କେତେ ଆଉ କେତେ କଥା ମନେ ପଡ଼ିଗଲା ତ ଆଖିରେ ପାଣି ଜକେଇ ଆସିଲା । ତମେ ତୀର୍ଥ କରି ଆସିଛଟି ମାଉସୀ ? ଭଗବାନଙ୍କୁ ଧ୍ୟାନ କରିବା ଛାଡ଼ି କି ମାୟା ମୋହରେ ପଡ଼ିଛ ଯେ ? ପୁରୁଣା କଥା, ପିଛିଲା କଥା ଭୁଲି, ଭଗବାନଙ୍କ ଶରଣରେ ରହିବା ପାଇଁ ପରା ଲୋକେ ତୀର୍ଥ କରନ୍ତି ।

ଠିକ୍ କହିଲୁରେ ଧନ, ଛୁଆଟିଏ ହେଲେ କଣ ହେବ ଅସଲ କଥା କହିଲୁ ? ଠାକୁରଙ୍କ ଶରଣ ଛଡ଼ା ଏ ମାୟା ମୋହ ସଂସାରରେ କଣ ବାକି ଅଛି ? ହେଲେ ପିଛିଲା ଜୀବନ ବଡ଼ କୁତୁରୁପିଆ । ଛାଇଟା ଲେଖେଁ ପଛେ ପଛେ ଗୋଡ଼େଇ ଥାଏ । ବଡ଼ ସଉତୁଣୀ ଜାଣ । ଗୋଟେଆଡ଼େ ଠାକୁରେ ଡୋର ଟାଣୁଥିବେ, ଆଉ ଗୋଟେଆଡ଼େ ପିଛିଲା ଜୀବନ । ଯିଏ ପିଛିଲାକୁ ଛାଡ଼ି ଆଗକୁ ଧାଇଁଲା, ସିଏ ଜାଣ ସଂସାର ସାଲତକ ପାଇଲା ।

ହଉ ହେଲା, ଏଥର ଜଳଖିଆଟା ଖାଇଦିଅ । ଯାହା କୁହ ମାଉସୀ, ମଉସାଟା କିନ୍ତୁ ବଡ଼ ଟିଙ୍ଗା ।

ପରିଡ଼ା ମାଉସୀ କିଛି ଉତ୍ତର ଦେଇନଥିଲେ । ନିରବରେ ପକୁଡ଼ି ଚା ଖାଇଥିଲେ । ଗୌରୀ କହିଥିଲା, ଗୋଟେ କଥା କହିବି ମାଉସୀ, ମୋର ଏଇଠି ଆଉ ମନ ଲାଗୁନି । ତମ ମାନଙ୍କ ସାଙ୍ଗରେ ରହିରହି ଖାଲି ମଠ ମନ୍ଦିର ବୁଲା । ସବୁଠିଁ ସେଇ ଏକା ଭଳି ମନ୍ଦିରଟେ କି ମଠଟେ ଥିବ । ତାକୁ ଘେରି ଗୋଟେ ଲମ୍ବା ପୌରାଣିକ କାହାଣୀଟେ ଥିବ । ଦକ୍ଷ ପ୍ରଜାପତିର ମାୟାପୁରୀଠୁଁ ବ୍ୟାସମୁନି ତାଙ୍କ ବାପ ପରାଶର ଯାଏଁ । ସତରେ ଏସବୁ ଲୋକମାନେ କେବେ ଥିଲେ ନା କବି କଳ୍ପନା ମ ? ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ବୋଲି ସତକୁ ସତ ତିନିଟା ଠାକୁର କିଏ ଅଛନ୍ତି ନା, ମଣିଷ ଅନୁଭବ କରୁଥିବା ତିନୋଟି ଅବସ୍ଥା ସବୁବେଳେ ତା ପାଇଁ ବିସ୍ମୟ ହେଇ ରହିଥିବାରୁ ଓ ଯାହାର କାର୍ଯ୍ୟ କାରଣ ସେ ଖୋଜି ବାହାର କରି ପାରୁନଥିବାରୁ ସେଇ ସବୁ ପାଇଁ ତିନି ଠାକୁରଙ୍କୁ ମଣିଷ ତିଆରି କରିଛି ।

ତୁ ପାଗଳାଙ୍କ ପରି କଣ କହୁଛୁ କିରେ । ମୁଁ କିଛି ବୁଝୁନି ତୋ କଥା । କହିଥିଲେ ପରିଡ଼ା ମାଉସୀ ।

ମୁଁ ଅତି ସାଧାରଣ କଥା କହୁଛି ମାଉସୀ, ଧର ମଣିଷ ଜନ୍ମ ନେଉଛି, ସୃଷ୍ଟି ହେଉଛି ଯେମିତି ଅନେକ ଜୀବଜନ୍ତୁ କୀଟ ପତଙ୍ଗ ଜନ୍ମ ନେଉଛନ୍ତି କିମ୍ୱା ସୃଷ୍ଟି ହଉଛନ୍ତି । ହେଲେ କାହିଁକି ହଉଛି, କୋଉଥି ପାଇଁ ସୃଷ୍ଟି ହଉଛି, ତାର ଉତ୍ତର କିଛି ଖୋଜି ପାଇଲା ନାହିଁ । ତେଣୁ ଭଗବାନ ସୃଷ୍ଟି କରୁଛନ୍ତି ବୋଲି ମାନି ନେଇ ବ୍ରହ୍ମାଙ୍କୁ ସୃଷ୍ଟିକର୍ତ୍ତା ବୋଲି ନାଁ ଦେଇା ମଣିଷ । ଥରେ ଜନ୍ମ ନେଇ ଯେତେବେଳେ ଏତେ ଗୁଡ଼ିଏ ବର୍ଷ ବଞ୍ଚିରହୁଛି ସେ, ବର୍ଷା, ଖରା, ଶୀତ ସହୁଛି, ସନ୍ଧ୍ୟା ସକାଳ ଦି ପହର ଦେଖୁଛି, ଦିନ ରାତି ଆସୁଛି ଯାଉଛି ରାଗ ରୋଷ ହିଂସା ରହୁଛି ତାର, ଭୋକ ହଉଛି, ଶୋଷ ହଉଛି, ଜୀବନ ସାରା କେତେ ଲୋକଙ୍କୁ ଭେଟୁଛି, କେତେ ନୂଆ ମଣିଷକୁ ପାଉଛି, କେତେକଙ୍କୁ ହରାଉଛି, ଏତେ ସବୁ ଘଟଣା । ତାକୁ ଲାଗୁଛି ତା ଭଳି ଛୋଟିଆ

ମଣିଷଟାର ବା ଶକ୍ତି କେତେ ଯେ ସେ ଏତେ ବଡ଼ ଜୀବନକୁ ନିୟନ୍ତ୍ରଣ କରିବ ? ସେ ଚାହିଁ କରି ତ ସୁଖକୁ ଧରି ରଖି ପାରୁନି, ନ ଚାହିଁ ମଧ ଦୁଃଖଗୁଡ଼ା ଆସୁଛି ସେଥିଲାଗି ଆଉ କେହି ଜଣେ କେହି ଦାୟୀ । ସେ ଆଉ କେହି ନୁହଁ, ଭଗବାନଙ୍କ ଛଡ଼ା । ସେ ହି ପାଳୁଛି, ତା ନାଁ ଦେଲା ମଣିଷ ବିଷ୍ଣୁ । ମୃତ୍ୟୁ ଠୁ ଆଉ ବଡ଼ ବିସ୍ମୟ ମଣିଷ ପାଇଁ ଆଉ କଣ କହିଲ ? ଜନ୍ମ ରହସ୍ୟ ତା ପାଖରେ କିଛି କିଛି ସ୍ୱଷ୍ଟ, ଅଣ୍ଡା ଫଟେଇ ଚଢ଼େଇ ଛୁଆ ବାହାରିଲା, ସେମିତି ମଣିଷ ଯୋନିରୁ ମଣିଷ । ସଂସାରର ସୁଖ ଭୋଗ କଥାର ଅର୍ଥ ଖୋଜୁ ଖୋଜୁ ବୁଝିଲା ଯେ, ଯେମିତି କର୍ମ କରିଲି ସେମିତି ଫଳ ପାଇଲି । ହେଲେ ମୃତ୍ୟୁ ? ଚାହୁଁ ଚାହୁଁ ମଣିଷ ମରିଯାଏ ଅଚାନକ । ବୟସ ଅବୟସ, ରୋଗ ବଇରାଗ, ସୁସ୍ଥତା, ଅସୁସ୍ଥତା, ଦୁର୍ଘଟଣା, ଘଟଣା ସବୁ ଗୋଟେ ଆଡ଼େ, ମୃତ୍ୟୁ ଆଉ ଗୋଟେ ଆଡ଼େ । ବୟସ ହେଇନଥାଏ ବାପା ମା ପାଚିଲା ଫଳ ପରି ବସିଥାନ୍ତି, କଷି ଫଳ ଭଳି ପୁଅଟା କାହିଁକି ଝଡ଼ିପଡ଼େ ? ବେଦୀଖୁଣ୍ଟ ଖୋଲା ହେଇନଥାଏ, ବୋହୂଟେ କାହିଁକି ମଥାରୁ ସିନ୍ଦୁର ପୋଛେ ? ଏମିତି ଅଚାନକ ମୃତ୍ୟୁ ସବୁ କାହିଁକି ପହଁଚିଯାଏ ? ଚୁପଚାପ କିଏ ଆସି ଟାଣି ନେଇଯାଏ ଜୀବନ ? ନିଥର କରି ଦେଇଯାଏ ଦେହକୁ । ଏଇ ଯେଉଁ ମଣିଷର ଜୀବନ, ମଲା ପରେ କୁଆଡ଼େ ଯାଏ ? ଅଛି କି ଆଉ ଗୋଟେ ପୃଥିବୀ ଅନ୍ୟ କେଉଁଠି ? ଏ ରହସ୍ୟ ଅଜଣା ରହିଯାଏ । ମଣିଷ ଭାବି ପାରେନି ମୃତ୍ୟୁଠୁ ଆଗକୁ । ତା ଚିନ୍ତାର ଦଉଡ଼ ସେତିକିଯାଏଁ । ତାପରେ ସେ ସମର୍ପି ଦେଲା ଭଗବାନଙ୍କୁ । ସେ ହିଁ ସବୁ କରନ୍ତି, ସବୁ ଜାଣନ୍ତି । ମଣିଷ ନା ଦେଲା ତାର ମହେଶ୍ୱର । ମହା ଈଶ୍ୱର । କାରଣ ମୃତ୍ୟୁ ତା ପାଇଁ ମହାପ୍ରଶ୍ନ ହେଇଥିଲା ।

ପରିଡ଼ା ମାଉସୀ ତାଜୁବ ହେଇ ଦେଖୁଥିଲେ ଗୌରୀକୁ । ପିଲାଟା ପାଠଶାଠ ପଢ଼ିଛି ନିଶ୍ଚୟ । ନହେଲେ ଏତେ ଜ୍ଞାନର କଥା ଆସନ୍ତା କୁଆଡୁ ? ସେ ନିଜେ ସାତ ସାତଟା ପିଲା ଜନ୍ମ କରିଛନ୍ତି । ପାଠ ପଢ଼େଇଛନ୍ତି ସମସ୍ତଙ୍କୁ । ପେଟରୁ କାଟି ହଷ୍ଟେଲରେ ଛାଡ଼ି ଆହୁରି ଆହୁରି ବେଶି ପ[illegible]ଇଛନ୍ତି ପିଲାମାନଙ୍କୁ । ସଭିଏ ଚାକିରୀ କରିଛନ୍ତି, ସଂସାର କରିଛନ୍ତି । ଦିନକ ପାଇଁ ତ କେହି ପାଖରେ ବସି ଗ୍ରମର କଥା କହି ନାହିଁ । ଏତିକି ଦିନ ଧରି ସେ ଗୌରୀକୁ ପ୍ରଫେସରଙ୍କ ବୋଲହାକ କଲା ଚାକର ଭାବିଥିଲେ । କିନ୍ତୁ ସେ ମାମୁଲି ଚାକର ନୁହେଁ । ସେ ଭଲ ଘରର ପିଲା ହେଇଥିବ ନିଶ୍ଚୟ । ରୂପ ଯେମିତି ଗୁଣ ବି ସେମିତି । ପରିଡ଼ା ମାଉସୀ ପଚାରିଥିଲେ ତୁ ଏତେ ଗୁଣର କଥା ଶିଖିଲୁ କୋଉଠୁରେ ପୁଅ ?

ଗୌରୀ ହସି ଦେଇ କହିଥିଲା: ମୁଁ କଣ ତୁଚ୍ଛାକୁ ପ୍ରଫେସର ଘରେ ରହିଛି ?

ତମେ ସେଇ ଗପଟା ଶୁଣିବ ? ଦିଇଟି ପୋଷାପକ୍ଷୀ ଥିଲେ ଗୋଟେ ସଜ୍ଜନ ଘରର ଅନ୍ୟ ଚୋର ଘରର । ସଜ୍ଜନ ଘରର ପକ୍ଷୀଟି ଘରକୁ ଅତିଥିଟିଏ ଆସିବାର ଦେଖୁଥିଲେ କହୁଥିଲା, ପାଣି ଦିଅ, ଆସନ ଦିଅ । ଆଉ ଚୋର ଘରର ପକ୍ଷୀଟି ଘରକୁ ଆସୁଥିବା ଅତିଥିକୁ ଦେଖିଲେ ପଞ୍ଜୁରୀ ଭିତରୁ ରଡ଼ି ଛାଡୁଥିଲା ଧର, ଧର, ମାର ମାର ।

ପରିଡ଼ା ମାଉସୀ ଦେଖିଲେ ପ୍ରଫେସର ଦୁଆର ବନ୍ଧ ପାଖରେ ଛିଡ଼ା ହେଇଛନ୍ତି । ଏ ବଖରାଟିରେ ଖାଲି ସ୍ତ୍ରୀଲୋକମାନେ ରହୁଥିବାରୁ ଭିତରକୁ ସେ ଆସି ପାରୁନଥିଲେ । ପରିଡ଼ା ମାଉସୀ କହିଲେ, ଆରେ ଗୌରୀ, ଦେଖିଲୁ ତୋତେ ପ୍ରଫେସର ଖୋଜୁଛନ୍ତି ନାଁ କଣ ?

ଗୌରୀ କହିଥିଲା, ମୁଁ ବେଡ଼ିଂଟା ଖୋଲି ତାଙ୍କ ବିଛଣା ବିଛେଇ ନାହିଁ ତ, ସେଇଥିପାଇଁ ଖୋଜୁଥିବେ କି କଣ । ଯାଉଛି ତାହେଲେ ।

ହଉ ଯା, ଯାରେ ଧନ, ତୋତେ ମହାପ୍ରଭୁ ପରମାୟୁ ଦେଇଥାନ୍ତୁ । କହିଥିଲେ ପରିଡ଼ା ମାଉସୀ ।

ପରମାୟୁ ? ଚାଲି ଯାଉଯାଉ ବୁଲିପଡ଼ି ପଚାରିଥିଲା ଗୌରୀ । ତମେ ଆଶୀର୍ବାଦ ଦେଉଛ ନା ଅଭିଶାପ, ମାଉସୀ ? ତାପରେ ହସି ହସି କହିଥିଲା, ତମେ ତ ମୋଠୁଁ ବେଶୀ ଦିନ ଜୀଇଁଲଣି ମାଉସୀ, ବେଶୀ ପରମାୟୁ ପାଇ ବେଶୀ ସୁଖ ପାଇଛ ?

---

ରୁଦ୍ରପ୍ରୟାଗର ରୁଦ୍ରରୂପ ଆଦୌ ଭୁଲି ପାରୁନଥିଲେ ପ୍ରଫେସର ମହାପାତ୍ର । ରୁଦ୍ରେଶ୍ୱର ମନ୍ଦିରଟି ସେମିତି ବିରାଟ ନଥିଲା । କିନ୍ତୁ ପ୍ରକୃତିର ମହାବିରାଟ ରୂପ ସତେ ଯେମିତି ପ୍ରକୃତି ପୁରୁଷର ମିଳନସ୍ଥଳ ସେଇଟା । ପ୍ରଫେସର ମହାପାତ୍ର ପ୍ରକୃତିର ବିଭିନ୍ନ ରୂପ ଦେଖିଛନ୍ତି । କିନ୍ତୁ ମନ୍ଦାକିନୀ ଓ ଅଳକାନନ୍ଦାର ମିଳନ ଦୃଶ୍ୟ ତାଙ୍କୁ ବିସ୍ମୟାଭିଭୂତ କରି ପକେଇଥିଲା । ସେ ଅନୁଭବ କରିଥିଲେ, ଈଶ୍ୱର ଯଦି କେଉଁଠି ଥାନ୍ତି — ପ୍ରକୃତରେ କେଉଁଠି ରହୁଥାନ୍ତି — ତେବେ ସେ ଏଇଠି । ଏଇ ବିରାଟ ରୂପରେ । ବୁଝି ପାରିଥିଲେ, କାହିଁକି ସତ୍ୟର ସନ୍ଧାନରେ ମନିଷୀଗଣ ଧାଇଁ ଆସନ୍ତି ହିମାଳୟ କୋଳକୁ । କାହିଁକି ଏତେ ଗୁଡ଼ିଏ ପୁରାଣ ଓ କିମ୍ବଦନ୍ତୀର କାହାଣୀ ଗଢ଼ି ଉଠିଛି ଏଇ ମାଟିକୁ ନେଇ । କାହିଁକି ଥରେ ଏ ମାଟିରେ ପାଦ ଦେଲେ ଆଉ ଫେରିଯିବାକୁ ଚାହେଁ ନାଇଁ ମନ ।

ମନ୍ଦାକିନୀ ଓ ଅଳକାନନ୍ଦର ମିଳନରୁ ସୃଷ୍ଟ ଭୀଷଣ ଗର୍ଜନ, ମନରେ ଶଙ୍କା,

ଆବେଗ ଓ ଭୟାବହତା ଆଣେ । ଅସ୍ତମିତ ହେଇଯାଏ ଅହଂକାର । କିଏ ଜାଣେ ଆଉ କଣ ରହିଛି ଦେଖିବା ପାଇଁ ଆଗକୁ ଆଗକୁ । ଯେ ତ ହିମାଳୟକୁ ଯିବାକୁ ପ୍ରଥମ ଦ୍ୱାର ଦେଶ । ତାଙ୍କର ଏଇ ଜାଗାକୁ ଆହୁରି ଅନେକ ପୂର୍ବରୁ ଆସିବାର ଉଚିତ ଥିଲା । ଅଯଥା ବ୍ୟୟ କରି ଦେଲେଣି ଜୀବନଟାକୁ ମାନ ଅଭିମାନ ମେଲୋଡ୍ରାମାରେ । ଅର୍ଦ୍ଧାଧିକ ଜୀବନ ତାଙ୍କର କଟିଗଲା ଖାଲି ଉଦାସୀପଣରେ ଯାହା ହବାର ନଥିଲା ଆଦୌ । ମଣିଷ ଉଦାସ  ହେଲେ ନିଃସଂଗତା ତାକୁ ଖାଇଯାଏ । ଲାଗେ ଜୀବନରେ କିଛି ପାଇଲା ନାହିଁ । ଅପ୍ରାପ୍ତିବୋଧରେ ମନ ଅବସନ୍ନ ହେଇଯାଏ । କିନ୍ତୁ ନିଃସ୍ୱତାର କାରଣ ମଣିଷ ନିଜେ ହିଁ । ସେ ନିଜ ଜୀବନକୁ ପୂର୍ଣ୍ଣ କରି ପାରେନା । ପୂର୍ଣ୍ଣ କରିବାକୁ ଚାହେଁନା । ସଂସାରର ଯାବତୀୟ ନୀତିନିୟମ ଶୃଙ୍ଖଳର କବଳରେ ପଡ଼ି, ସୁଖରୁ ବଂଚିତ ହୁଏ । ଶେଷରେ ଜୀବନଟା କେବଳ ଏକ ସଂବେଦନା, ଅନୁଭୂତ ରହିତ ଜୀଅନ୍ତା ଶବ ଛଡ଼ା କିଛି ହିଁ ହେଇ ରହେନା ।

ଥରେ କୋଉଠି ଗୋଟେ ସେ ପଢ଼ିଥିଲେ, ଜୀବନରେ ସଂପୃକ୍ତି ବୋଧହିଁ ଦୁଃଖ ପାଇବାର ମୂଳ କାରଣ । ତେଣୁ ଅସଂପୃକ୍ତି ଭିତର ଜୀବନ ଜୀଅଁ ଯେ ଦୁଃଖ ପାଇବ ନାହିଁ । ମନକୁ ପାଇଥିଲା କଥାଟି ବେଶ୍ । ଚାରିପଟର ଶୃଙ୍ଖଳକୁ ଢ଼ିଲା କରିବାକୁ ଚେଷ୍ଟା କରିଥିଲେ । ଯଦିଓ ସାମାଜିକ ଶୃଙ୍ଖଳରୁ ନିଜକୁ ସଂପୂର୍ଣ୍ଣ ମୁକ୍ତ କରିବା ଅସଂଭବ ସେ ଜାଣିଥିଲେ । ସାମାଜିକ ଶୃଙ୍ଖଳରୁ ମୁକ୍ତ ହେବା ପାଇଁ ତାଙ୍କ ସାମ୍ନାରେ କେବଳ ଗୋଟେ ଉପାୟ ଥିଲା, ତା ଥିଲା ଅସଂପୂର୍ଣ୍ଣ । ଅସଂପୂର୍ଣ୍ଣ କଥାଟି କହିବା ଯେତେ ସହଜ, କରିବା ତତୋଽଧିକ କଷ୍ଟକର ଥିଲା । ଆଜି ସୁଦ୍ଧା ସୁରଭି ଓ ତାଙ୍କ ଭିତରେ ଯାହା ଯାହା ଘଟି ଆସିଥିଲା ତା କେବେ ମାନସିକ ସଂପୃକ୍ତି ପାଇଁ । ସୁରଭିର ପ୍ରତିଟି କଥା ଓ କାର୍ଯ୍ୟକଳାପକୁ ସେ ଗୁରୁତ୍ୱର ସହ ତଉଲୁଥିଲେ । ସୁରଭିର ସୌନ୍ଦର୍ଯ୍ୟ ଓ ବ୍ୟକ୍ତିତ୍ୱ ତାଙ୍କ ପାଇଁ ଗର୍ବର ବିଷୟ ଥିଲା ।  ସେ ସୁରଭିକୁ ହାତ ଛଡ଼ା କରିବାକୁ ଚାହୁଁ ନଥିଲେ କେବେ । ଏପଟେ ସୁରଭି ପାଖରେ ଦାସତ୍ୱ ତାଙ୍କ ପୌରୁଷ ପାଇଁ ଥିଲା ପ୍ରଚଣ୍ଡ ଆଘାତ । ତାଙ୍କ ଅହଂକାର ଖଣ୍ଡ ବିଖଣ୍ଡିତ  ହେଉଥିଲା ପ୍ରତି ମୁହୂର୍ତ୍ତରେ । ତେଣୁ ଯେତିକି ସମୟ ଦିହେଁ ସାମ୍ନାସାମ୍ନି ହେଉଥିଲେ, ପ୍ରଚଣ୍ଡ ଝଗଡ଼ା ଛଡ଼ା କିଛି ହିଁ ନିଷ୍କର୍ଷ ବାହାରୁନଥିଲା । ପିଲାମାନେ ସବୁ ସମୟରେ ମାଙ୍କୁ ନିର୍ଦ୍ଦୋଷ ଭାବୁଥିଲେ । ସେ ଯେ ଗୋଟେ ଝଗଡ଼ାଳୁ ଓ କଳୁହା ଲୋକ, ମୁହଁରେ ନ କହିଲେ ମଧ ପ୍ରମାଣିତ କରିବାକୁ ଚାହୁଁଥିଲେ ସେମାନେ ବିଭିନ୍ନ ଉପାୟରେ ।

ପ୍ରକୃତରେ ସେ କଣ ବଡ଼ ଝଗଡ଼ାଳୁ ସ୍ୱଭାବର ହେଇ ଯାଇଥିଲେ ? ସମସ୍ତଙ୍କ କଥାବାର୍ତ୍ତା, ଜୀବନଯାପନ ଶୈଳୀ ତାଙ୍କୁ ବିରକ୍ତିକର ଲାଗୁଥିଲା । ପ୍ରତି ମୁହୂର୍ତ୍ତରେ

ତାଙ୍କ ମନ କହୁଥିଲା ବିରୋଧ କରିବା ଉଚିତ । ଗୋଟେ ଘରେ ରହୁଥିଲେ ସେମାନେ । ଅଥଚ ପରସ୍ପରଙ୍କ ଭିତରେ ଆକାଶ ପାତାଳର ଦୂରତ୍ୱ ଥିଲା । ସୁରଭି ଓ ସେ ଗୋଟେ ବିଛଣାରେ ହିଁ ଶୋଉଥିଲେ । କିନ୍ତୁ କିଏ କେତେବେଳେ ବିଛଣାକୁ ଲାଗିଲା କିମ୍ବା କିଏ କେତେବେଳେ ବିଛଣା ଛାଡ଼ିଲା, ଜଣା ନଥିଲା କାହାକୁ । ସୁରଭି ଦିନରାତି ଚବିଶି ଘଣ୍ଟା ନିଜକୁ ବ୍ୟସ୍ତ କରି ରଖିଥିଲା ନିଜ କାମରେ । ସକାଳ ସାଢ଼େ ସାତରୁ ସୁରଭି ବାହାରି ଯାଉଥିଲା ଘରୁ । ଆଇଡ଼ିଆଲ୍ ନର୍ସିଂହୋମ୍ ସହ ତାର ଚୁକ୍ତିଥିଲା । ସକାଳ ଇନ୍‌ଡୋର ରାଉଣ୍ଡଟା ସେ ହିଁ କରିବ । ସେଠି ରୋଗୀମାନଙ୍କୁ ଦେଖି, ସେ ସେଇଆଡୁ ଚାଲି ଯାଉଥିଲା ଡାକ୍ତରଖାନା । ଘରକୁ ଫେରିଲାବେଳକୁ ଅଧିକାଂଶ ଦିନ ରହୁନଥିଲେ ପ୍ରଫେସର ମହାପାତ୍ର । କେବଳ ରବିବାରକୁ ଛାଡ଼ିଦେଲେ ଅନ୍ୟ ଦିନମାନଙ୍କରେ ଏଇ ସମୟରେ ସାକ୍ଷାତ ଅସମ୍ଭବ ଥିଲା । ଦିନେ ଦିନେ ଦିପହର ଖାଇବା ମଗେଇ ଦଉଥିଲା ସୁରଭି । କିମ୍ବା ନିଜ ପାଇଁ ଅନ୍ୟ କେଉଁଠି ଖାଇବାର ବ୍ୟବସ୍ଥା କରି ନଉଥିଲା ସେ । ଅପରାହ୍ନକୁ ରାତି ନଅଟା ତାର ବିତୁଥିଲା କ୍ଲିନିକ୍‌ରେ । ଘରକୁ ଫେରୁଫେରୁ ରାତି ଦଶଟା । ବେଳେବେଳେ ଘରେ ପହଞ୍ଚି ଶାଢ଼ୀ ପାଲଟିବା ଆଗରୁ, ଏମର୍ଜେନ୍ସି ଡାକରା ପାଇ ବାହାରି ଯିବାକୁ ପଡୁଥିଲା ତାକୁ । ବେଳେବେଳେ ରାତି ଅଧରେ ନିଦ ଭାଙ୍ଗିଗଲେ ଦେଖୁଥିଲେ ପ୍ରଫେସର ମହାପାତ୍ର, ତାଙ୍କ ପାଖ ବିଛଣା ଖାଲି ପଡ଼ିଛି । ମନ ବିଦ୍ରୋହ କରି ଉଠୁଥିଲା । ନିଃସଂଗତା ପଛରେ ଗୋଡ଼ଉଥିଲା । ମନେ ପଡ଼ି ଯାଉଥିଲା ବିବାହ ପର ପ୍ରଥମ ଦିନ ଗୁଡାକ । ଛୋଟଛୋଟ ସହରରେ ଛୋଟ ଛୋଟ ଆକାଂକ୍ଷା ନେଇ ଜୀଉଁଥିଲେ ସେମାନେ । ପରିବାରଟି ବୃତ୍ତଟିଏ ପରି ବାନ୍ଧି ହେଇ ରହିଥିଲା । କେମିତି କାମ ସାରି ଜଲ୍‌ଦି ଘରକୁ ଫେରିବେ, ପୁଅ ଦିହିଙ୍କୁ ଟ୍ୟୁସନ ମାଷ୍ଟର ପାଖରେ ବସେଇ ଦେଇ ଫାଷ୍ଟ ଶୋ ଫିଲ୍ମ ଦେଖିଯିବେ, ଏଇ ଚିନ୍ତା କରୁଥିଲେ ସେତେବେଳେ ।

ଅନେକ ଦିନରୁ ସେ ଭୁଲି ଯାଇଛନ୍ତି ସୁରଭିଙ୍କ ହାତ ରାନ୍ଧଣାର ସ୍ୱାଦ । ଚିଙ୍ଗୁଡ଼ି ବେଙ୍କର, ବ୍ରେଡ୍ ପୁଡ଼ିଙ୍ଗ, ବାଇଗଣ ପୋସ୍ତକ । ବହୁ ଦିନରୁ ଖାଇ ନାହାନ୍ତି ସେ । ବହୁ ଦିନରୁ ସେମାନେ ବଗିଚାରେ ଚଉକି ପକେଇ ଗପୁ ଗପୁ ଦର୍ଶନରୁ ସଂସାର କିମ୍ବା ସଂସାରରୁ ଦର୍ଶନ ଆଡ଼କୁ ଆଗେଇ ଯାଇ ନାହାନ୍ତି । ଜୀବନରେ ପ୍ରଥମ କରି ଚେସ୍ ଖେଳ ଶିଖିଥିଲେ ସେ ସୁରଭି ପାଖରୁ । ଘଣ୍ଟା ଘଣ୍ଟା ଚେସ୍‌ବୋର୍ଡ଼ ପାଖରେ ଝୁଙ୍କି ପଡ଼ି, ହାର ଜିତ୍ ଲଢ଼େଇରେ ସାମିଲ୍ ହେଇପାରି ନାହାନ୍ତି ସେମାନେ । ଜୀବନଟା ଗୋଟେ ଚେସ୍ ବୋର୍ଡ଼ରେ ପରିଣତ ହେଇ ଯାଇଛି, ତାଙ୍କର କିଏ କେତେ ପାଦ ଚାଲିବ, କିଏ କେତେ ହୁସିଆର୍ ହେବ କିଏ ବାଜି ମାରି ନେବ ଓ କିଏ ଟଳି ପଡ଼ିବ,

ଏଯାହିଁ ।

ବଡ଼ ସହରକୁ ବଦଳି ହେଇ ଆସିବା ପାଇଁ, ମନ ତଳେ ଅବଶୋଷଟେ ରହିଥିଲା ଅନେକ ଦିନ ଧରି ସେମାନଙ୍କର । ସେଥିପାଇଁ କୃସବୁ କୃସ ସାଧନା କରିବାକୁ ପଡ଼ିଥିଲା ଦିହିଙ୍କୁ । ଯାହା, ଆପେ ଆସେ ତାକୁ, ପ୍ରାପ୍ୟ ଥିଲା ବୋଲି କୁହା ଯାଇପାରେ । କିନ୍ତୁ ଯାହା ଛଡ଼େଇ ନେଇ ହାସଲ କରିବାକୁ ହୁଏ ତାହା ବି କଣ ପ୍ରାପ୍ୟ ? ପାଞ୍ଚ ଜଣଙ୍କୁ ଦଳି ଚକଟି, ସେମାନଙ୍କ ଛାତି ଉପରେ ଛିଡ଼ା ହେଇ ବିଜୟର ପତାକା ପୋତିବାରେ ଯେତେ ବାହାଦୁରୀ ଥାଉ ନା କାହିଁକି, ସାଙ୍ଗରେ ନୃଶଂସତାଟେ ବି ଲୁଚି ରହିଥାଏ ତାର । ସୁରଭି କହିଥିଲେ ସେତେବେଳେ ତୁମେ ଚିନ୍ତା କରନି, ସବୁ ମୋ ଉପରେ ଛାଡ଼ି ଦିଅ । କୋଉଠି କଣ କରିବାକୁ ପଡ଼ିବ, ତା ମୁଁ କରିବି । ତୁମ ଦ୍ୱାରା ସଂଭବ ନୁହଁ । ସୁରଭି ସେତେବେଳକୁ ଆସି ସାରିଥିଲେ ବଡ଼ ସହରକୁ । ପିଲାମାନେ ମଧ ସ୍କୁଲ ବଦଳେଇ ସୁରଭିଙ୍କ ସଙ୍ଗେ ଚାଲି ଆସିଥିଲେ । ସେ କହିଥିଲେ, ଦେଖ ସୁରଭି ଯେ ତୁମର ହେଲ୍‌ଥ ଡିପାର୍ଟମେଣ୍ଟର କଥା ନୁହଁ ଯେ ଚାହିଁଲେ ବଦଳି ହେଇ ଚାଲି ଆସିବ । ମୋପରି ଅନେକ ଅଛନ୍ତି ଯେଉଁମାନେ ୟୁନିଭର୍ସିଟିରେ ଶିକ୍ଷକତା କରିବାକୁ ଚାହାନ୍ତି ।

ସୁରଭି ହସିଥିଲେ ତାଙ୍କ କଥା ଶୁଣି । ତମେ କଣ କହିବାକୁ ଚାହୁଁଛ ଡାକ୍ତର ଛଡ଼ା ଏତେ ମାମୁଲି ଯେ କୌଣସି ଲୋକକୁ କହିଲେ ତାଙ୍କ କାମ ହେଇଯିବ, ଅଥଚ ତମମାନଙ୍କ କାମ କରେଇ ନବାଟା ବଡ଼ କଷ୍ଟ ସାଧ ? ଯେଉଁ ଉପାୟରେ ଆମ କାମ କରେଇ ନେଇହୁଏ, ସେଇ ଉପାୟରେ ତୁମମାନଙ୍କ କାମ ମଧ । ଛାଡ଼, ତୁମକୁ ଏତେ କଥା କହି ଲାଭ ନାଇଁ । ତେବେ, ତୁମର ଯାହା ଯାହା ଫର୍ମାଲିଟି କରିବାର ଅଛି, କର । ବଡ଼ ଦମ୍ଭର ସହ ସୁରଭି କହୁଥିଲା କଥାଟି ।

ସବୁଠୁ ବେଶି ରାଜନୀତି ଚାଲେ ଏଇ ୟୁନିଭର୍ସିଟିମାନଙ୍କରେ । ୟୁନିଭର୍ସିଟିର ପ୍ରଫେସର ହେବା ପାଇଁ ଦି ବର୍ଷ ହେଲା ଇଣ୍ଟରଭ୍ୟୁ ଦେଇ ସାରିଥିଲେ ପ୍ରଫେସର ମହାପାତ୍ର । କିନ୍ତୁ ଏଯାଏଁ ଫଳ ହିଁ ବାହାରିନଥିଲା । ଅବଶ୍ୟ ସେ ସେଇ ଇଣ୍ଟରଭ୍ୟୁରେ ପାଶ କରିବାର କୌଣସି ସଂଭାବନା ହିଁ ଦେଖୁନଥିଲେ, କାରଣ ସେଠି ତାଙ୍କ ପ୍ରତିଯୋଗୀ ହିସାବରେ ନିଜର ବହୁ ପୁରାତନ ଦିଗ୍‌ଗଜ ଶିକ୍ଷକମାନଙ୍କୁ ହିଁ ସେ ଭେଟିଥିଲେ । ସେ ବୁଝି ପାରୁନଥିଲେ ସମ୍ପୂର୍ଣ୍ଣ ଅଜଣା ରାଜ୍ୟରୁ ଯାଇ ସୁରଭି କେମିତି କାମ ହାସଲ କରି ଚାଲି ଆସି ପାରିବ । ସମ୍ଭବତଃ ତାଙ୍କୁ ସାହସ ଦେବା ପାଇଁ ସେମିତି କହୁଥାଇ ପାରନ୍ତି ସେ, ଭାବିଥିଲେ ପ୍ରଫେସର ମହାପାତ୍ର । ନହେଲେ ନହେବ, ଏତେ ଚିନ୍ତିତ ହେବାର ମଧ କଣ ଅଛି, ହାତରେ ତ ଚାକିରୀ ଖଣ୍ଡେ ଅଛି ।

ସୁରଭି ତାଙ୍କୁ ଆଚମ୍ବିତ କରି ଯେଉଁଦିନ ସେଇ ଶୁଭ ଖବରଟି ପହଞ୍ଚାଇଥିଲେ ତାଙ୍କ କାନରେ, ଖୁସିରେ ପାଗଳ ହେଇ ଯାଇଥିଲେ ସେ । ତାଙ୍କୁ ଏକଦା ପାଠ ପଢ଼େଇଥିବା ଶିକ୍ଷକଙ୍କୁ ବି ସେ ଟପିଗଲେ ? ଯାହେଉ, ସେତେବେଳର ସେ କି ଆନନ୍ଦ । ସତେ ଯେମିତି ପୃଥିବୀ ତାଙ୍କର କରାଗତ ହେଇଛି । ଭୋଜିଟିଏର ଆୟୋଜନ କରିଥିଲେ ସେ । ତାଙ୍କର ବନ୍ଧୁ, ସୁରଭିଙ୍କ ବନ୍ଧୁ ଓ ଆତ୍ମୀୟଙ୍କୁ ନିମନ୍ତ୍ରଣ କରିଥିଲେ ସେ । କହିଥିଲେ, ବୁଝିଲ ସୁରଭି, ପ୍ରଚେଷ୍ଟାର ବିକଳ୍ପ କରି ନାହିଁ ।

ସୁରଭି ଉତ୍ତର ଦେଇ ନଥିଲେ ଏ ପ୍ରଶ୍ନର । କେବଳ ହସିଥିଲେ ଗୋଟେ ମାୟାବୀ ହସ । ତାଙ୍କ ଓଠ ପାଖୁଡ଼ାରେ ବ୍ୟଙ୍ଗଟେ ଝଲସି ଉଠିଥିଲା । ତାଙ୍କ ସେଇ ହସ ହିଁ ଥିଲା, ମହାପାତ୍ରଙ୍କ ପାଇଁ ପ୍ରଥମ ଆଘାତ । ମନରେ ପ୍ରଶ୍ନବାଚୀ ସୃଷ୍ଟି ହେଇଥିଲା । ତେବେ, ଯାହା ସେ ପାଇଲେ, ତାହା କଣ ତାଙ୍କର ପ୍ରାପ୍ୟ ନଥିଲା ? ଏମିତି ଅସତ୍ ମାର୍ଗରେ ଅନେକ କିଛି କରି ହୁଏ ଏ ଦେଶରେ । ସେ ଥିଲେ ଗୋଟେ ଗରିବ ମାଷ୍ଟରର ପୁଅ । ବହୁ କଷ୍ଟରେ ପାଠ ପଢ଼ିଥିଲେ । ଛାତ୍ରବୃତ୍ତି ପାଇ ବିଦେଶକୁ ଯିବାକୁ ସୁଯୋଗ ପାଇଥିଲେ । ଅନେକ କିଛି ଜୀବନରେ ପାଇନଥିଲେ ବି, ଯାହା ପାଇଥିଲେ, ଉଚିତ୍ ମାର୍ଗରେ ପାଇ ଆସିଥିଲେ ଆଜି ସୁଦ୍ଧା । ହଠାତ୍ ଯେମିତି ବିଷ ପାଲଟିଗଲା ଅମୃତ ହାଣ୍ଡିଟି ।

ବଡ଼ ସହରକୁ ଆସିବା ତାଙ୍କର ଜୀବନର ମସ୍ତବଡ଼ ଭୁଲ ଥିଲା । ଛୋଟ ସହରର ଛୋଟ ଛୋଟ ଆଶା ଆକାଂକ୍ଷା, ଛୋଟ ସ୍ୱପ୍ନ ଭିତରେ ଜୀବନ ମୁକ୍ତ ଥିଲା । ସେ ଭାବିଥିଲେ ବଡ଼ ସହରକୁ ଆସିଲେ, ଲେଖାପଢ଼ା କ୍ୟାରିଅର ସବୁଥିରେ ଉନ୍ନତି ହେବ । ସର୍ବୋପରି ଜୀବନ ପ୍ରଶସ୍ତ ହେବ । କିନ୍ତୁ ଜୀବନ ବିସ୍ତାରିତ ହେଇଥିଲା କି ତାଙ୍କର ? ବରଂ ଅଜଣା ଲକ୍ଷ୍ୟ ଆଡ଼କୁ, ଅଯଥା ମାରାଥନ୍ ରେସ୍‌ରେ ସାମିଲ ହେଇ ଯାଇଥିଲେ ସେ । ବିଭାଗୀୟ ରାଜନୀତି ଶିକାର ହେଇଥିଲେ ଯେମିତି, ନିଜେ ବ୍ୟାଧ ସାଜି ଅନ୍ୟଙ୍କୁ ଶିକାର କରିଥିଲେ ମଧ ସେମିତି ।

ବଡ଼ ସହରକୁ ଆସି ସେ ବେଶି ନିଃସଙ୍ଗ ହେଇ ପଡ଼ିଥିଲେ । ଭାବିଥିଲେ, ସୁରଭି ଓ ପିଲାମାନଙ୍କ ସାଙ୍ଗରେ ରହି ସେ ଛୋଟ ସହରର ନିଃସଂଗତା ବୋଧକୁ ହଟେଇ ଦେବେ । ଅଥଚ ଏଠି ଆସି ସେ ଅନୁଭବ କଲେ, ଏଠିକାର ନିଃସଂଗତା ବୋଧ ଆହୁରି ଗଭୀର, ଆହୁରି ବ୍ୟାପକ । ୟୁନିଭର୍ସିଟିର ଜୀବନ ତାଙ୍କୁ ଦେଇଥିଲା ବ୍ୟର୍ଥତା । ଅସହାୟ କରିଥିଲା ତାଙ୍କୁ । ହୀନମନ୍ୟତା ବୋଧରେ ପୋତି ପକାଇଥିଲା । ସବୁକିଛି ପାଇ କିଛି ନ ପାଇବାର ଗ୍ଲାନିରେ ସେ ବୁଡ଼ି ଯାଇଥିଲେ । ଏଇ ଦୁଃଖରୁ, ଗ୍ଲାନି ବୋଧରୁ, ନିଃସଂଗତାରୁ, ଅସହାୟତାରୁ ହାତ ଧରି ଉଠେଇ ଆଣିବା ପାଇଁ

ସୌହାର୍ଦ୍ଦ୍ୟର ହାତଟିଏ କେଉଁଠୁ ହେଲେ ବଢ଼ି ଆସି ନଥିଲା । ଦୂରରେ ଥିଲେ ମଝିରେ ମଝିରେ ସୁରଭିର ଫୋନ୍ ଆସୁଥିଲା । କେହି ଯେ ତାଙ୍କ ପାଇଁ ଚିନ୍ତା କରେ, କାହା ପାଇଁ ଯେ ତାଙ୍କର ଆବଶ୍ୟକତା ଅଛି ବୁଝି ହେଉଥିଲା । ଅଥଚ ଯେତେବେଳେ ସେ ସୁରଭି ପାଖକୁ ଚାଲି ଆସିଲେ, ଗୋଟିଏ ଘରେ ଏକତ୍ର ରହିଲେ, ସେତେବେଳେ ସେ ବୁଝି ପାରିଥିଲେ ଯେ ସୁରଭି ତାଙ୍କ ପାଖରୁ ମାଇଲ୍ ମାଇଲ୍ ଦୂରରେ ।

ଲୋକେ ତାଙ୍କୁ ହସନ୍ତି । ଥଟା କରନ୍ତି । ପୁରୁଣା ମଡ଼େଲର ରଂଗ ଛଡ଼ା ଲ୍ୟାମ୍ବ୍ରେଟା ସ୍କୁଟରଟି ତାଙ୍କର ବାହନ । ଚାରିଥର କିକ୍ ନ ମାରିଲେ ସହଜେ ଷ୍ଟାର୍ଟ ହୁଏନା । ସେଇଥିରେ ସେ ଘୂରି ବୁଲନ୍ତି ୟୁନିଭର୍ସିଟି, ସଭା ସମିତି ବନ୍ଧୁମାନଙ୍କ ଘର । ବନ୍ଧୁମାନେ ଥଟ୍ଟା କରନ୍ତି: କଣ ଭାଉଜ ତାଙ୍କ ଚାରି ଚକିଆଟା ଦଉ ନାହାନ୍ତି କି ତମକୁ ? କିମ୍ବା କଣ ଭାଇ, ଗୋଟେ ରଙ୍ଗଛଡ଼ା ମାନ୍ଧାତା ଅମଳର ଗାଡ଼ି ଧରି ବୁଲୁଛ, ଭାଉଜଙ୍କୁ କହୁନା ତମ ପାଇଁ ମଧ ଚାରିଚକିଆଟେ କିଣି ଦେବେ । ତାଙ୍କର ପଇସାର କେଉଁ ଅଭାବ ଯେ ? ନିଜ ଦରମା ବାଦ୍, ନର୍ସିଂହୋମ୍ ମାନଙ୍କରୁ ଓ ନିଜ ପ୍ରାଇଭେଟ କ୍ଲିନିକ୍‌ରୁ ଚାଳିଶି ପଚାଶ ହଜାର ଆସି ଯାଉନଥିବ ? ପୁଅ ତମର ବାଙ୍ଗାଲୋର୍‌ରେ ଇଞ୍ଜିନିୟର । ସାନପୁଅଟା ପଛରେ ଏମିତି କେତେ ଖର୍ଚ୍ଚ ହେଉଥିବ ଯେ ? ଏତେ ପଇସା, କଣ କର ?

କେହି କିନ୍ତୁ ଛୁଇଁ ପାରନ୍ତି ନାଇଁ ତାଙ୍କର ଭିତର ମଣିଷଟାକୁ । କେହି ପଚାରନ୍ତି ନାଇଁ, ଆରେ ଭାଇ, ଭାଉଜ ତ ଦିନରାତି ବାହାରେ ବାହାରେ କଟେଇ ଦେଲା, ତୋତେ ଭାତ ଗଣ୍ଡେ କିଏ ଖାଇବାକୁ ଦିଏ । କିଏ ତୋ ମୁଣ୍ଡ ବିନ୍ଧୁଥିଲେ ହାତ ବୁଲେଇ ଆଣେ କପାଳରେ । ମନ ଭାରି ହେଇଗଲେ କାହା ଆଗରେ ଦୁଃଖତକ ଓଜାଡ଼ି ଦିଅ ତୁମେ ? କେହି ପଚାରେନି ଆଜି କାଲି ବିଛଣାରେ ତମର କିଛି ହୁଏ କି ନାଇଁ ବୋଲି । କେହି ପଚାରେନି ଘରେ ତମର ହୋମ ଯଜ୍ଞ ପୂଜା ପାଠ ହୁଏକି ନାହିଁ । ସୁଦଶାବ୍ରତ, ଗୁରୁବାର ମାଣବସା, ବାର୍ଷିକ ଶ୍ରାଦ୍ଧ କର୍ମ ସବୁ ।

ଉପର ଦେଖାଣିଆ ବ୍ୟାଙ୍କରୁ ଲୋନ୍ ନିଏ ସୁରଭି । ଟାଉନ୍ ମଝିରେ, ସିମେଣ୍ଟ, କଂକ୍ରିଟର କାଛ ଉଠେ । ନିଜର ନର୍ସିଂହୋମ୍ ବନଉଥାଏ ସୁରଭି । ଅବଶ୍ୟ ବେନାମିରେ ଚାଲିବ । ସେ ଚୁପଚାପ ଦୂରରେ ରହି ଦେଖୁଥାନ୍ତି ସବୁ । ବେଳେବେଳେ ଅବଶ୍ୟ ତାଙ୍କୁ ଏଇ ସିମେଣ୍ଟ କଂକ୍ରିଟ ଲୁହାଛଡ଼ ସାଂଗରେ ଜଡ଼େଇ ଧରିବାକୁ ଚାହିଁଥିଲା ସୁରଭି । କହୁଥିଲା, ଘରେ ବସି ରହିଛ, ନର୍ସିଂହୋମ୍‌ଟା ଆଡ଼େ ଘଣ୍ଟେ ଅଧେ ଗଲେ ହୁଅନ୍ତା ନାହିଁ ?

ତୁମ ନର୍ସିଂ ହୋମ । ତୁମେ ବୁଝ । ମୁଁ ସେଠିକୁ ଯାଇ କଣ କରିବି ?

ତମର ଆଉ ମୋର ବୋଲି ଅଲଗା ଅଲଗା ହେଇ କିଛି ଅଛି କି ଘରେ ? ସବୁ କଥାରେ ତମେ ତମର ଆଉ ମୋର ଲଗେଇଥାଅ କାହିଁକି ? ଏଇ ନର୍ସିଂ ହୋମ୍‌ଟା କଣ ଖାଲି ମୋର ସମ୍ପତ୍ତି, ତମର ନୁହେଁ ? ଘରଟା ତିଆରି ଚାଲିଛି । ତମେ ଚାହିଁଲେ କଣ ମଝିରେ ମଝିରେ ଦେଖି ଆସି ପାରନ୍ତ ନାହିଁ ? ମୁଁ ସ୍ତ୍ରୀ ଲୋକଟା କେତେ ଆଉ କରିବି ? କିଏ ଜାଣେ କଂଟ୍ରାକ୍ଟର କେତେ ବାଲିରେ କେତେ ସିମେଣ୍ଟ ମିଶାଏ । ତମେ ତ ମୋ ପରି ବ୍ୟସ୍ତ ଲୋକ ନୁହଁ । କଣ ଗୋଟେ ଅଧେ କ୍ଲାସ ନବାକୁ ପଡ଼େ ତମକୁ । ଦିନସାରା କଣ କରୁଥାଅ ?

ମୁଁ କଣ କରୁଥାଏ ତମର ଜାଣିବାକୁ ବା ଫୁରସତ କାହିଁ ? କହିଦେଇ ଚୁପ ହଇ ଯାଇଥିଲେ ପ୍ରଫେସର ମହାପାତ୍ର । ସେ ଯେ ନିଆଁରେ ଘିଅ ଢ଼ାଳି ଦେଇଛନ୍ତି, ଏକଥା ତାଙ୍କୁ ଜଣାଥିଲା । କାରଣ, ଏଇ ଦୀର୍ଘଦିନର ବୈବାହିକ ଜୀବନରେ ସୁରଭିର ପ୍ରକୃତିର ପ୍ରତିଟି ଡାଇମେନ୍‌ଶନ୍ ତାଙ୍କ ପାଖରେ ସ୍ପଷ୍ଟ ହେଇ ଯାଇଥିଲା ।

ତମେମାନେ ଦିନସାରା କଣ କରୁଥାଅ ମୁଁ କଅଣ ଜାଣେନା ? ଚାରିପଟେ ଛାତ୍ରମାନଙ୍କ ଭିତରୁ ସ୍ତାବକ ଦଳଟେ ଧରି ବସିଥାଅ । ତା ଭିତରୁ ଅଧେ ଥାଆନ୍ତି ଝିଅ । ଆଉ ଝିଅମାନଙ୍କୁ ଯେମିତି ଶୋଷଣ କରି ହେବ, ସେସବୁ ତମମାନଙ୍କ ଛଡ଼ା ଆଉ କିଏ ବେଶୀ ଜାଣେ ?

ତୁମ ପ୍ରଫେସନ୍‌ରେ କଣ ଏସବୁ କିଛି କମ୍ ଘଟେ ? ପଢ଼ିଲାବେଳୁ ତୁମେମାନେ ଏତେ ଅଭିଜ୍ଞତା ନେଇ ସାରିଥାଅ ଯେ, ଅସଲ ସମୟରେ ତମମାନଙ୍କ ଭିତରେ ଥାଉ ଉତ୍ତେଜନା ନଥାଏ ।

କି ଅସଭ୍ୟ । ଘୃଣାରେ ଲେଣ୍ଡାଏ ଛେପ ପରି ଫିଙ୍ଗି ଦେଇ ବାହାରି ଯାଇଥିଲା ସୁରଭି । ନିଜେ ମହାପାତ୍ର ମଧ ବୁଝି ପାରିନଥିଲେ ଏମିତି ଅଭଦ୍ର କଥା ସେ କେମିତି କହି ପାରିଲେ ? ବଡ଼ ଦୁଃଖୀ ହେଇଥିଲେ ସେ । ତାଙ୍କର ମନେ ପଡ଼ିଥିଲା ରମାକାନ୍ତ ରଥଙ୍କ କବିତା ପଂକ୍ତିଟିଏ : ତମେ ମୋର ସୁନ୍ଦରୀ ବିଧବା, ମୁଁ ତମର ସ୍ୱାମୀର କଂକାଳ । ସଂଭବତଃ ତାଙ୍କର ଓ ସୁରଭି ଭିତରେ ସେଇଭଳି ସଂପର୍କଟିଏ ଗଢ଼ି ଉଠିଛି ।

ସେହି ଘଟଣା ପରେ ଦୀର୍ଘ ଦଶ ଦିନ କାଳ ପରସ୍ପର କେହି କାହାରି ସାଂଗରେ କଥାବାର୍ତ୍ତା କରି ନଥିଲେ । ଅବଶ୍ୟ ଏମିତି କଥାବାର୍ତ୍ତା ବନ୍ଦ କରିବା ଫଳରେ କାହାରି କିଛି ବିଗିଡ଼ି ଯାଇ ନଥିଲା । ବରଂ ପ୍ରତିଦିନ ପ୍ରତିଦିନର ଝଗଡ଼ାରୁ ମୁକ୍ତି ମିଳିଥିଲା ଦିହିଁଙ୍କୁ । କିନ୍ତୁ ଏ ପ୍ରକାର ସହାବସ୍ଥାନର କଣ କିଛି ମାନେ ହୁଏ ? ସେଇ ଦୁଃସମୟରେ ଗୌରୀ ଥିଲା ଦିହିଁଙ୍କ ଭିତରେ ଏକମାତ୍ର ଯୋଗସୂତ୍ର । ଶିକ୍ଷିତ ଓ ବେକାର ପିଲା ଗୌରୀ । ସୁରଭି କେଉଁଠୁ ଯୋଗାଡ଼ କରିଥିଲା । ନର୍ସିଂ ହୋମ୍‌ର କାମ ତଦାରଖ

ସାଂଗରେ କୁକୁରର ଯତ୍ନ ନେବା ଏଇ ଦିଇଟି ଥିଲା ତାର ନିତିଦିନିଆ କାମ । କୁକୁରକୁ ଗାଧେଇ ଦେବା, ଦେହ ବ୍ରଶ କରିବା, ବାହାରକୁ ନେଇ ଝାଡ଼ା କରେଇ ଆଣିବା ଆଦି ଛୋଟ ମୋଟ କାମ ସବୁ କରୁଥିଲା ସେ ।

ମହାପାତ୍ର କୁକୁର ପସନ୍ଦ କରନ୍ତି ନାଇଁ । ଜୟପୁର, ଅନୁଗୁଳ, କେଉଁଝର ଆଦି ଛୋଟ ସହରମାନଙ୍କରେ ରହୁଥିଲା ବେଳେ, ତାଙ୍କ ଘରେ କୁକୁର ନଥିଲା । ସେ ବଦଳି ହେଇ ଏଠିକୁ ଆସିବା ଆଗରୁ ସୁରଭି କୁକୁର କିଣି ସାରିଥିଲେ । ପ୍ରଥମେ ପ୍ରଥମେ ଘରର ଯାବତୀୟ କାମ କରୁଥିବା ଝିଅଟା କୁକୁରର ଯତ୍ନ ନେଉଥିଲା । କିନ୍ତୁ, ଗୌରୀ ଆସିଲା ପରେ ସେ ସମ୍ଭାଳି ନେଇଥିଲା କୁକୁରଟିକୁ ।

ପ୍ରଥମେ ପ୍ରଥମେ କୁକୁର ଭଳି ଗୌରୀକୁ ମଧ ପସନ୍ଦ କରି ପାରୁନଥିଲେ ମହାପାତ୍ର । ସତ କହିବାକୁ ଗଲେ ତାଙ୍କୁ ଏ ପ୍ରକାର ବିଳାସ ସୁହାଉ ନଥିଲା । ସୁରଭିର ଅନେକ ଜିନିଷକୁ ଆଖିବୁଜି ଦେଲା ଭଳି, ସେ ନା କୁକୁର ନା ଗୌରୀ କୌଣସି ଆଡେ ଏତେ ମୁଣ୍ଡ ଖେଳାଉ ନଥିଲେ ।

ସେ ଥରକ ତାଙ୍କୁ ଭୀଷଣ ଜ୍ୱର ହେଇଥାଏ । ଦୀପ ତଳ ଅନ୍ଧାର ଭଳି ସୁରଭି ତାର ବ୍ୟସ୍ତତା ଭିତରେ ଟେର୍ ସୁଦ୍ଧା ପାଇ ନଥିଲା ମହାପାତ୍ରଙ୍କ ଅସୁସ୍ଥତା ବିଷୟରେ । ଦିନସାରା ଶୋଇ ରହିଥିଲେ ମହାପାତ୍ର । ଦେହ ଭିତର ରସମସ ହେଇ ଯାଉଥିଲା । ପାଟି ପାଣିଚିଆ ଧରି ଯାଇଥିଲା । ଆଖିଗୁଡା ପୋଡୁଥିଲା ଭୀଷଣ । ମନେ ହେଉଥିଲା ସତେ ଯେମିତି ଦେହଟା ଫାଟି ଯାଇ ବିକ୍ଷିପ୍ତ ହେଇଯିବ । ସନ୍ଧ୍ୟାଆଡ଼କୁ କପାଳରେ କାହାର ହାତର ସ୍ପର୍ଶ ପାଇ ସେ ଆଖି ଫିଟେଇଥିଲେ । ଗୌରୀ ତାଙ୍କ କପାଳରେ ହାତ ଦେଇ ଜ୍ୱର ଦେଖୁଥିଲା । ତାଙ୍କ ଆଖି ଖୋଲିବା ମାତ୍ରେ ପଚାରିଥିଲା: ଆପଣଙ୍କ ଦେହରେ ଏତେ ଜ୍ୱର କାହାକୁ କିଛି ନ କହି ଶୋଇ ରହିଛନ୍ତି ।

ହସିବାର ଚେଷ୍ଟା କରିଥିଲେ ମହାପାତ୍ର । କିନ୍ତୁ ନିଜ ଅଜାଣତରେ ଆଖି କୋଣରେ ପାଣି ଜମି ଯାଇଥିଲା ।

ମା ଜାଣିଲେଣି ନା ନାହିଁ କହିଲେ ? ମୁଁ ଭାବିଲି, କଥା କଣ - ଆଜି ଦିନସାରା ସାର୍ ଶୋଇ ରହିଛନ୍ତି କାହିଁକି ? ରମାକୁ ପଚାରିଲା ବେଳକୁ କହିଲା ଆପଣ ଦି ପହରରେ ଖାଇ ନାହାନ୍ତି ବି । ମୁଁ ଭାବିଲି, ଯାଏଁ ଦେଖେ ଦେହପା କିଛି ହେଲା କି ସାର୍ଙ୍କର । ଆପଣଙ୍କ ଦେହ ତ ଖଇ ଫୁଟିଲା ଭଳି ତାତିଛି । ବଟିକା କିଛି ଖାଇଲେଣି କି ନାଇଁ କହିଲେ ? ମୁଁ ଯାଏ ମାଙ୍କୁ ଫୋନ୍ କରି ଜଣେଇ ଦେବି ।

ମହାପାତ୍ର ହାତ ବଢ଼େଇ ରୋକିଥିଲେ ଗୌରୀକୁ ଥାଉ ଗୌରୀ, କୋଉଠି କିଛି କାମରେ ବ୍ୟସ୍ତ ଥିବେ ସେ । କାହିଁକି ହଇରାଣ କରିବୁ । ମୋର କିଛି ହେଇନି । ଠିକ୍

ହେଇ ଯିବ ଯେ ।

କଣ ଭାବିଥିଲା ଗୌରୀ, ଫୋନ୍ କରି ନଥିଲା । ନିଜେ ମୁଣ୍ଡ ଧୋଇ ଦେଇଥିଲା ତାଙ୍କର, ଦେହ ହାତ ଓଦା ଗାମୁଛାରେ ପୋଛି ଆଣିଥିଲା । ଘରୁ ଖୋଜି ଜ୍ୱର ଭଲ ହେବା ଔଷଧ ଦେଇଥିଲା । ପାଦ ପାଖରେ ବସି ଗୋଡ଼ ହାତ ଘଷିଥିଲା । ସପ୍ତାହ ଖଣ୍ଡେ ପରେ ସେ ଉଠି ବସିଥିଲେ । ଦେହ ସୁସ୍ଥ ହେଇଥିଲା । ଯେତିକି ଦିନ ସେ ଜ୍ୱରରେ ପଡ଼ିଥିଲେ ଗୌରୀ ଆତ୍ମୀୟଟେ ଭଳି ଖୁବ୍ ସେବା କରିଥିଲା ତାଙ୍କର ।

ଆରେ, ତୁ ସବୁବେଳେ ମୋ ପଛରେ ଲାଗିଛୁ । କୁକୁର କଥା ଠିକ୍ ଭାବରେ ବୁଝୁଛୁ କି ନାହିଁ ? ଅସୁସ୍ଥ ଥିବା ବେଳେ ଦିନେ ଗୌରୀକୁ ପଚାରିଥିଲେ ମହାପାତ୍ର ।

ହସିଥିଲା ଗୌରୀ । କହିଥିଲା, କୁକୁରଠୁ ମଣିଷ ଜୀବନଟା ବଡ଼ ସାର୍ । ତାଛଡ଼ା ଆପଣ ମୋତେ କଣ ଭାବିଛନ୍ତି ? ଆପଣ ଏଠି ମୁହଁ ବଙ୍କେଇ ପଡ଼ିଥିବେ, ଆଉ ମୁଁ ଯାଇ କୁକୁର ସେବା କରିବି ? ଏତେ ଅମଣିଷ ମୁଁ ନୁହଁ । ଭାତ ମାଂସ କରି ମେଂଚେ ତା ପାଖରେ କୁଢ଼େଇ ଦେଲେ ହେଲା । ସାବୁନ୍ ଲଗା, ନଖ କଟା- ଏଗୁଡା ଯାହାର କାମ ଧନ୍ଦା ନଥାଏ ନା ସେଇମାନେ ବସି ବସି କରୁଥାନ୍ତି ।

ତା ପରଠୁ ଗୌରୀ ତାଙ୍କ ନିଃସଙ୍ଗ ଜୀବନର ସାଥୀ ହେଇ ଯାଇଥିଲା । ଧିରେ ଧିରେ ଗୌରୀ ଉପରେ ସେ ନିର୍ଭର କରିବା ଆରମ୍ଭ କରି ଦେଇଥିଲେ । ଗୌରୀ ମୋ ସାର୍ଟ ଇସ୍ତ୍ରୀ ହେଲାକି ନାହିଁ । ଗୌରୀ, ବହିଗୁଡା ଏଇଠୁ ଗଲା କୁଆଡେ । ଗୌରୀ ମୋର ଆଜି କୋଉଠୁଁ ଫୋନ୍ ଆସିଥିଲା । ମୋ ମୁଣ୍ଡ ବିନ୍ଧୁଛି ଗୌରୀ । ଗୌରୀ ଦେଖିଲୁ ଏ-ସାର୍ଟଟା ମୋ ଦେହକୁ ମାନୁଛି କି ନାହିଁ । ଗୌରୀରେ, ମୋତେ ଆଜି ଦହିବରା ଖାଇବାକୁ ଇଛା ହେଉଛି ।

କ୍ରମଶଃ ଗୌରୀ ଆସି ଅଧିକାର କରି ନେଇଗଲା ତାଙ୍କ ଛାତି ଭିତରେ ଏକ ନିଭୃତତମ ସ୍ଥାନ । ତାଙ୍କର ପ୍ରିୟତମ ବଂଧୁର ସ୍ଥାନ, ତାଙ୍କ ପୁତ୍ରର ସ୍ଥାନ, ତାଙ୍କର ଦୋସରର ଛବି, ତାଙ୍କ ମା ବାପାଙ୍କ ସ୍ଥାନ ଅକ୍ତିଆର କରି ନେଲା ଗୌରୀ । ସୁରଭି କିମ୍ୱା ତାଙ୍କ ପିଲାମାନେ ଯେତିକି ଜାଣିନଥିଲେ ମହାପାତ୍ରଙ୍କୁ ତାଠୁ ବେଶୀ ଜାଣି ଯାଇଥିଲା ଗୌରୀ । ପ୍ରକୃତରେ ସୁରଭି ଓ ପିଲାମାନଙ୍କ ଅପେକ୍ଷା ଗୌରୀ ହିଁ ପ୍ରଫେସରଙ୍କ ପାଖରେ ଅତି ନିଜର ହେଇ ଯାଇଥିଲା ଅଳ୍ପ କେଇଦିନ ଭିତରେ । କିନ୍ତୁ ଏ ସଂପର୍କକୁ କଣ ନାଁ ଦେଇଥାନ୍ତେ ପ୍ରଫେସର ମହାପାତ୍ର ? ସବୁ ସଂପର୍କକୁ ନାଁରେ ବାଂଧି ଦେଇ ହୁଏନି ?

---

ସକାଳୁ ହଠାତ୍ ଘଟଣାଟି କଣ ହେଇଥିବ ବୋଲି ବୁଝି ପାରିନଥିଲେ କେହି । ଭୋରରୁ ପ୍ରଫେସର ମହାପାତ୍ରଙ୍କ ନିଦ ଭାଙ୍ଗିଯାଇଥିଲା । ବିଛଣାରେ ଏପଟ ସେପଟ ହେଇ ଅଳସ ଭାଙ୍ଗୁ ଭାଙ୍ଗୁ ଗୌରୀକୁ ମନେ ମନେ ଅପେକ୍ଷା କରୁଥିଲେ । ସେଇ ବଖରାରେ ଥିବା ଅନ୍ୟ ଯାତ୍ରୀ କେଇଜଣ ଉଠି ସାରିଥିଲେ ଅନେକ ବେଳୁ । ଗୌରୀ ବୋଧହୁଏ ତା କାମ ସାରିବାକୁ ପାଇଖାନା, ବାଥରୁମ ଆଡ଼େ ଯାଇଛି ଭାବି ଗଡ଼ପଡ଼ ହେଉଥିଲେ । ଶେଷକୁ ଉଠି ବେଡିଂ ଗୁଡ଼େଇ ଗୋଟେ ପାଖକୁ ରଖି ଦେଇଥିଲେ ସେ । ମନେ ମନେ ଭାବିଥିଲେ, ଟିକିଏ ଆଶ୍ରା ପାଇଲେ ମଣିଷ କେତେ ନିର୍ଭରଶୀଳ ହେଇଯାଏ ଦେଖ । ବେଡିଂକୁ ଗୋଟେ ପାଖକୁ ରଖିଦେଇ ନିଜର ନିତ୍ୟକର୍ମ ସାରିବା ପାଇଁ ବାହାରି ଗଲାବେଳେ ତାଙ୍କ ନଜରରେ ପଡ଼ିଲା, ମେଜର୍ ଓ ବରୁଣ ବାବୁ ନାହାନ୍ତି। ସଭିଏଁ ବୋଧେ କାମ ସାରି ଦେଲେଣି, କେବଳ ତାଙ୍କର ହିଁ ଡେରି ହେଇଯାଇଛି ।

ବାଥରୁମ୍‌ରୁ ବାହାରି ବଖରାକୁ ଆସି ଦେଖିଥିଲେ ଯେ, ଯେ ଯାହାର ବେଡିଂ ନେଇ ବସ୍‌ରେ ଲଦୁଛନ୍ତି । ଗୌରୀ ଓ ତାଙ୍କର ବେଡ଼ିଂ ପଡ଼ି ରହିଛି ସେମିତି । ଗୌରୀଟା ଗଲା କୁଆଡ଼େ ବୋଲି ମନେ ମନେ ବିରକ୍ତ ହେଇଥିଲେ ସେ । ବଡ଼ ପାଟିରେ ଦି ଡାକ ଗୌରୀ ଗୌରୀ ବୋଲି ଡାକିଥିଲେ ମଧ୍ୟ । ବୋକୀଟା ଉପରେ ପଡ଼ି ପୁରା ଦଳଟି ଯାକର ସବୁ ଲୋକଙ୍କ ବୋଇହାକ କରୁଛି । ସେ ମନା କରି ପାରୁନାହାନ୍ତି । ମନା କରିବେ କେମିତି ? କିନ୍ତୁ ଠିକ୍ ତାଙ୍କର ଦରକାର ବେଳକୁ ସେ ମିଳୁନାହିଁ । ମହାପାତ୍ର ନିଜେ ବେଡିଂ ଖଣ୍ଡକ ଉଠେଇ ଓହ୍ଲେଇ ଆସିଥିଲେ ତଳକୁ ।

ମେଜର ପଚାରିଥିଲେ କଣ ହେଲା ଆଜ୍ଞା, ଆଜି ଆପଣଙ୍କର ସବୁ କାମ ଡେରି ଡେରି ହେଉଚି । ଦେହ ଭଲ ନାହିଁକି ? ଆଚ୍ଛା, ସେ ଟୋକା ଖଣ୍ଡକ ଗଲା କୁଆଡେ ? କାହିଁ ସକାଳୁ ଦେଖୁନି ତ । ଅନ୍ୟଦିନ ହେଲେ ସେ ତ ଏତେ ବେଳକୁ ଆମ ସମସ୍ତଙ୍କର ଜିନିଷ ଲଦାଇଦି କରି ସାରନ୍ତାଣି ।

ଆରେ, ସେ ଏପଟେ ନାହିଁକି ? ଆଶ୍ଚର୍ଯ୍ୟ ହେଇ ପଚାରିଥିଲେ ମହାପାତ୍ର । ଭିତର ପଟରେ ତ କାହିଁ ଦେଖିଲି ନାହିଁ ତାକୁ । ଭାବିଲି ଆପଣ ମାନଙ୍କୁ ସାହାଯ୍ୟ କରୁଥିବ ଏପାଖେ । ତା ବେଡିଂ ତ ଗୁଡା ହେଇ ଥୁଆ ହେଇଛି ଉପରେ ।

ସତେ ନା କଣ ? କହିଲେ ମହାପାତ୍ର ଚାଲନ୍ତୁ ତ ଦେଖିବା ବାଥରୁମ୍ ଆଡେ କାଳେ ଥିବ । କଣ୍ଡକ୍ଟରଟା ଗାଡ଼ି ଛାଡ଼ିବା ପାଇଁ ବ୍ୟସ୍ତ ହେଲାଣି କେମିତି ଦେଖୁ ନାହାନ୍ତି ?

ମେଜର ଓ ମହାପାତ୍ର ଦିହେଁ ତିନୋଟି ଯାକ ବଖରା ବୁଲି ବୁଲି ଦେଖିଥିଲେ ।

ଢିଇଟିରେ ପୁରୁଷ ମାନେ ଓ ଗୋଟିକରେ ସ୍ତ୍ରୀ ଲୋକମାନେ ରହୁଥିଲେ । କେବଳ ଗୌରୀର ବେଡିଂ ଛଡ଼ା ଆଉ କିଛି ପଡ଼ି ରହିନଥିଲା । ମହାପାତ୍ର ସବୁଯାକ ବାଥ୍‌ରୁମ୍ ଓ ପାଇଖାନା ଉଣ୍ଡି ଦେଖିଥିଲେ । ହେଲେ କୌଣସି ଠି ଗୌରୀ ନଥିଲା ।

ମହାପାତ୍ର ଗୌରୀର ବେଡିଂଟି ଧରି ତଳକୁ ଓହ୍ଲେଇ ଆସୁ ଆସୁ ପଚାରିଥିଲେ, ଆଚ୍ଛା ବରୁଣ ବାବୁ କାହାନ୍ତି ? ତାଙ୍କ ପାଖରେ ଗପ ଯୋଡ଼ି ବସିନିତ ?

ସେ ଗାଡ଼ିରେ ବସି ସାରିଲେଣି । କହିଥିଲେ ମେଜର୍ । ପରିଡା ବୁଢ଼ାବୁଢ଼ୀ ଦିହେଁ ବି ବସିଛନ୍ତି ଗାଡ଼ିରେ ।

ବଡ ବ୍ୟସ୍ତ ହେଇ ପଡ଼ିଥିଲେ ମହାପାତ୍ର । ପିଲାଟା ତେବେ ଗଲା କୁଆଡ଼େ ? ଅଜଣା ଜାଗା । ସକାଳୁ ସକାଳୁ କୁଆଡ଼େ ବାହାରିଥିବ ? ତାଙ୍କ ମନକୁ ପାପ ଛୁଇଁଲା । କୁଆଡ଼େ ପଳେଇ ଯାଇନିତ ? ମରି ହଜି ଗଲାକି ? ରାତିରେ ଉଠି, କୋଉଠି ବେକରେ ଦଉଡ଼ି ଦେଇ ଆତ୍ମହତ୍ୟା କରିନିତ ?

ଚାହୁଁ ଚାହୁଁ ଖବରଟା ସଂଚରି ଯାଇଥିଲା । ଖାଲି ଓଡ଼ିଆ ଯାତ୍ରୀ ନୁହନ୍ତି, ଅଣଓଡ଼ିଆ ଯାତ୍ରୀମାନଙ୍କ ଭିତରେ ବି କଥାଟା ଚହଳ ପକେଇ ଦେଲା । ଦି ତିନିଜଣ ଆସି ମହାପାତ୍ରଙ୍କୁ ପୋଲିସ୍ ଭଳି ଏଣୁ ତେଣୁ ହଜାର ହଜାର ପ୍ରଶ୍ନ କରି ଯାଉଥିଲେ । ବସ୍ କଣ୍ଡକ୍ଟର ଓ ଟୁର୍ ମ୍ୟାନେଜର୍ ଦିହେଁ ଚିଡ଼ି ଚିଡ଼ି ହେଉଥିଲେ ।

ପ୍ରଫେସର ମହାପାତ୍ର ପୁରା ନର୍ଭସ୍ ହେଇ ଯାଇଥିଲେ । ତାଙ୍କ ମୁହଁରୁ କଥା ବାହାରୁ ନଥିଲା । କାନ୍ଦ କାନ୍ଦ ହେଇ ସେ ବାତୁଳଙ୍କ ପ୍ରାୟ ହେଉଥିଲେ । ଅସଲରେ ଏମିତି କିଛି ଘଟିବ ବୋଲି କେହି କଳ୍ପନା ସୁଦ୍ଧା କରି ପାରିନଥିଲେ । ସେଇ ମୁହୂର୍ତ୍ତରେ କିଏ କଣ କରିବ ଅଥବା ପ୍ରଫେସରଙ୍କୁ କେମିତି ପ୍ରବୋଧନା ଦିଆଯିବ, କେହି ବୁଝି ପାରୁନଥିଲେ । ଭୋର୍ ପାଞ୍ଚଟାରୁ ବସ୍ ଛାଡ଼ିବାର ଥିଲା । ଏ ଭିତରେ ଦି ଘଣ୍ଟା ଅତିକ୍ରାନ୍ତ ହେଇ ଯାଇଥିଲେ ବି ଗୌରୀ ଫେରି ନଥିଲା । ବରୁଣ କହିଥିଲେ, ଅଧୈର୍ଯ୍ୟ ହୁଅନ୍ତୁ ନି । ଚାଲୁ ଚାଲୁ କୁଆଡ଼େ ଗୋଟେ ପଳେଇଥିବ, ଅଳ୍ପ ସମୟ ପରେ ଫେରି ଆସିବ ଯେ । ବରୁଣ ଯଦିଓ ପ୍ରଫେସରଙ୍କୁ ଆଶ୍ୱାସନା ଦେଉଥିଲେ, ମନେ ମନେ ନିଜେ ମଧ୍ୟ ବିଚଳିତ ହେଇ ପଡ଼ିଥିଲେ ଟିକିଏ । ରାତିରେ ଗୌରୀ ଓ ବରୁଣଙ୍କ ଭିତରେ କିଛିଟା ତିକ୍ତ କଥାବାର୍ତ୍ତା ହେଇଥିଲା । କେଉଁ କଥାରୁ କେଜାଣି ଗୌରୀ କହିଥିଲା ସାର୍ ଆପଣ ପିଆପିଇ ଛାଡ଼ି ଦିଅନ୍ତୁ । ଧର୍ମ କର୍ମକୁ ଆଖିରେ ରଖି ମୁଁ ଏମିତି କହୁଛି ବୋଲି ଭାବିବେ ନାହିଁ । କଥା କଣ କି, ବେଶି ପିଇଲେ ଲିଭର ଖରାପ ହେଇଯିବ ।

ହସିଥିଲେ ବରୁଣ ତା କଥା ଶୁଣି । ଯିଏ ପିଉନି, ତାର କଣ ଲିଭର ଖରାପ

ହେଉନି ? ଲିଭର ଖରାପ ନ ହେଲେ ହାର୍ଟ ଖରାପ ହେବ । ହାର୍ଟ ଖରାପ ନ ହେଲେ କୀଡ଼ନି ଖରାପ ହେବ । କିଛି ନା କିଛି ହେଇ ଦିନେ ତ ମଣିଷଟା ମରିବ ।

ଆପଣଙ୍କ ସଙ୍ଗେ ଯୁକ୍ତି କରି ପାରି ହେବ ନାହିଁ । କହିଥିଲା ଗୌରୀ, ଅସଲ କଥା କହିବି ସାର୍, ମୋତେ କାହିଁକି ଜମା ଭଲ ଲାଗୁନାହିଁ, ତୀର୍ଥ କରି ଆସିଥିବ ପୁଣି ଲୁଚେଇ ଲୁଚେଇ ପିଉଥିବ । ତୋତେ କିଏ କହିଲା ମୁଁ ତୀର୍ଥ କରି ଆସିଛି ବୋଲି ?

ମୋତେ କିଏ କହିବ କାହିଁକି ? କହିଥିଲା ଗୌରୀ । ଆପଣ ତୀର୍ଥଯାତ୍ରୀଙ୍କ ମେଳରେ ଅଛନ୍ତି । ପାହାଡ ଚଢ଼ାଳୀ ଦଳ ସଙ୍ଗେ ଆସିଥିଲେ କେବଳ ପାହାଡ ଚଢ଼ିଥାନ୍ତେ । ତୀର୍ଥଯାତ୍ରୀଙ୍କ ସଙ୍ଗେ ଆସିଛନ୍ତି ବୋଲି ମଠ ମନ୍ଦିର ଘୂରି ବୁଲୁଛନ୍ତି । ଆପଣଙ୍କ ସାଂଗରେ ଆସିଥିବା ଅନ୍ୟ ଯାତ୍ରୀଙ୍କ ଭାବନାର କଦର କରିବା ଉଚିତ ନା ।

କିଛି ସମୟ ଯାଏ ବରୁଣ କିଛି ଉତ୍ତର ଦେଇ ପାରିନଥିଲେ ଗୌରୀର କଥା ଶୁଣି । ଯଦିଓ ଗୌରୀ ପିଲାଟି ବେଶ୍ ଭଲ ତଥାପି ତାଙ୍କର ବିରକ୍ତି ଭାବଟେ ଆସି ଯାଇଥିଲା ତା ଉପରେ । ତାଙ୍କ ଜୀବନରେ ଅନ୍ୟର ଦଖଲ ଅନ୍ଦାଜ ସେ ଆଦୌ ପସନ୍ଦ କରି ପାରନ୍ତି ନାଇଁ । ସେ କିଛିଟା ବିରକ୍ତି ମିଶା ଗଳାରେ କହିଥିଲେ, କାହିଁକି ତୋ ପ୍ରଫେସର୍‌ଟି କଣ ଖାଲି ଶୁଦ୍ଧ ପୂତ ମନରେ ତୀର୍ଥ କରି ଆସିଛନ୍ତି ? ଆରେ ବାବୁ ତୀର୍ଥ କରି ଆସିଛ, ସାଂଗରେ ଭୃତ୍ୟ ପରିଚାରକ କାହିଁକି ? ସତେ ଯେମିତି ରାଜା ପାରିଧିକୁ ବାହାରିଛନ୍ତି ପରା । ତାଙ୍କୁ କହନ୍ତୁ ସେ ତାଙ୍କର ଅୟସ ଆରାମ ଯାକ ଘରେ କାହିଁକି ଛାଡ଼ି ଆସି ପାରିଲେ ନାହିଁ ?

ଗୌରୀ ଟିକିଏ ଗମ୍ଭୀର ହେଇଯାଇଥିଲା । ତାଙ୍କ କଥା ଶୁଣି ମନେ ହେଇଥିଲା ଆଘାତ ପାଇଛି ଯେମିତି ତାଙ୍କ କଥାରେ । କିଛି ସମୟ ନଖ କାମୁଡ଼ି ଠିଆ ହେଇ ରହିଥିଲା । ତାପରେ କହିଥିଲା ଆପଣ ପ୍ରଫେସର୍‌ଙ୍କୁ ଭଲ ଭାବରେ ଜାଣନ୍ତି ନାଇଁ ବୋଲି ଲାଗୁଛି । ଆପଣ ତାଙ୍କୁ ବାହାରୁ ଯାହା ଦେଖୁଛନ୍ତି ସେ ସେଇୟା ନୁହନ୍ତି । ଆପଣ ମୋତେ ତାଙ୍କ ଚାକର ବୋଲି କହି ପାରନ୍ତି । ହେଲେ ସାର୍ ଜାଣନ୍ତି, ମୋ ଛଡ଼ା ତାଙ୍କର ପାଖଲୋକ ହେଇ ଆଉ କେହି ନାହାନ୍ତି ।

ବରୁଣ ହସିଥିଲେ ଗୌରୀର କଥାଶୁଣି । ପ୍ରଫେସରଙ୍କୁ ସେ ବହୁତ ଦିନରୁ ଚିହ୍ନନ୍ତି । ଉଭୟେ ଗୋଟିଏ ସହରର ବାସିନ୍ଦା । ସଭାସମିତିରେ ଅଧିକାଂଶ ସମୟରେ ଦେଖାହୁଏ । ପ୍ରଫେସରଙ୍କ ସୁନ୍ଦରୀ ଡାକ୍ତରାଣୀ ସ୍ତ୍ରୀର ଚର୍ଚ୍ଚା ଅନେକଙ୍କ ମୁହଁରୁ ଶୁଣିଛନ୍ତି

ସେ । ସ୍ୱାମୀ ସ୍ତ୍ରୀ ଦିହିଙ୍କ ଭିତରେ ଭଲ ପଡ଼େ ନାହିଁ । ସ୍ତ୍ରୀ କାର୍ ଚଲେଇ ବୁଲୁଥିବା ବେଳେ, ପ୍ରଫେସର୍ ଜଣଙ୍କ ତାଙ୍କର ଧଡ଼ଡ଼ା ଲ୍ୟାମ୍ବ୍ରେଟା ସ୍କୁଟରରେ ଘୂରି ବୁଲନ୍ତି । ଯେ ଯାହାର ସ୍ୱାଧୀନତାକୁ ଉପଭୋଗ କରନ୍ତି । ଦିଜଣ ଯାକ ପରସ୍ପରକୁ ଏତେ ସନ୍ଦେହ କରନ୍ତି ଯେ ଅଧିକାଂଶ ଦିନ ବାଡ଼ିଆପିଟା ହେଉଥାନ୍ତି ଦିହେଁ । କିଏ କୁହେ ତାଙ୍କ ସ୍ତ୍ରୀଟା ଡାକ୍ତର ବୋଷ୍‌ର ରକ୍ଷିତା । ଆଉ କିଏ କୁହେ ପ୍ରଫେସରଟା ପୁରା ବିରାଡି ବୈଷ୍ଣବ । ରିସର୍ଚ୍ଚ ସ୍କଲାର ସୁନ୍ଦରିଆ ପିଲାଙ୍କ ସାଂଗେ ତାର ଲଟପଟ ଚାଲିଥାଏ । ବରୁଣ ହସି ହସି କହିଥିଲେ ତୁ ତାଙ୍କ ପାଖ ଲୋକ ହେବୁ ନାହିଁ ? ଯାହା ମାଲ ଖଣ୍ଡେ ହେଇଚୁ ନା... କହିଦେଇ ବରୁଣ ବୁଝି ପାରିଥିଲେ ସେ ଭୁଲ୍ କରିଛନ୍ତି । ତାଙ୍କର ଏମିତି କହିବା ଉଚିତ ନଥିଲା । ଗୌରୀ ମଧ ଧଡ୍ କରି ଉଠି ତା ଜାଗା ଛାଡ଼ି ଚାଲି ଯାଇଥିଲା । ବରୁଣ ଭାବିଥିଲେ ଗୌରୀ ପିଟି ପକେଇବ ତାଙ୍କୁ ଚାଲିଗଲା ବେଳେ ଗୌରୀ କେବଳ ବିଡ ବିଡ୍ ହେଇ କହିଥିଲା, ବୁଢ଼ାକୁ ଶଳା ନିଶା ଧରି ପକେଇଛି ।

ଏ ଘଟଣା ପରେ ବରୁଣ ଏତେ ଲଜ୍ଜିତ ହେଇ ପଡିଥିଲେ ଯେ ସକାଳେ ଗୌରୀକୁ କେମିତି ମୁହଁ ଦେଖେଇବ, ଭାବି ପାରି ନଥିଲେ । ସତରେ କଣ ଗୌରୀକୁ ନେଇ ତାଙ୍କ ମନ ତଳେ ଏତେ କୁତ୍ସିତ ଭାବନା ଥିଲା ? ଏମିତି ଅଶ୍ଳୀଳ ମନ୍ତବ୍ୟଟେ ସେ କେମିତି ଦେଇ ପାରିଲେ ? ଲୋକେ ତ ଅନେକ କଥା କହନ୍ତି । ଲୋକେ ଯାହା କୁହନ୍ତି କଣ ସବୁ କଥା ସତ ? ଖୁବ୍ ଛୋଟ ପିଲା ନୁହଁ ଗୌରୀ । ବାଇଶି ତେଇଶି ବର୍ଷର ପିଲା । ତାକୁ ପ୍ରଚଣ୍ଡ ବାଧିଥିବ କଥାଟି । ତାଙ୍କ ମୁହଁରୁ ଏ ପ୍ରକାର କଦର୍ଯ୍ୟ କଥା ବାହାରିଲା ମଧ କେମିତି ? ରାତିସାରା ମନସ୍ତାପରେ ଛଟପଟ ହେଇଥିଲେ ବରୁଣ । ଭାବିଥିଲେ ସକାଳେ ଗୌରୀକୁ ଡାକି ବରଂ କ୍ଷମା ମାଗିନେବେ କିନ୍ତୁ ଏମିତି କୁକର୍ମର ବୋଝ ମୁଣ୍ଡେଇବେ ନାହିଁ । ରାତି ତିନିଟା ଆଡ଼କୁ ଜାଣି ଆଖି ଲାଗି ଆସିଥିଲା ତାଙ୍କର । ଯାତ୍ରୀମାନଙ୍କ ଚଳପ୍ରଚଳ ହେବାର ଶବ୍ଦରେ ନିଦ ଭାଙ୍ଗିଥିଲା । ସେ ଉଠି ପଡ଼ି ବାଥରୁମ ଅପରିଷ୍କାର ହେବା ଆଗରୁ ବ୍ୟବହାର କରିବା ପାଇଁ ଚାଲି ଯାଇଥିଲେ । ସେତେବେଳେ ସୁଦ୍ଧା ତାଙ୍କୁ ଜଣାନଥିଲା ଏମିତି ଅଭାବନୀୟ ଘଟଣାଟେ ତାଙ୍କୁ ଅପେକ୍ଷା କରି ବସିଛି ।

ସାତଟା ଯାଏଁ ଅପେକ୍ଷା କରି କରି ଯେତେବେଳେ ଗୌରୀର ଦେଖା ମିଳିଲା ନାଇଁ, ସମସ୍ତଙ୍କ ମନରେ ବିଭିନ୍ନ ପ୍ରକାର ଆଶଙ୍କା ଜାଗି ଉଠିଥିଲା । ଦୀପ ତେଜିଲା ପରି, ଶର୍ମିଷ୍ଠାର ଯାଚ୍ଛସ୍ୟାଚ୍ଛ କଥାବାର୍ତ୍ତା ଗୁଡ଼ା ମଧ ସମସ୍ତଙ୍କୁ ଆହୁରି ଆତଙ୍କିତ କରି ଦେଇଥିଲା । ଯଦିଓ ସେ ପାଗଳୀଙ୍କ ପରି ମନକୁ ଯାହା ଆସୁଥିଲା, କହି ଯାଉଥିଲା, କିନ୍ତୁ ସମସ୍ତଙ୍କୁ ଲାଗୁଥିଲା ଏମିତି ଘଟିବା ବି ଅସଂଭବ କିଛି ନୁହଁ । ଶର୍ମିଷ୍ଠା

କେତେବେଳେ କହୁଥିଲା, କିଡନୀ ଚୋର ର୍ୟାକେଟ୍ ତାକୁ ଉଠେଇ ନେଇଥିବେ ତ କେତେବେଳେ କହୁଥିଲା ସେ ପ୍ଲାନ୍ କରି ଅନ୍ୟ ଦଳରେ ମିଶି ଗଙ୍ଗୋତ୍ରୀ ଯମୁନୋତ୍ରୀ ଆଡେ ପଳେଇଛି । ତା ପର୍ସରେ ସେ ମେଞ୍ଚେ ଟଙ୍କା ରଖିଥିଲା, ମୁଁ ଦେଖିଛି ପରା । ପୁଣି କେତେବେଳେ ଶର୍ମିଷ୍ଠା କହୁଥିଲା, ଜାଣନ୍ତି ନା ଆମେ ଯୋଉ ଶ୍ରୀନଗର ଛାଡ଼ି ଆସିଲୁ ପଛରେ ସେଠି ଗଙ୍ଗାରେ ଶ୍ରୀଯନ୍ତ୍ରଟିଏ ଥିଲା । ସେଇ ଶ୍ରୀଯନ୍ତ୍ର ଯାତ୍ରୀମାନଙ୍କୁ ଟାଣି ନେଉଥିଲା । ଏମିତି ବହୁ ଯାତ୍ରୀ ମୃତ୍ୟୁ ମୁଖରେ ପଡୁଥିଲେ । ଶଙ୍କରାଚାର୍ଯ୍ୟ କୁଆଡ଼େ ସେ ଶ୍ରୀଯନ୍ତ୍ରକୁ ଠାବ କରି, ଓଲଟେଇ ଦେଇଥିଲେ । କିଏ ଜାଣେ ସେଇ ଶ୍ରୀଯନ୍ତ୍ର ଯଦି ଟାଣି ନେଇଥିବ ପୁଣି ଥରେ ?

ପରିଡ଼ା ମାଉସୀ ବାରଣ କରିଥିଲେ ଶର୍ମିଷ୍ଠାକୁ । ଏ ଝିଅ, ଚୁପ ରୁହ, ଅଶୁଭ କଥା ଗୁଡେ ମୁହଁରେ ନିଅନା । ସମସ୍ତଙ୍କ ମନ ଖରାପ ବେଳକୁ ଏଗୁଡ଼ାକ କି କଥା କହୁଛ କହିଲ ?

ଶର୍ମିଷ୍ଠା ଚିଡ଼ି ଯାଇ କହିଥିଲା: ଦେଖ ବାବା, ସେ ପିଲାଟାକୁ ଆରମ୍ଭରୁ ମୋତେ କାହିଁକି ଠିକ୍ ମନେ ହେଉ ନଥିଲା । ଲାଗୁଥିଲା, କିଛି ନା କିଛି ଅଘଟଣ ଘଟେଇବ । ଦେଖିଲ ତ ? କି ଦରକାର ଥିଲା କଞ୍ଚା ବୟସର ପିଲାଟାକୁ ଏ ତୀର୍ଥଯାତ୍ରାରେ ଧରି ଆସିବା ? ତାର କଣ ମୋର ବି ଏବେ ତୀର୍ଥ ଯାତ୍ରା ପାଇଁ ବୟସ ହେଇନି । ଖାଲି ମୋ ବାପାଙ୍କ ଲାଗି ଆସିଛି ଯାହା ।

ପରିଡ଼ା ମାଉସୀ ଚଟ କରି ମୁହଁଟାକୁ ମୋଡ଼ି ଦେଇ କହିଥିଲେ, କାଲି ସନ୍ଧ୍ୟାରେ କେତେ ସେବା କରୁଥିଲା ଲୋ ମୋର । ଜନ୍ମକଲା ପୁଅ କରିବେନି ପରା । ଗୋଡ ହାତ ଘଷି, ମାଉସୀ ଖାଇଲଣି ପିଇଲଣି କି ନାଇଁ ପଚାରି, ସବୁ କଥା ବୁଝୁଥିଲାଟି । ପିଲାଟାର କେତେ ବା ବୟସ । ଖାଇ ପିଇ କରି ବୁଲିବା କଥା । ଧର୍ମ କର୍ମରେ କିଆଁ ମନ ବଳାନ୍ତା ? ବାହାଚୁରା ହେଇ ଘର ଗୃହସ୍ଥି କରିବା କଥା । ସନ୍ୟାସର ଅଲଗା ବଅସ ଅଛି । ତମେ ଚାହିଁଲେ ଝିଅ କିଛି ଅସୁବିଧା ନାହିଁ । କେତେ ବଅସ ହେବକି ଝିଅ ତମକୁ ? ପଚାଶ ଆଡେ ହେବନି ? ସେ ଆଉ ଘରକୁ ଫେରି ଗଲାନି ତ ? କାଲି କହୁଥିଲା ପରା, ଏ ବୁଢ଼ାବୁଢ଼ୀଙ୍କ ସଙ୍ଗେ ଆସି ଖାଲି ମନ୍ଦିର ମଠ ବୁଲୁଥିବାରୁ ଭଲ ଲାଗୁନାହିଁ । ହେ ମଙ୍ଗଳା, ଯୋଉଠି ଥାଉ ଭଲରେ ଥାଉ ।

ଶର୍ମିଷ୍ଠା ପରିଡ଼ା ମାଉସୀଙ୍କ କଥାରେ କ୍ଷୁବ୍ଧ ହେଇଥିଲା ପରି ମନେ ହେଉଥିଲା, କହିଥିଲା, ତମକୁ ମାଉସୀ କେତେ ହେବ, ଷାଠିଏଟି ? ଆଉ ମୁଁ କଣ ତମଠୁ ଦଶବର୍ଷ ସାନ ମନେ ହେଉଚି ?

ବରୁଣ ମେଜର୍‌ଙ୍କୁ ଡାକି ନେଇଥିଲେ । ଚାଲନ୍ତୁ ତ କିଛି ଗୋଟେ କରିବାକୁ ହେବ । ଏଇଠି ଅଯଥା ସମୟ ନଷ୍ଟ କରି ଲାଭ କଣ ?

ବସ୍‌ଟିର ବାକି ଯାତ୍ରୀ ସେତେବେଳକୁ ଭୀଷଣ ବିରକ୍ତ ହେଇ ସାରିଥିଲେ । ଶର୍ମିଷ୍ଠା ସଙ୍ଗେ ବନ୍ଧୁତା ବଢ଼େଇଥିବା ହିନ୍ଦୀ ଭାଷୀ ଯାତ୍ରୀଟି ଆସି ମେଜରଙ୍କୁ କହିଥିଲା, ପୋଲିସ୍‌ରେ ଏଫ.ଆଇ.ଆର ଟେ ଦିଅନ୍ତୁ । ନଚେତ, କିଛି ଅଘଟଣ ଯଦି ଘଟି ଯାଇଥିବ ପଛରେ ହଇରାଣ ହେବେ । ସେତେବେଳେ ପୋଲିସ୍ ଓଲଟା ଆପଣମାନଙ୍କୁ ଦୋଷ ଦେବ, ଆପଣମାନଙ୍କ ଭିତରୁ ଯଦି ଜଣେ ହଜି ଯାଇଥିଲା, ଆମକୁ ଜଣାଇଲେ ନାହିଁ କାହିଁକି ?

ଠିକ୍ କଥା କହୁଛନ୍ତି ବରୁଣ । ଟୁର୍ ମ୍ୟାନେଜର୍ କମ୍ ଗାଇଡ ଟି କିନ୍ତୁ ବିରକ୍ତ ହେଇଥିଲା ପୋଲିସ୍ ଷ୍ଟେସନ ଯିବା କଥା ଶୁଣି । କହିଥିଲା ଏମିତିରେ ଆମର ତିନି ଚାରିଘଣ୍ଟା ବିଳମ୍ବ ହେଲାଣି । ଏତେ ବେଳକୁ ଆମେ ସୀତାପୁର ରାସ୍ତାରେ ଅଧେବାଟ ଆଗେଇ ସାରନ୍ତେଣି । ପୋଲିସ୍ ଷ୍ଟେସନ ଗଲେ ଜାଣନ୍ତୁ ପାଞ୍ଚ ଛଅ ଘଣ୍ଟା ଡେରି ହେଇଯିବ । ଆଜି ଦିନ ଥାଉ ଥାଉ ସୀତାପୁର ପହଞ୍ଚି ହେବନି । ଗୋଟେ ଦିନ ଅଟକି ଯିବା ମାନେ ଆମକୁ ବହୁତ କ୍ଷତି ସହିବାକୁ ପଡ଼ିବ । ତାଛଡ଼ା କେଦାରନାଥକୁ ରାସ୍ତା ଯଦି ସଫା ନଥିବ ସେପଟେ ମଧ୍ୟ ଡେରି ହେଇ ଯାଇପାରେ । ଅନ୍ୟ ଯାତ୍ରୀମାନେ ଅଭିଯୋଗ କରି ପାରନ୍ତି । ପୋଲିସ୍ ଫୋଲିସ୍ ମହା ଝାମେଲା । ଯଦି ସେ ରହି ଯାଇଥିବ ଅନ୍ୟ ବସ୍‌ରେ ନିଶ୍ଚୟ ସେ ଆମ ପାଖରେ ପହଞ୍ଚିବ । ନହେଲେ ଏମିତି କରନ୍ତୁ, ଆପଣମାନଙ୍କ ଭିତରୁ ଜଣେ ଅଧେ ରହି ଯାଆନ୍ତୁ, କେଦାର ଦର୍ଶନ କରି ଫେରିବା ବେଳକୁ ରୁଦ୍ରପ୍ରୟାଗ ପାଖରେ ପୁଣି ଭେଟ ହେଇଯିବ ।

କଣ୍ଡକ୍ଟରର ହିସାବ କିତାବ କେହି ବୁଝୁ ନଥିଲେ । ପ୍ରଫେସର ମହାପାତ୍ର ତା କଥାରେ ଉତ୍ତର ଦେବାକୁ ଯାଇ କହିଥିଲେ ଠିକ୍ ଅଛି, ଆପଣମାନେ ସମସ୍ତେ ଯାଆନ୍ତୁ ମୁଁ ରହୁଛି । ମେଜର୍ କହିଥିଲେ, ଏ କେମିତି କଥା । ଏତେ ବାଟ ଆସି ଅସଲ ଜାଗା ନଯାଇ ଆପଣ ବାଟରେ ଅଟକି ଯିବେ ନା ? ତୁରନ୍ତ ବରୁଣବାବୁ କହିଥିଲେ, ଆପଣ ମାନେ ଯାଆନ୍ତୁ, ପ୍ରଫେସର ଆଉ ମୁଁ ରହି ଯାଉଛୁ । ବାଟରେ ଆପଣମାନଙ୍କ ସଙ୍ଗେ ହୁଏତ ଭେଟ ହେବ ଆମର ।

ଆଚ୍ଛା ନାଟକ ଚାଲିଛି କହି କିଛି ଯାତ୍ରୀ ବିରକ୍ତ ହେବା ଆରମ୍ଭ କରି ହେଇଥିଲେ । ଶେଷରେ ଶର୍ମିଷ୍ଠାର ବନ୍ଧୁଟି କହିଥିଲା ଚାଲନ୍ତୁ, ସମସ୍ତେ ବସ୍‌ରେ ବସିଲେ ଥାନାରେ ଏଫ.ଆଇ.ଆର୍‌ଟେ ଦେଇ ସିଧା ସିଧା ବାହାରି ଯିବା । କଣ୍ଡକ୍ଟର ରାଜି ନଥିଲେ ମଧ୍ୟ ସମସ୍ତେ ଯିବାକୁ ଏକମତ ଥିବାରୁ ସେୟା ହିଁ କରାଗଲା ।

ଶର୍ମିଷ୍ଠା ସେଇ ହିନ୍ଦୀଭାଷୀ ଲୋକଟି ସଙ୍ଗେ ଗପ କରୁ କରୁ ଯାଇ ପାଖାପାଖି ସିଟଟି ଅକ୍ତିଆର କରି ବସିଥିଲା । ପ୍ରଫେସର ମହାପାତ୍ର କଣ ଭାବୁଥିବେ, ସେ ସବୁକୁ ଖାତିର ନ କରି ଗୌରୀ ବିରୁଦ୍ଧରେ ଏଣୁ ତେଣୁ ବକ୍ ବକ୍ କରିବା ଆରମ୍ଭ କରି ଦେଇଥିଲା । ମହାପାତ୍ର ବଡ଼ ଉଦାସ ହେଇ ବସି ରହିଥିଲେ । ମେଜର୍ ଭାବୁଥିଲେ ଶର୍ମିଷ୍ଠା କେମିତି ଚୁପ୍ କରି ବସନ୍ତା କି ? ଶର୍ମିଷ୍ଠା ଯେତେବେଳେ ଏମିତି ବକ୍ ବକ୍ କରେ ତାଙ୍କର ପ୍ରଚଣ୍ଡ କଷ୍ଟ ହୁଏ । ଅଥଚ ସେ ତାକୁ ମନା କରି ପାରନ୍ତି ନାହିଁ । ଲାଗେ ଝିଅଟା ଯଦି କଷ୍ଟ ପାଇବ, ଅପମାନିତ ଅନୁଭବ କରିବ । ଛୋଟ ପିଲା ହୋଇନାଇଁ ଯେ ସେ ଧମକେଇ ଦେଲେ ଚୁପ ହେଇଯିବ ବୋଲି । ଓଲଟା କାନ୍ଦିବ ଅବା ଅଭିମାନରେ ଆହୁରି ବକ୍‌ବକ୍ କରିବ । ଏମିତି ହେଇଚି କେତେଥର । ସେ ଚୁପ୍ କରେଇବାକୁ ଚେଷ୍ଟା କରି ଦେଖିଛନ୍ତି, ଫଳ ଓଲଟା ହେଇଚି । ତେଣୁ ଆଜିକାଲି କିଛି କୁହନ୍ତି ନାଇଁ ତାକୁ । ସବୁ ଶୁଣନ୍ତି, ସବୁ ଜାଣନ୍ତି । କଲେଜରେ ବାଳୁଙ୍ଗା ପିଲାଏ ବ୍ଲାକ୍ ବୋର୍ଡରେ ତାର କାର୍ଟୁନ୍ ଆଙ୍କନ୍ତି । ନାରୀ ଦେହ । ମୁହଁଟା ଗୋଟେ ରେଡ଼ିଓ । କଲିଗ୍‌ମାନେ ତାକୁ ଓ୍ୱାକିଟକି ଡାକନ୍ତି । ଛାତ୍ରମାନେ ବୁଢ଼ୀକୁଢି ବୋଲି ନାଁ ଦେଇଛନ୍ତି । ସବୁକଥା ତାଙ୍କ କାନରେ ପଡ଼େ । ଭଗବାନଙ୍କୁ ଡାକନ୍ତି ତାଙ୍କ ମରିବା ଆଗରୁ ଝିଅଟା ତା ଜୀବନକୁ ସଜେଇ ଗୋଛେଇ ନିଅନ୍ତା କି ହେଲେ । ଏଇ ବୟସରେ ବି ଝିଅଟା କାହାକୁ ଗୋଟେ ଭଲ ପାଇ ପଳେଇ ଯାଆନ୍ତା କି । ହାଡି ପାଣ ହଉ କି ବେକାରିଆ ଆଣ୍ଠୁକୁଡାଟେ ଯଦି ତା ହାତ ଧରିବାକୁ ରାଜି ହୁଅନ୍ତା, ସେ ଖୁସିରେ ଖୁସିରେ ଦେଇ ଦିଅନ୍ତେ ତାକୁ । କିନ୍ତୁ କିଏ ବରଦାସ୍ତ କରିବ, ଶର୍ମିଷ୍ଠାର ଏ ବକ୍‌ବକ୍ । ସେତିକିବେଳେ ସେ ଲକ୍ଷ୍ୟ କରୁଛନ୍ତି ହିନ୍ଦୀ ଭାଷୀ ଲୋକଟା ମୁରୁକି ହସି ହସି ଶର୍ମିଷ୍ଠାର କଥା ଶୁଣି ଯାଉଛି । ସତରେ ଲୋକଟା ତା କଥା ଶୁଣି ଉପଭୋଗ କରୁଛି ବୋଲି ହସୁଛି ନା ପାଗଳଟା ଭାବି ପରିହାସ କରି ହସୁଛି ମ ? ଛେଳି ଯେମିତି ଡାଳ ପତର ଚୋବେଇ ଯାଏ କାଚୁମାଚୁ କରି ଥୋମଣି ହଲେଇ ସେମିତି ଥୋମଣି ହଲୁଛି ଶର୍ମିଷ୍ଠାର । ନା ତା ଆଖି ଲାଜରେ ଅବନ୍ଦ୍ର ହେଇଛି ନା ତା ଓଠରେ ଲାଜୁରା ହସ । ଝିଅଟେ ହେଇଥିବ, ଲାଜ ବୋଲି ମୁଠେ ନଥିବ, କୋଉ ପୁରୁଷଟା ଆଗ୍ରହରେ ବଢ଼ି ଆସିବ କହୁନ ? ଏ ଲୋକଟି କେବେ ବି ଶର୍ମିଷ୍ଠାକୁ ପସନ୍ଦ କରି ପାରିବ ନାହିଁ । ଗୌରୀଟା କୁଆଡେ ହଜି ଯାଇଛି, ଏ ସମୟରେ ଟିକେ ଚୁପ୍ କରନ୍ତା ଭଲା ।

ଥାନା ସାମ୍ନାରେ ଗାଡ଼ି ଅଟକି ଥିଲା । ମହାପାତ୍ର, ବରୁଣ, ହିନ୍ଦୀଭାଷୀ ଲୋକଟି ଓ କଣ୍ଡକ୍ଟର ଓହ୍ଲେଇ ଯାଇଥିଲେ ତଳକୁ । ସେମାନେ ଓହ୍ଲେଇ ଯିବା ପରେ ମେଜର୍ ଶର୍ମିଷ୍ଠାକୁ ପଚାରିଥିଲେ, ତୁ ମୋ ପାଖକୁ ଚାଲି ଆସିବୁ କି ?

ତମ ଦେହ ଭଲ ଲାଗୁନି କି ? ପଚାରିଥିଲା ଶର୍ମିଷ୍ଠା ।

ହଁ, ମୁଣ୍ଡଟା କେମିତି କେମିତି ଲାଗୁଛି ।

ଶର୍ମିଷ୍ଠା ତା ସିଟରୁ ଉଠି ଆସି କହିଥିଲା, ସେ ଟୋକା କୁଆଡେ ଗଲା, ଗଲା । ତୁମେ କାହିଁକି ଚିନ୍ତା କରୁଛ ? କହିବି କି ଡାକ୍ତରଖାନା ଦେଖି ଗାଡ଼ି ଅଟକେଇଲେ ତମ ବ୍ଲଡ୍‌ପ୍ରେସରଟା ମାପି ନେବା ?

ନା, ମୋର କିଛି ହେଇନି, ସେମିତି ବ୍ୟସ୍ତ ହେଲା ଭଳି । ତୁ ଚୁପଚାପ ବସିଲୁ । କେତେ ବକର୍ ବକର୍ ହେଉଛୁ । ସାମାନ୍ୟ ବିରକ୍ତ ହେଇଥିଲେ ମେଜର୍ । କେହି କେହି ଯାତ୍ରୀ ବସ୍‌ରୁ ଓହ୍ଲେଇ ଖିଆପିଆ ଆରମ୍ଭ କରି ଦେଇଥିଲେ । ମେଜର୍ ଶର୍ମିଷ୍ଠାକୁ ପଚାରିଥିଲେ ତୁ କଣ ଖାଇବୁ କହ, ତୋ ଲାଗି ନେଇ ଆସିବି ।

ସେ ଦୋକାନରେ ପୁରି ଛଣା ହେଉଛି । ପୁରି ଖାଇବୁଟି ?

ତମ ଇଛା ଯାହା ଆଣୁଛ ଆଣ କହି ଝରକା ବାହାରକୁ ମୁହଁ ବୁଲେଇ ବସିଥିଲା ଶର୍ମିଷ୍ଠା । ସେ ବୁଝି ପାରୁନଥିଲା, ବାପା ତାକୁ ସେପାଖ ସିଟରୁ ଡାକି ଆଣିଲେ କାହିଁକି ? ମନଟା ଅଭିମାନରେ ଭରି ଯାଇଥିଲା । ସତେ କଣ ବାପାଙ୍କ ଦେହ ଖରାପ ? ନା, ବାହାନାଟେ କରି ଡାକି ଆଣିଲେ । ତାର ଆଉ କଣ ଅଛି ଯେ ? ସେ କଣ ଯୁବତୀ ଝିଅଟେ ହେଇଛି କି ଯେ ବାପାଙ୍କ ଆଖିରୁ ଖୋଞ୍ଚି ହେଉଛି କଥାଟା ।

ମେନୋପଜ୍ ବେଳ ହେଇ ଆସିଲାଣି କି କଣ ଆଜି କାଲି ଆଉ ନିୟମିତ ହେଉନାଇଁ । ପାଞ୍ଚମାସରେ କି ଛଅମାସରେ ଥରେ ହେଉଚି । ତା ପୁଣି ଦିନକ ପାଇଁ ବାସ୍ । କିନ୍ତୁ ମନଟାକୁ ତ କାହିଁ ମେନୋପଜ୍ ଧରୁ ନାହିଁ । ଏକଥା କଣ ସତ ନୁହଁ, ଲୋକଟାର ସଂପର୍କ ତାକୁ ଭଲ ଲାଗୁଥିଲା ବୋଲି ସେ ବାରମ୍ବାର ସେଇଠି ବସିବାକୁ ଚାହୁଁଥିଲା । ଲୋକଟାର ହାତ, ଗପୁ ଗପୁ ଅନ୍ୟମନସ୍କ ଭାବରେ ତା ଜଙ୍ଘରେ ପଡ଼ିଗଲେ ଦେହରେ ଶିହରଣଟେ ଉଠୁଥିଲା । ଇଛା ହେଉଥିଲା, ଲୋକଟି ମୁହଁରୁ କିଛି ଗୋପନୀୟ କଥା ଶୁଣିବା ପାଇଁ ? ସତେ ଯେମିତି ସେ ଏତିକି ଦିନ ପଥର ପାଲଟି ଯାଇଥିବା ଅହଲ୍ୟା ଥିଲା ମୁହୂର୍ତ୍ତକରେ । କିନ୍ତୁ ଏ ବୟସରେ କଣ ଏସବୁ ଶୋଭା ପାଏ ? ଆଉ କଣ ବଂଚି ବର୍ତ୍ତି ଅଛି ଯେ, ବାଳ ସବୁରେ ରଂଗ ଟିକିଏ ଲେଖେଁ ନ ମାରୁଥିଲେ ଧଳା ଝୋଟ ଦିଶୁଥାନ୍ତା ବାହାରକୁ । ଦେହର ସବୁଆଡେ ଅଳ୍ପ ବହୁତେ ଚର୍ବି ଲାଗି ଗୋଲ୍ ଗୋଲ୍ ଦିଶୁଛି କେମିତି ଚେହେରାଟା । ଥୋଡ଼ି ତଳ ମାଂସପେଶି ଢ଼ିଲା ହେଇଗଲାଣି ଯେ ବୟସଟା ଧରା ପଡ଼ି ଯାଉଛି । ଓଠରେ ଲିପଷ୍ଟିକ୍ ଟିକେ ନ ମାରୁଥିଲେ, ସିଝା ଚମଡ଼ା ଗୁଡା ବାହାରକୁ ଦିଶି ଯାଉଥାନ୍ତା ପରା । ଶର୍ମିଷ୍ଠା

ଭାବିଥିଲା ତା ସବୁ ଅସୌନ୍ଦର୍ଯ୍ୟ ଭିତରେ ଯଦି କିଛି ନିଦା ହେଇ ରହିଥାଏ ତା ହେଉଚି ଛାତି । ଏବେ ବି ନିଟୋଳ ହେଇ ରହିଛି, ଯୁବତୀ ଝିଅଟେ ପରି । କିନ୍ତୁ ତା ତ ଗୁପ୍ତଧନ । ନିଜ ଲୋକ ନ ହେଲେ ଗୁପ୍ତଧନର ଟେର କିଏ କେମିତି ପାଇବ ଯେ ? ମେଜର୍ ପତ୍ରଦନାରେ ପୁରି ଆଳୁଦମ୍ ଆଣି ଦେଇଥିଲେ ଶର୍ମିଷ୍ଠା ପାଇଁ । ଆଳୁଦମ୍ରୁ ବାମ୍ଫ ବାହାରୁଥିଲା । ଫୁଙ୍କି ଫୁଙ୍କି ମୁହଁରେ ପୁରି ଆଳୁ ଚିରୁଡାଏ ପୁରେଇ ଶର୍ମିଷ୍ଠା ପଚାରିଥିଲେ, ତମେ ଖାଇଲଣି ? ଯାଅ ତମେ ଖାଇନିଅ । ମେଜର୍ ଓହ୍ଲେଇ ଯାଉ ଯାଉ ପଚାରିଥିଲେ ଚାହା ପିଇବୁ ? ଶର୍ମିଷ୍ଠା ମୁଣ୍ଡ ହଲେଇ ମନା କରିଥିଲା ।

ପ୍ରାୟ ଅଧଘଣ୍ଟା ଲାଗି ଯାଇଥିଲା ସେମାନଙ୍କୁ ଥାନା ପୋଲିସ୍ କାମ ସାରିବାକୁ । ସେମାନେ ଗାଡ଼ିରେ ଉଠିବା ମାତ୍ରେ ଡ୍ରାଇଭର୍ ତା ସିଟକୁ ଚଢ଼ିଯାଇ ହର୍ଣ୍ଣ ଦେଇଥିଲା । ବାକି ଯାତ୍ରୀଙ୍କୁ ଶୁଣେଇବା ପାଇଁ । ମେଜର୍ କହିଥିଲେ ପ୍ରଫେସର୍ ମହାପାତ୍ରଙ୍କୁ ଜଳଖିଆ ଟିକିଏ ଖାଇ ନେଲେନି । ପହଞ୍ଚୁ ପହଞ୍ଚୁ କେତେ ଡେରି ହେବ କହି ହେବନି । ମହାପାତ୍ର କିଛି ଉତ୍ତର ନଦେଇ ନିଜ ସିଟ୍‌ରେ ବସିଥିଲେ । ବରୁଣ ପାଖ ଦୋକାନରୁ ପେଟିସ୍ ଦୁଇଟି ଧରି ଆସି ଗାଡ଼ିରେ ଚଢ଼ିଥିଲେ । ମହାପାତ୍ରଙ୍କ ଆଡକୁ ଗୋଟିଏ ବଢ଼େଇ ଦେଇ କହିଥିଲେ ନିଅନ୍ତୁ ।

ମହାପାତ୍ର ହାତ ହଲେଇ ମନା କରିଥିଲେ ଓ କହିଥିଲେ ଦେଖିଲେ ସେ ଯେଉଁ ପିଲାଟା ଯାଉଛି, ପଛ ଆଡୁ ଗୌରୀ ଭଳି ଦିଶୁଚି ।

ଗୌରୀ ହେଇଥିଲେ ଆମକୁ ଦେଖିଲା ପରେ ଆସନ୍ତା ନାହିଁ ? ଯଦି ସେ ଆମ ମାନଙ୍କୁ ଲୁଚୁ ଥାନ୍ତା, ତେବେ ସେ ଦୌଡ଼ି ପଳେଇ ଯାନ୍ତାନାହିଁ ? ସେ ଆଉ କେହି ହେଇଥିବ । ଆମେ ପୋଲିସ୍ ଷ୍ଟେସନରେ ଲେଖେଇ ଦେଇ ଆସିଲେ । ବର୍ତ୍ତମାନ ଅପେକ୍ଷା କରିବା କଥା । ଯା ଛଡ଼ା ଆମେ ଆଉ କିଛି କରି ପାରିବା ନାହିଁ ।

ଗୌରୀ ନାହିଁ, ଏକଥାଟା ମହାପାତ୍ର ଲକ୍ଷ୍ୟ କଲେ, ଆଉ କାହାରିକୁ ସେମିତି ବାଧୁନି । ଯେମିତି ସହଯାତ୍ରୀଟିଏ, କୋଉ ଷ୍ଟପେଜ୍‌ରେ ଓହ୍ଲେଇ ଗଲା । କିନ୍ତୁ ଗୌରୀ ତ ତାଙ୍କର ବହୁତ ଦିନର ଚିହ୍ନା । ବହୁତ ଦୁଃଖର, ସୁଖର ମୁହୂର୍ତ୍ତ ସବୁ ସେମାନେ ବିତେଇଛନ୍ତି । ବହୁତ ସ୍ମୃତି ସେମାନଙ୍କର ଦିଜଣଙ୍କର ଏକାଠି ମିଶି କି ରହିଛି । ଗୌରୀ ଖାଲି ସହଯାତ୍ରୀ ନୁହଁ । ସେ ତାଙ୍କ ପୁଅ । କିମ୍ବା ପୁଅଠୁ ବେଶୀ କିଛି । ସେ ତାଙ୍କର ବନ୍ଧୁ । କିମ୍ବା ବନ୍ଧୁଠୁ ବି ବେଶୀ କିଛି । ସେ ସୁରଭିଠୁ ବି ବେଶୀ । ତାଙ୍କର ମନେ ହେଲା, ଗୌରୀ ସହ ତାଙ୍କର ପରିଚୟ ଯୁଗଯୁଗରୁ, କେଉଁ କାଳ କାଳାନ୍ତରରୁ ।

ମହାପାତ୍ର ହଠାତ୍ ଛିଡ଼ା ହେଇ ପଡ଼ି ବରୁଣକୁ କହିଥିଲେ, ମୁଁ ଏଇଠି ରହିଯାଉଛି । ଯଦି ଗୌରୀ କୁଆଡେ ଯାଇଥାଏ ତେବେ ସେ ନିଶ୍ଚୟ ଏଠି ଥରେ ଆସି ମୁହଁ ମାରି

ଦେଇଯିବ । ସେତେବେଳେ ମୋତେ ନ ପାଇଲେ, ଭୀଷଣ ଅସହାୟ ଅନୁଭବ କରିବ ସେ ।

ପ୍ରଥମେ ବରୁଣ ଓ ପରେ ମେଜର୍ ଏକଥାରେ ଆପତ୍ତି କରିଥିଲେ । କିନ୍ତୁ ମହାପାତ୍ରଙ୍କ ଜିଦ୍ ଓ ତାଙ୍କ କଥାକୁ କଣ୍ଡକ୍ଟର ଓ ଅଣଓଡ଼ିଆ ଯାତ୍ରୀଙ୍କ ସମର୍ଥନର ଚାପରେ ସେମାନେ ଚୁପ୍ ହୋଇଗଲେ । ବେଡିଂପତ୍ର ଓହ୍ଲେଇ ବସଟା ରୁଦ୍ରପ୍ରୟାଗ ଛାଡ଼ି ଚାଲିଗଲା ପରେ, ମହାପାତ୍ରଙ୍କୁ ଲାଗିଲା, ସେ ପ୍ରକୃତରେ ଭାରି ନିଃସଂଗ । ଏ ଦୁନିଆରେ ତାଙ୍କର ଆଉ କେହି ନାହିଁ । ଜଣେ ଆସିଥିଲା ଅଳ୍ପ ଦିନ ପାଇଁ, ସେ ବି କୁଆଡେ ଛାଡ଼ି ପଳେଇଲା ।

କେହି ନ ଜାଣିଲେ ବି, କାଲି ରାତିରେ ଗୌରୀ ସାଂଗରେ ତାଙ୍କର ବଚସା ଟିକେ ହୋଇ ଯାଇଥିଲା । ଗୌରୀର କଣ ହୋଇଥିଲା କେଜାଣି, କାଲି ତାଙ୍କ ପାଦରେ ତେଲ ମାରିବାକୁ ମନା କରି ଦେଇଥିଲା ସିଧା ସିଧା । ମୋ ଦେହ ଭଲ ଲାଗୁନି, ଆଜି କରିପାରିବିନି କହି । ତା ସିଧାସଳଖ ଉତ୍ତର ଶୁଣି ତାଙ୍କୁ ଖରାପ ଲାଗିଥିଲା ଟିକିଏ । ତେଣୁ କହିଥିଲେ, ତୁ ମୋ ଟାଆଁସା ପାଦରେ କାହିଁକି ହାତ ମାରିଯିବୁ । ତୋର ତ ନରମ ପାଦରେ ହାତ ମାରିବା ଅଭ୍ୟାସ ଅଛି ।

ପ୍ରଫେସରଙ୍କ କଥା ଶୁଣି, ଗୌରୀ ବୁଲିପଡ଼ି ପଚାରିଥିଲା କଣ କହିଲେ ?

ପ୍ରଫେସର ଟିକିଏ ପୂର୍ବରୁ କହିଥିବା କଥାଟିକୁ ଆଉ ଦୋହରେଇଲେ ନାହିଁ । କହିଥିଲେ, ନାଇଁ କିଛି ନୁହଁ ।

ଗୌରୀ ଆଉ କଥା ବଢ଼େଇ ନଥିଲା । ପ୍ରକୃତରେ ସେ ତାଙ୍କ କଥା ଶୁଣି ପାରିଥିଲା କି ନାହିଁ କେଜାଣି । ସୁରଭି ପ୍ରତିଦିନ ନର୍ସିଂହୋମରୁ ଫେରିଲା ପରେ, ଗୌରୀ ତେଲ ଗିନାଏ ନେଇ ତାଙ୍କ ବଖରାକୁ ଯାଏ ମାଲିସ୍ କରିବ ବୋଲି । ଗୌରୀର ସେଇ ସେବାଯତ୍ନ ଅନେକ ଦିନ ପର୍ଯ୍ୟନ୍ତ ତାଙ୍କ ପାଖରେ ଦୃଷ୍ଟିକଟୁ ହୋଇ ରହିଥିଲା । ସେ ଆଦୌ ସହଜରେ ଗ୍ରହଣ କରି ପାରୁନଥିଲେ କଥାଟିକୁ । ତାଙ୍କୁ ମନେ ହେଉଥିଲା, ଗୌରୀ ଗୋଡ ହାତ ଘଷିଦେଲେ, ସୁରଭିଙ୍କ ଦେହରୁ ପରାଣ ଯେତିକି କମୁନି, ତାଠୁଁ ଅଧିକ ଯୌନ ଆନନ୍ଦ ସେ ପାଉଛନ୍ତି ।

ସେଇ ଗୌରୀ ତ ପୁଣି ତାଙ୍କରି ଦେହ ମୁଣ୍ଡରେ ହାତ ବୁଲେଇ ଆଣୁଥିଲା ଦରକାର ବେଳେ । ତାଙ୍କର କଣ ଉଚିତ ଥିଲା ଏମିତି କହିବା ? ମଣିଷଠୁଁ ବେଶୀ ସ୍ୱାର୍ଥପର ଆଉ ହିଂସୁକ ପ୍ରାଣୀ କିଏ ଅଛି ଯେ ?

ପ୍ରଥମରୁ କହି ରଖୁଛି, ମୃତ୍ୟୁ ପରେ କଣ ଘଟେ ଏହା ଈଶ୍ୱର କିମ୍ବା ମୃତ୍ୟୁ ଲଭିଥିବା ବ୍ୟକ୍ତି ଛଡ଼ା କେହି ଜାଣନ୍ତି ନାହିଁ । ତେବେ, ମନେରଖ, ଶରୀର ଭିତରକୁ ପ୍ରବେଶ ଓ ପ୍ରସ୍ଥାନ କରୁଥିବା ଜୀବଟି ଅମର ଅଟେ । ତାର ମୃତ୍ୟୁ ନାହିଁ ।

ବରୁଣ ବସି ରହିଥିଲେ ଅଶୀତି ବର୍ଷ ବୟସ ଅତିକ୍ରମ କରିଥିବା ବୃଦ୍ଧଟିର ସାମ୍ନାରେ । ବୟସର ଭାରରେ ଦାନ୍ତ ଗୁଡ଼ିକ କେଉଁ କାଳରୁ ପଡ଼ି ଯାଇଥିବାରୁ କି କଣ ତାଙ୍କର ଉଚ୍ଚାରଣ ଏତେଟା ସ୍ପଷ୍ଟ ହେଉ ନଥିଲା । ତ୍ରିଯୋଗୀନାରାୟଣର ଛୋଟ ପାହାଡ଼ୀ ସହରର ଅଳ୍ପ ଦୂରରେ ଗୋଟେ ପୁରୁଣା କାଳିଆ ଭଂଗା ଘରେ ଧୂନୀ ଜାଳି ସେ ବସିଥିଲେ । ଅସ୍ଥି କଙ୍କାଳସାର ଶରୀର । ଛାତି ଅବଧି ପାଚିଲା ଦାଢ଼ୀ । ଆଖ ପାଖରେ ଭକ୍ତଟିଏ ବୋଲି କେହି ନାହିଁ । ତ୍ରିଯୋଗୀ ନାରାୟଣର ପ୍ରଚଣ୍ଡ ଶୀତରେ ମଧ ଦେହରେ ବିଶେଷ ପୋଷାକ ନାହିଁ । କେବଳ କମ୍ବଳଟି କାନ୍ଧରେ ଝୁଲି ରହିଥିଲା ଯାହା ।

ମରିବା ପରେ ପ୍ରାଣୀର ତିନି ପ୍ରକାରର ଗତି ହେଇଥାଏ, କହିଥିଲେ ସେ । ନଚିକେତା ଏମିତି ପ୍ରଶ୍ନଟେ କରିଥିଲେ ଯମକୁ, ମୃତ୍ୟୁ ପରେ ପ୍ରାଣୀ କେଉଁ ଅବସ୍ଥା ପ୍ରାପ୍ତ ହୁଏ ? ସେତେବେଳେ ଯମ ତାଙ୍କୁ ଉତ୍ତର ଦେଇଥିଲେ, ମୃତ୍ୟୁ ପରେ ପ୍ରାଣୀ ହୁଏତ ଜଙ୍ଗମ (ମନୁଷ୍ୟ, ଆଉ ପକ୍ଷୀ ଓ ପ୍ରାଣୀ) ଯୋନି ପ୍ରାପ୍ତ କରେ, ନ ହେଲେ ପ୍ରାଣୀ ସ୍ଥାବର ଯୋନି ଲାଭ କରେ । ଏଇ ଦୁଇ ଅବସ୍ଥା ପ୍ରାପ୍ତ ହେବା ପଛରେ କେବଳମାତ୍ର କାରଣ ହେଲା କର୍ମ । ଯଦି ପ୍ରାଣୀର ପାପ ପୁଣ୍ୟ ସମାନ, ସେ ମନୁଷ୍ୟ ଯୋନି ଲାଭ କରେ । ଯଦି ପୁଣ୍ୟ ଅପେକ୍ଷା ପାପ ଅଧିକ ହୋଇଥାଏ, ତେବେ ସେ ପଶୁପକ୍ଷୀ କୀଟ ପତଙ୍ଗ ଏମିତିକି ବୃକ୍ଷ ଯୋନି ପ୍ରାପ୍ତ କରେ ।

ବରୁଣ ନିରବରେ ଶୁଣୁଥିଲେ ସ୍ୱାମୀଜୀଙ୍କ କଥା । ସେ ଜାଣନ୍ତି ନାହିଁ, ବୃଦ୍ଧ ଜଣକ ପ୍ରକୃତରେ ଜଣେ ସିଦ୍ଧ ସାଧକ କି ନା ? ତାଙ୍କ ନାଁ କଣ ଓ କେତେ ବର୍ଷ ଧରି ସେ ଗୁମ୍ଫା ପରି ଏ ପୁରୁଣା ଘରଟିରେ ଅବସ୍ଥାନ କରୁଛନ୍ତି । ତ୍ରିଯୋଗୀ ନାରାୟଣ ମନ୍ଦିର ଦର୍ଶନ ପରେ, ସୀତାପୁରକୁ ଫେରି ଆସିବା ପୂର୍ବରୁ ଛୋଟ ସହରଟିକୁ ବୁଲି ବୁଲି ଦେଖୁଥିଲେ ସେ, ଫେରିବା ରାସ୍ତାରେ ଘୋଡ଼ା ସଇସ ଜଣକ ଏଇ ଘର ସାମ୍ନାରେ ଦୁଇ ମିନିଟ ପାଇଁ ବାବାଙ୍କ ପାଖରେ କାମ ଅଛି କହି ଅଟକି ଥିଲା । କାହିଁକି କେଜାଣି ବାବା ଜଣକ ତାଙ୍କୁ ମଧ ଆକୃଷ୍ଟ କରିଥିଲେ । ସେ ମଧ ସଇସ ସାଙ୍ଗରେ ଘର ଭିତରକୁ ପଶିଯାଇ ଧୂନି ସାମ୍ନାରେ ବସିଥିଲେ । କାନ ଆଖି ଫିଟେଇ ଅନେଇ ନଥିଲେ ଆଦୌ । ସଇସଟି କିଛି ଗୋଟେ ପୁଡ଼ିଆ ନେଇ ଘର କୋଣରେ ରଖିଥିଲା ଓ ବରୁଣଙ୍କୁ ଡାକିଥିଲା, ଚାଲନ୍ତୁ ସାହାବ୍ ।

ବରୁଣ ହାତରେ ଇସାରା କରିଥିଲେ, ଅପେକ୍ଷା କର ବୋଲି । ସଇସଟି ନିର୍ଦ୍ଦେଶ ପାଇ ଘୋଡ଼ାଟିକୁ ଗଛରେ ବାନ୍ଧି ଦେଇ ବସି ବସି ବିଡ଼ି ଟାଣିଥିଲା । ସେ ପାଞ୍ଚ ସାତ ମିନିଟ ଧରି ସେମିତି ବସି ରହିଥିଲେ ମଧ ବାବା ଆଖି ଫିଟେଇ ନଥିଲେ ବରଂ ତାଙ୍କ ମୁହଁ ଫିଟିଥିଲା । ସତେ ଯେମିତି ସେ ବରୁଣଙ୍କ ମନ କଥା ପଢ଼ି ସାରିଛନ୍ତି । କହିବା ଆରମ୍ଭ କରିଥିଲେ ଜନ୍ମ ମୃତ୍ୟୁର ରହସ୍ୟ ।

ହଁ, ମନୁଷ୍ୟ ଯୋନିରେ ପ୍ରାଣୀ ସାଂସାରିକ ଭୋଗ ସହିତ ସ୍ୱତନ୍ତ୍ର ବିଚାରରେ ମଧ କାମ କରିବାର ସୁଯୋଗ ପାଇପାରେ । କିନ୍ତୁ ଅନ୍ୟ ଯୋନିରେ ଜନ୍ମଲାଭ କରିଥିବା ପ୍ରାଣୀର ଜୀବନ ବନ୍ଦୀଶାଳା ସଦୃଶ । ମନୁଷ୍ୟ ଯେତେବେଳେ ବାସ୍ତବ ଜୀବନରେ ବନ୍ଦୀଗୃହକୁ ଯାଏ, ତାକୁ ସେଇ ଦଣ୍ଡ ବିଧାନ କରିବା ପଛରେ ଉଦ୍ଦେଶ୍ୟ କଣ ଥାଏ ? ପୁରୁଣା ଅଭ୍ୟାସକୁ ସୁଧାରି ନେବା ଓ ଜୀବନଯାପନକୁ ସଜାଡ଼ି ନେବା । ମନେ ରଖ, ସର୍ବୋଚ୍ଚ ନ୍ୟାୟାଧୀଶଙ୍କ ଆଜ୍ଞାରେ ବିଭିନ୍ନ ଯୋନି ପ୍ରତିଟି ଜନ୍ମରେ ଦଣ୍ଡ ପାଇବା ସାଥେ ସାଥେ ଜୀବନ ଓ ଅଭ୍ୟାସକୁ ସୁଧାରି ନେବା ସୁଯୋଗ ପାଇଥାଏ ।

ଜୀବାତ୍ମା ଯେତେବେଳେ ଉର୍ଦ୍ଧ୍ୱଶ୍ୱାସ ନେବା ଆରମ୍ଭ କରି ଦେଇଥାଏ, ସେତେବେଳେ ତା ପ୍ରାଣ ସମେତ ସବୁ ଇନ୍ଦ୍ରିୟ ଗୋଟିଏ ଜାଗାରେ ଉପସ୍ଥିତ ହୁଅନ୍ତି । ଜୀବ ସେଇ ସମୟରେ ତାର ସମସ୍ତ ତେଜକୁ ଯାହା ସମଗ୍ର ଶରୀରରେ ବିଛାଡ଼ି ହୋଇ ପଡ଼ିଥାଏ, ଏକାଠି କରିନିଏ । ତେଣୁ ତାକୁ ବାହ୍ୟଜଗତର କୌଣସି ବସ୍ତୁ ଦିଶେ ନାଇଁ, ଶୁଭେ ନାଇଁ ଓ ତେଣୁ ବାହ୍ୟ ଜଗତରେ ଥିବା ତା ବନ୍ଧୁ ପରିଜନମାନେ କହିବା ଆରମ୍ଭ କରି ଦେଇଥାନ୍ତି, ସେ ଆଉ ଲୋକବାକ ଚିହ୍ନି ପାରୁ ନାହାନ୍ତି, ଶୁଣି ପାରୁ ନାହାନ୍ତି କି ବାସ୍ନା ବାରି ପାରୁ ନାହାନ୍ତି । କିନ୍ତୁ ସେତେବେଳକୁ ଜୀବାତ୍ମାର ସମସ୍ତ ତେଜ ହୃଦୟ ଦେଇ ବାହାରି ଯାଏ ।

ଗୋଟିଏ ଶରୀର ତ୍ୟାଗ କରି ଅନ୍ୟ ଶରୀରରେ ପ୍ରବେଶ କରିବା ପାଇଁ ଜୀବକୁ ବେଶ୍ କିଛି ସମୟ ଲାଗିଥାଏ । କିନ୍ତୁ ସେ ସବୁ ସମୟକୁ ମନୁଷ୍ୟମାନଙ୍କ ଦିନ ମୁହୂର୍ତ୍ତ, ବର୍ଷ ମାସରେ ଗଣି ହେବ ନାହିଁ । ନିଜର କାମନା ଅନୁସାରେ ଜୀବନ ଗତି ନିଶ୍ଚିତ ହୋଇଥାଏ । ଜୀବିତ ଅବସ୍ଥାରେ ମନୁଷ୍ୟ ଯେଉଁ ବସ୍ତୁ କାମନା କରିଥାଏ, ସେଇ ବସ୍ତୁ ଲାଭ କରିବା ପାଇଁ ଅଦମ୍ୟ ଆଗ୍ରହରେ ବାଧା ପ୍ରତିବାଧା ନ ମାନି ଆଗେଇ ଯାଇଥାଏ । ଠିକ ସେଇପରି ମୃତ୍ୟୁ ପରେ କାମନାର ସ୍ରୋତ ତାକୁ ଟାଣି ନେଇ ସେଇ ଜାଗାରେ ପହଁଚାଏ ।

ପାଖରେ ଗଦା ହୋଇ ରହିଥିବା କାଠରୁ ଦିଖଣ୍ଡ ଆଣି ଧୂନିରେ ସେ ସଜାଡ଼ିଲେ ।

ଧିରେ ଧିରେ ଲିଭି ଆସୁଥିବା ଶିଖା, ଶୁଖିଲା କାଠକୁ ଚାଟିଲା ପରି ଜାବୁଡ଼ି ଧରିଥିଲା । ସଇସ ଓ ଘୋଡ଼ା ବାହାରେ ଅଛନ୍ତି କି ନାହିଁ ଦେଖିବା ପାଇଁ ସେ ମୁହଁ ବୁଲେଇ ରାସ୍ତା ଆଡ଼କୁ ଦେଖିଥିଲେ ।

ସେମିତି ନିଦ୍ରିତ ଅବସ୍ଥାରେ ଥାଇ, ବାବା ଜଣକ କହିଥିଲେ, ତମେ ବ୍ୟସ୍ତ ହୁଅ ନାହିଁ । ତମେ ଏଠାରୁ ନ ବାହାରିଲା ଯାଏ ସେ କଦାପି ତୁମକୁ ଛାଡ଼ି ଚାଲିଯିବ ନାହିଁ ।

ବରୁଣ ମନେ ମନେ ଚମତ୍କୃତ ହେଲେ । ଲୋକଟି କଣ ଦିବ୍ୟଦ୍ରଷ୍ଟା ? ଆଖି ବନ୍ଦ କରି ମଧ ସବୁ ଦେଖିପାରେ ? ମନର ଭାବନାକୁ ବୁଝିପାରେ ? ଆସିଲା ପରଠୁଁ ସେ ତାଙ୍କୁ ଗୋଟିଏ ହେଲେ ପ୍ରଶ୍ନ କରି ନାହାନ୍ତି । ଅଥଚ ତାଙ୍କ ମନର ଭାବନା କିଛି ଅଛପା ରହି ନାହିଁ । ଭୟ ଟିକିଏ ଲାଗିଥିଲା ତାଙ୍କୁ । ଏ କିଛି ନୂଆ ଭେଳିକି ନୁହେଁ ତ ? ଅବା ସେ ସ୍ୱୟଂ ଈଶ୍ୱରଙ୍କୁ ଭେଟିଛନ୍ତି ? କିନ୍ତୁ ତାଙ୍କ ପରି ଗୋଟେ ଭୋଗୀ ଓ ନାସ୍ତିକ କଣ ଈଶ୍ୱରଙ୍କୁ ଭେଟିପାରେ ? ସେ ଗୋଟେ ଅଦ୍ଭୁତ ମାୟା ଜାଲରେ ଛନ୍ଦି ହେଇ ଯାଇ ନାହାନ୍ତି ତ ? ତାଙ୍କର ଏ ଜାଗା ଛାଡ଼ି ଚାଲିଯିବା ଉଚିତ । ଅଥଚ ସେ ଯାଇ ପାରୁ ନାହାନ୍ତି କାହିଁକି ?

ମନୁଷ୍ୟ ସବୁଠୁ ବେଶୀ ଭୟ କରେ ମୃତ୍ୟୁକୁ । କିନ୍ତୁ ମୃତ୍ୟୁ ଭୟପ୍ରଦ କି ? ଭାବିଥିଲେ ବରୁଣ । ଲାପ୍ଲାସ୍ ମଧ କଣ ମୃତ୍ୟୁକୁ ଭୟ କରି ଶେଷକୁ ଈଶ୍ୱର ବିଶ୍ୱାସୀ ହେଇ ଯାଇଥିଲେ ? ସୂର୍ଯ୍ୟ, ନକ୍ଷତ୍ର ଓ ବିଭିନ୍ନ ଗ୍ରହ ଉପଗ୍ରହ ମାନଙ୍କର ଉତ୍ପତ୍ତି ସମ୍ବନ୍ଧୀୟ ନେଚୁରାଲ୍ ଥିଓରୀ ଉପରେ ଏକ ବହି ଲେଖିଥିଲେ ଫ୍ରାନ୍ସର ବିଖ୍ୟାତ ବୈଜ୍ଞାନିକ ଲାପ୍ଲାସ । ପୁସ୍ତକଟିକୁ ନେପୋଲିଅନଙ୍କୁ ଭେଟି ସ୍ୱରୂପ ଦେଇଥିଲେ । ନେପୋଲିଅନ୍ ସେ ବହିଟିକୁ ପଢ଼ି ଲାପ୍ଲାସ୍‌ଙ୍କୁ ପଚାରିଥିଲେ ଏତେ ବଡ଼ ବହିରେ ଏତେ କଥା ଲେଖିଛ, ଅଥଚ ଜଗତର ସୃଷ୍ଟିକର୍ତ୍ତାଙ୍କ ସଂପର୍କରେ ଧାଡ଼ିଟିଏ ମଧ ଲେଖିଲ ନାହିଁ କାହିଁକି ? ଲାପ୍ଲାସ୍ ଉତ୍ତର ଦେଇଥିଲେ ସୃଷ୍ଟିର ରହସ୍ୟ ବିଚାର କଲାବେଳେ ମୋ ମନରେ ଈଶ୍ୱର କଳ୍ପନା ଆଦୌ ଆସି ନଥିଲା । କିନ୍ତୁ ସେଇ ଲାପ୍ଲାସ୍ ଯେତେବେଳେ ବାର୍ଦ୍ଧକ୍ୟରେ ପହଞ୍ଚିଲେ ମୃତ୍ୟୁ ତାଙ୍କର ଦ୍ୱାରଦେଶରେ ଅପେକ୍ଷା କରି ରହିଥିଲା, ସେ ଏତେ ଭୟଭୀତ ହେଇ ପଡ଼ିଥିଲେ ଯେ କହିଥିଲେ, ଲଭ୍ ଇଜ୍ ଗ୍ରେଟର ଦାନ୍ ଥାଉଜେଣ୍ଡସ୍ ଅଫ ମାଇଁ ମାଥିମେଟିକ୍ସ । ଲଭ୍ ମାନେ ଏଠି ଈଶ୍ୱର ପ୍ରେମ କୁହ, ସେ ବୁଝାଇଥିଲେ ।

ଠିକ୍ ସେଇପରି ବନ୍ଦୀଗୃହରେ ବସି କୁଷ୍ଠରୋଗ ଭୋଗୁଥିବା ଲୋକଟିକୁ ନିଆଯାଉ । ତା ଆଙ୍ଗୁଠି ସବୁ ଛିଣ୍ଡି ଯାଇଛି । ଘା ରକ୍ତ ପୂଜ ତାକୁ ବିଭତ୍ସ ଓ ଯନ୍ତ୍ରଣାକର

ଅବସ୍ଥାରେ ପହଞ୍ଚାଇ ଦେଇଛି । ତମେ ତାକୁ ସେଇ ମୁହୂର୍ତ୍ତରେ କୁହ, ଏ ଜୀବନ ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର, ସେ ଭୟରେ ନିଜର କାନ ବନ୍ଦ କରି ଦେବ ।

ମୃତ୍ୟୁକୁ ଏତେ ଭୟ କାହିଁକି ? ପଚାରିଥିଲେ ବାବା । ସ୍ନାୟୁ ତନ୍ତ୍ରୀ ଓ ନାଡୀର ସମଷ୍ଟିରେ ତିଆରି ହୁଏ ଶରୀରରେ ଆମର ଆତ୍ମା ସଂଯୋଗ ହେଲେ ତାହା ଜୀବନ ହୁଏ ଆଉ ସେଇ ଆତ୍ମାର ବିୟୋଗର ନାମ ମୃତ୍ୟୁ । ଆତ୍ମା ଅଜନ୍ମା ଅଟେ । କୌଣସି ଶରୀରକୁ ଛାଡ଼ିବା ପରେ ଆତ୍ମାର ତିନୋଟି ଗତି ହୁଏ । ପ୍ରଥମେ ଆତ୍ମା ଧୂମ୍ର ଦଶା ପ୍ରାପ୍ତ ହୁଏ । ଏହି ଦଶାରେ ଆତ୍ମା ସାମାନ୍ୟ ଆଲୋକ ଭିତରେ ଗତି କରିଥାଏ । ଧୂମ୍ର ଦଶାରୁ ଆତ୍ମା ରାତ୍ରି ଦଶାକୁ ପ୍ରାପ୍ତ ହୁଏ । ଏହି ଦଶାରେ ଆତ୍ମା ଅନ୍ଧକାର ମଧ୍ୟ ଦେଇ ଗତି କରେ । ଏହାପରେ ଆତ୍ମା କୃଷ୍ଣପକ୍ଷ ଦଶା ମଧ୍ୟ ଦେଇ ଗତି କରେ, ଯେଉଁଠି ଅନ୍ଧକାର ଆହୁରି ନିବିଡ଼ ହୋଇଥାଏ । ତତ୍‌ପରେ ଷାଣ୍ମାସିକ ଦକ୍ଷିଣାୟନୀ ଦଶା ପ୍ରାପ୍ତ ହୁଏ । ଯାହା ଆହୁରି ଅନ୍ଧକାରମୟ ଥାଏ । ତାପରେ ଯାଇ ସେ ପୈତୃକ ଦଶା ପ୍ରାପ୍ତ ହୁଏ । ଏହା ଏକ ବାୟବୀୟ ଦଶା । ବାୟୁର ଅନ୍ୟନାମ ପିତରଃ । ପଞ୍ଚଭୂତ ମଧ୍ୟରେ ଆଲୋକ ପରେ ବାୟୁର ସ୍ଥାନ, ତୁମେ ଜାଣ । ପୈତୃକ ଦଶା ପରେ ଆକାଶୀ ଦଶା ଆତ୍ମାକୁ ପ୍ରାପ୍ତ ହୁଏ । ସବୁଠୁଁ ଶେଷରେ ଆତ୍ମା ଚନ୍ଦ୍ରମାସୀ ଦଶାକୁ ପହଞ୍ଚେ । ଏହା ପ୍ରକାଶମୟ ଅବସ୍ଥା । ଚନ୍ଦ୍ରମାସୀ ଦଶାକୁ ପ୍ରାପ୍ତ ହେଇ ଆତ୍ମା କିଛି କାଳ ନିଜ କର୍ମ ଅନୁସାରେ ନିବାସ କରିଥାଏ । ତତ୍‌ପରେ ପୁଣି ସେ ଜୀବ ଯୋନିରେ ପ୍ରବେଶ କରିଥାଏ ।

ଯେ ତ ଥିଲା ସକାମ କର୍ମ ଫଳର ଗତି । କିନ୍ତୁ ଯେଉଁମାନେ ନିଷ୍କାମ କର୍ମରେ ନିଜକୁ ନିୟୋଜିତ କରିଥାନ୍ତି ସେମାନେ ମୃତ୍ୟୁ ରୂପକ ବନ୍ଧନରୁ ମୁକ୍ତ ହେଇ ବ୍ରହ୍ମଲୋକ ଗମନ କରନ୍ତି । ବ୍ରହ୍ମଲୋକରେ ଅଛି, ବିଦ୍ୟୁତ, ଚନ୍ଦ୍ରମା, ତାରା, ସୂର୍ଯ୍ୟ । କାହାରି ପ୍ରକାଶ ନଥାଏ । ତଥାପି ତାହା ଏକ ଅପୂର୍ବ ଜ୍ୟୋତିର୍ମୟ ସ୍ତର । ବ୍ରହ୍ମଲୋକ ପ୍ରାପ୍ତି ଅର୍ଥାତ୍ ପ୍ରାଣୀ ବ୍ରହ୍ମର ସମୀପ ହୁଏ, ପ୍ରବୃତ୍ତି ଠାରୁ ନିବୃତ୍ତି ଲାଭ କରେ ।

ବାବା ଏତିକି କହିବା ପରେ ନିରବ ହେଇଗଲେ । ବରୁଣ ଅପେକ୍ଷା କରି ରହିଲେ ହୁଏତ ନିରବତା ଭାଙ୍ଗି ପୁଣି କିଛି କହି ବସିବେ ସେ । କିନ୍ତୁ ନା ସେ ଆଉ ମୁହଁ ଫିଟାଇଲେ ନାହିଁ । ତାଙ୍କର ମନେ ହେଇଥିଲା, ସାମ୍ନାରେ କାଛକୁ ଆଉଜି ବସି ରହିଥିବା ଏ ବାବା ଜଣଙ୍କ ଦେହରେ ଯେମିତି ଜୀବନ ନାହିଁ । ବାବାଙ୍କୁ ସ୍ପର୍ଶ କରିବାକୁ ତାଙ୍କର ବହୁତ ଇଛା ହେଲା । ତାଙ୍କର ମନେହେଲା, ବାବା ଯେମିତି ମଣିଷ ନୁହନ୍ତି । ଗୋଟେ ଛାୟାମୂର୍ତ୍ତି ମାତ୍ର । ନ ହେଇଥିଲେ ଏମିତି ନିଷ୍ପ୍ରାଣ ମୂର୍ତ୍ତିଟେ ଭଳି ରହିଥିବା ଲୋକଟି ଏମିତି ସାରଗର୍ଭକ କଥା କହିଲା ପରେ ପୂରାପୁରି ଚୁପ ହେଇଯିବେ

କେମିତି ?

ବାହାରେ ଘୋଡା ସଇସ ଡାକଦେଲା, ଚାଲନ୍ତୁ ସାହାବ, ବାହାରିବା । ନଚେତ୍ ସନ୍ଧ୍ୟା ପୂର୍ବରୁ ପହଞ୍ଚ୍ ହେବ ନାହିଁ । ବରୁଣ ଘର ଭିତରୁ ବାହାରି ଆସିଥିଲେ । ସବୁକିଛି ଏତେ ନାଟକୀୟ ଥିଲା ଯେ ସେ ଯେମିତି ସ୍ୱପ୍ନ ଦେଖୁଥିଲେ । ଅଥବା ସତ୍ୟ ଘଟଣା ଥିଲା, ଏ ପ୍ରକାର ମନେ ହେଉଥିଲା ତାଙ୍କର । ସେ ଘୋଡାରେ ବସିଥିଲେ । ସଇସଟି ତାଙ୍କ ପାଖେ ପାଖେ ଚାଲୁଥିଲା । ସେ ଦେଖିଥିଲେ, ତାଙ୍କ ଦଳର କେହି ହେଲେ ଦିଶୁ ନାହାନ୍ତି । ଫେରିବା ବାଟରେ ସଇସ ନିଜ ଆଡୁ କହିଥିଲା ସାହାବ, ଆପଣ ବଡ ଭାଗ୍ୟବାନ ଲୋକ ।

କାହିଁକି ? ଆଶ୍ଚର୍ଯ୍ୟ ହେଇ ପଚାରିଥିଲେ ବରୁଣ ?

ଏତେ ଲୋକ ପ୍ରତିଦିନ ଏଇବାଟେ ଯିବା ଆସିବା କରନ୍ତି । କିଏ କେଉଁ ମୂଳକର । ହେଲେ ସଭିଙ୍କୁ ସେ ସୁଯୋଗ ମିଳେନା, ଯାହା ଆଜି ଆପଣ ପାଇଲେ ।

ସିଧା ସିଧା କୁହ, କଣ କହିବାକୁ ଚାହୁଁଛ ? କହିଥିଲେ ବରୁଣ ।

ମୌନି ବାବାର ପାଟି ସହଜେ ଖୋଲେନା । ସେ ମୌନ ହେଇ ବସିଥାଏ ବୋଲି ତାର ନାଁ ମୌନିବାବା । ଆମ ଗଡ଼ୱାଲୀ ଲୋକଙ୍କ ଭିତରେ ବି ଖୁବ୍ କମ ଲୋକ ଅଛନ୍ତି, ଯେଉଁମାନେ କି ତାଙ୍କ କଥା ଶୁଣିଛନ୍ତି । ଲୋକେ କୁହନ୍ତି ମୌନିବାବା ଏଇ ଗୁମ୍ଫାରେ ଦୁଇଶ ବର୍ଷରୁ ବେଶି ହେବଣି ରହିଛି ।

ବରୁଣ, ସଇସର କଥା ଶୁଣି, ହସିଥିଲେ । ଦୁଇଶ ବର୍ଷ କେବେ କିଏ ବଂଚିବା ତମେ ଶୁଣିଛ ? ସଇସ କହିଥିଲା, ନାଇଁ ସାହାବ, ମିଛ ନୁହେଁ । ମୋ ଜେଜେବାପା କୁହେ ସେ ମୌନିବାବା କଥା ତା ବାପ ମୁହଁରୁ ଶୁଣିଥିଲା ପରା ।

ମନେ ମନେ ଭାବିଥିଲେ ବରୁଣ, ଆମ ଦେଶର ଲୋକେ ବଡ଼ ଅଜବ । ଯେ କୌଣସି ଘଟଣା ଅବା କଥା ସଂଗେ ଅଲୌକିକ କାହାଣୀଟେ ଯୋଡ଼ି ଦେବାକୁ ବେଶି ଭଲ ପାଆନ୍ତି । ରାମାୟଣ, ମହାଭାରତରେ କଣ କିଛି କମ୍ ଅଲୌକିକ କାହାଣୀ ରହିଛି ? ଯେମିତି ଅଲୌକିକ କାହାଣୀ ନ ଯୋଡ଼ିଲେ କୌଣସି ବ୍ୟକ୍ତିର ମାହାତ୍ମ୍ୟ ଜଣା ପଡ଼ିବ ନାହିଁ ।

ବରୁଣ ପଚାରିଥିଲେ ତମେ ବାବାଙ୍କୁ କଣ ଦେବାକୁ ଯାଇଥିଲ ?

କିଛି ଶୁଖିଲା କିସ୍‌ମିସ୍ ।

କିସ୍‌ମିସ୍ ଗୁଡ଼ିକ କଣ ହେବ ?

ବାବା ଖାଇବେନି ତ ବଂଚିବେ କେମିତି ?

ଓଃ । କହି କିଛି ସମୟ ନିରବ ରହିଥିଲେ ବରୁଣ । ତାପରେ ପଚାରିଥିଲେ କିଛି ପ୍ରଶ୍ନ ପଚାରିଲେ ଉତ୍ତର ଦିଅନ୍ତି କି ବାବା ।

ସଇସଟି ବୋଧେ ତାଙ୍କ କଥା ବୁଝିପାରି ନଥିଲା । ପଚାରିଥିଲା କି ପ୍ରଶ୍ନ ?

ଯେମିତି କିଏ ହଜିଗଲା, ସିଏ ମିଳିବ କି ନାହିଁ, ସେ ବଂଚିଛି କି ନାହିଁ । ଏଇ ଭଳି ପ୍ରଶ୍ନ ସବୁ ।

ସଇସଟି କହିଥିଲା, ନା, ମୌନିବାବା ନିଜ ମନକୁ ଯାହା ଗପେ । କାହାରି ପ୍ରଶ୍ନର ଉତ୍ତର ଦେବା କଥା ତ କାହିଁ ଆମେ ଜାଣିନୁ ।

ସେମାନେ ପାହାଚ ତଳକୁ ଓହ୍ଲେଇ ଆସୁଥିଲେ । ସାମାନ୍ୟ ବର୍ଷା ଆରମ୍ଭ ହେଇ ଯାଇଥିଲା । ସାଂଗରେ କାଲୁଆ ପବନ । ବରୁଣ ପକେଟରୁ ରୁମାଲ କାଢ଼ି ମୁହଁ ପୋଛି ଭାବିଥିଲେ, ଜୀବନରେ କାହାର କି ପ୍ରକାର ଅନୁଭୂତି ଯେ ହେବ କହି ହେବ ନାହିଁ । ତାଙ୍କୁ କଣ ଜଣାଥିଲା ଏମିତି ମୌନି ବାବାଟେ, ପରିତ୍ୟକ୍ତ ଘରଟିରେ ଅପେକ୍ଷା କରି ବସିଛନ୍ତି ତାଙ୍କୁ ଜନ୍ମ ମୃତ୍ୟୁର ରହସ୍ୟ ଶୁଣେଇବା ପାଇଁ ? କିନ୍ତୁ ନିର୍ଦ୍ଦିଷ୍ଟ ଭାବେ ସେ ତାଙ୍କୁ ଏ ସବୁ ଶୁଣେଇଲେ ବା କାହିଁକି ? ସଇସଟି କହୁଥିଲା, ବାବା ପ୍ରାୟ ମୌନ ଥାନ୍ତି । ବହୁତ କମ ଲୋକ ତାଙ୍କ ମୁହଁରୁ କଥା ଶୁଣିଛନ୍ତି । ଆବଶ୍ୟକ ନ ହେଲେ ସେ କୁହନ୍ତି ନାହିଁ । ତେବେ ତାଙ୍କୁ ଏସବୁ ଶୁଣେଇବାର କି ପ୍ରୟୋଜନ ଥିଲା ? ତାଙ୍କର କଣ ମୃତ୍ୟୁ ଆସନ୍ନ ? ଅଥବା ତାଙ୍କ ଦ୍ୱାରା କିଛି ନୂଆ କାର୍ଯ୍ୟ ସାଧିତ ହେବାକୁ ଯାଉଛି ? ତାଙ୍କ ଦ୍ୱାରା ?

---

ଅନେକ ରାତିରୁ ଉଠି ପଡ଼ିଥିଲେ ସମସ୍ତେ । ସଙ୍ଗେ ସଙ୍ଗେ କଣ କରିବାକୁ ହେବ, କେହି ବୁଝିପାରୁ ନଥିଲେ । ଶର୍ମିଷ୍ଠା ଅଯଥା ବ୍ୟସ୍ତ ହୋଇ କାନ୍ଦିବା ଆରମ୍ଭ କରି ଦେଇଥିଲା । ମେଜର୍ ଆଖି ବୁଜି ପଡ଼ି ରହିଥିଲେ । ତାଙ୍କର ଭୀଷଣ ଶ୍ୱାସକଷ୍ଟ ହେଉଥିଲା । ଶର୍ମିଷ୍ଠା କହୁଥିଲା, ବାପାଙ୍କର ମଝିରେ ମଝିରେ ବ୍ରୋଙ୍କାଇଟିସ୍ ବାହାରେ । ସେଥିପାଇଁ ମୁଁ ପ୍ରଥମରୁ ତାଙ୍କୁ ମନା କରିଥିଲି, ଏପଟେ ଭୀଷଣ ଥଣ୍ଡା । ଏପଟକୁ ନ ଆସିବା ପାଇଁ । କହୁଥିଲି, ରାମେଶ୍ୱରମ୍ ଚାଲ, ଦ୍ୱାରକା ବି ଦେଖି ଆସିବା । କିନ୍ତୁ ହିମାଳୟକୁ ମନ ବଳାଅନି । କିନ୍ତୁ ସେ ମାନିଲେ ନାହିଁ । କହିଲେ, ସକାଳୁ ମୁଁ ଦୁଇ କିଲୋମିଟର ରାସ୍ତାରେ ଚାଲୁଛି । ବଜାର ସଉଦା କରୁଛି । ରୋଷେଇବାସ କରୁଛି । ମୋତେ ତ କାହିଁ କେବେ ଦୁର୍ବଳ ଲାଗୁନାହିଁ । ମୁଁ ଠିକ୍ ଅଛି । ମୁଁ ଯିବି, ମୋର କିଛି ଅସୁବିଧା ହେବ ନାହିଁ । ବର୍ତ୍ତମାନ ଏମିତି ଅସୁସ୍ଥ ହେଇ ପଡ଼ିଲେ ଯେ ଅଧା ରାସ୍ତାରେ... ସ୍ତ୍ରୀ ଲୋକଟା ମୁଁ, କଣ କରିବି ?

ବରୁଣ କହିଥିଲେ, ବ୍ୟସ୍ତ କାହିଁକି ହେଉଛନ୍ତି । ଆମେମାନେ ସବୁ ଅଛୁ । ଆପଣ ନିଜକୁ ଏତେ ଏକେଲା କାହିଁକି ଭାବୁଛନ୍ତି ? ତାପରେ ମେଜର୍‌ଙ୍କ ପାଖକୁ ଯାଇ ପଚାରିଥିଲେ କହିଲେ କଣ ଲାଗୁଛି ଆପଣଙ୍କୁ ? ମହାପାତ୍ର ନାହାନ୍ତି । ଗୌରୀ ନାହିଁ । ପରିଡ଼ା ନାଁରେ ଥିବା ଲୋକଟି ବଡ଼ ଅଜବ୍ ଲାଗୁଥିଲା ତାଙ୍କୁ । ଗାଉଁଲି, ଏକଜିଦିଆ ପରି ଲାଗୁଥିଲା । ବିଶେଷ ମିଳାମିଶା କରୁ ନଥିଲା କାହା ସଙ୍ଗେ । କେବଳ ମଝିରେ ମଝିରେ ନିଜ ସ୍ତ୍ରୀକୁ ଧମକେଇବା ଛଡ଼ା ସେ ଅନ୍ୟ କାହା ସଙ୍ଗେ କଥାବାର୍ତ୍ତା କରୁ ନଥିଲା । ବରୁଣଙ୍କୁ ଟିକିଏ ଅସହାୟ ଲାଗିଥିଲା, ମେଜରଙ୍କର ଯଦି କିଛି ହେଇଯାଏ ଏଇ ରାସ୍ତାରେ ସେ କଣ କରିବେ ଭାବି । ତାପରେ ସୁଟକେଶ ଖୋଲି ଔଷଧପତ୍ର ଆଣିଥିବା ଛୋଟବ୍ୟାଗଟା ବାହାର କରିଥିଲେ । ତାଙ୍କର ମନେ ପଡ଼ିଥିଲା ବୈଶାଳୀର କଥା । ହସି ହସି ଗଡ଼ି ଯାଇଥିଲା ବୈଶାଳୀ ସେଦିନ । ଏତେ ଜିନିଷପତ୍ର ସଜାଡ଼ିଛନ୍ତି ଯେ ଆପଣ, ତୀର୍ଥଯାତ୍ରାରେ ଯାଉଛନ୍ତି ନା ପୁରା ସଂସାର କରିବା ପାଇଁ ।

ବରୁଣ ଔଷଧ ବ୍ୟାଗରୁ ସଲବୁଟାମଲ ଟାବଲେଟ ବାହାର କରିଥିଲେ । ମେଜର୍‌ଙ୍କୁ ପଚାରିଥିଲେ ଆପଣଙ୍କର ଶ୍ୱାସ ବାହାରିଲେ କେଉଁ ଔଷଧ ଖାଆନ୍ତି ? ମୋ ପାଖରେ ସଲ୍‌ବୁଟାମଲ ଟାବଲେଟ ଅଛି । ଚଳିବ କି ?

ମେଜର୍ ସଲ୍‌ବୁଟାମଲ ଟାବଲେଟଟି ବରୁଣଙ୍କ ହାତରୁ ନେଇ କହିଥିଲେ ବଡ଼ କାମର ଜିନିଷ ମିଳିଲା । ଭଗବାନ ରକ୍ଷା କଲେ । ନହେଲେ ବଡ଼ ହଇରାଣ ହେଇଥାନ୍ତେ ଏଇ ଜାଗାରେ ।

ବରୁଣ କହିଥିଲେ ଏଇଠି ଔଷଧ ଦୋକାନ ଥିଲା ଭଳି ମନେ ହେଉନି । କିନ୍ତୁ ଆପଣଙ୍କର ଛାତିରେ କୋଉଥି ପାଇଁ ଯନ୍ତ୍ରଣା ହେଉଛି ଜାଣିବାଟା କଷ୍ଟକର । ଡାକ୍ତର ଥିଲେ କହି ପାରିଥାନ୍ତେ । ସକାଳ ହେଲେ ଦେଖିବା ଡାକ୍ତର ମିଳିବେ କି ନାହିଁ । ମେଜର ମୁଣ୍ଡ ହଲେଇ କହିଥିଲେ ନା ନା, ମୋର ଅନ୍ୟ କିଛି ହେଇଥିଲା ପରି ମନେ ହେଉଛି । ଛାତିରେ କଫ ଜମି ଯାଇଛି । ଦେଖୁ ନାହାନ୍ତି କଥା କହିଲା ବେଳେ କେମିତି ପେଲି ହେଉଛି । ଆପଣ ସଲ୍‌ବୁଟାମଲ୍ ଟାବଲେଟ କେମିତି ସାଂଗରେ ଧରି ଆସିଥିଲେ ।

ବରୁଣ କହିଥିଲେ ଜିନିଷପତ୍ର ବଂଧାବଂଧି ବେଳେ ଏମିତି କିଛି ଔଷଧପତ୍ର ସାଂଗରେ ନେଇ ଆସିଥିଲି, ଦରକାର ବେଳେ କାମରେ ଆସିବ ବୋଲି । ଆଜି, ପ୍ରକୃତରେ କାମରେ ଆସିଲା ।

ବରୁଣଙ୍କର ଆଉ ନିଦ ହେଲା ନାହିଁ । ଏଣୁ ତେଣୁ ହଜାରେ ଚିନ୍ତା ମନ ଭିତରେ ଗୁଡ଼େଇ ତୁଡ଼େଇ ହେଉଥିଲା । ମହାପାତ୍ର କହିଥିଲେ ସଂଧ୍ୟା ସୁଦ୍ଧା ସୀତାପୁରରେ

ପହଞ୍ଚିବେ ଯେ କୌଣସି ବସ୍‌ରେ ବସି । ତେବେ କଣ ଗୌରୀର ଖୋଜଖବର କିଛି ମିଳିଲାନି ? କୁଆଡ଼େ ଗଲା ପିଲାଟା ? ବରୁଣଙ୍କୁ ଭାରି ଦୋଷୀ ଦୋଷୀ ଲାଗିଲା । ତାଙ୍କର ମନେ ହେଲା, ଗୌରୀ ପଳେଇଯିବାର ଅସଲ କାରଣ ସେ । ଏତେ କଡ଼ା ଭାବରେ ଗୌରୀକୁ ଅପମାନିତ କରିବାର କୌଣସି ଯଥାର୍ଥତା ଥିଲା କି ?

କାଲି ସକାଳୁ ସକାଳୁ କେଦାରନାଥ ଅଭିମୁଖେ ପଦଯାତ୍ରା ଅଛି । ପାଖାପାଖି ଚଉଦ ପନ୍ଦର କିଲୋମିଟରରୁ ବେଶୀ ହେବକି କଣ ? ଅନେକ ଦିନୁ ସେ ପାହାଡ ଚଢ଼ି ନାହାନ୍ତି । ଅବଶ୍ୟ ସେ ନିଜ ପାଇଁ ଘୋଡାର ବ୍ୟବସ୍ଥା କରି ପାରିଥାନ୍ତେ । କିନ୍ତୁ ତ୍ରିଯୋଗୀ ନାରାୟଣ ବୁଲିବାକୁ ଗଲା ବେଳେ ଘୋଡ଼ା ପିଠିରେ ବସି ତାଙ୍କ ଅଣ୍ଟା ଧରି ଯାଇଥିଲା । ଆଉ ଥରେ ଘୋଡାରେ ବସି ଯିବା ପାଇଁ ସେ ଚାହୁଁ ନଥିଲେ । ତାଠୁଁ ବରଂ ଧିରେ ଧିରେ ଚାଲିବାଟା ଆହୁରି ଭଲ । ଗୌରୀଟା ଥିଲେ କହିଥାନ୍ତେ ଦାବି ଦେବା ପାଇଁ । ପିଲାଟା କୁଆଡେ ଉଭାନ୍ ହେଇଗଲା ଦେଖ, କାହାକୁ ନ ଜଣାଇ । ମରି ହଜିଗଲା କି ଘରକୁ ଫେରିଗଲା । ଅବା ଅନ୍ୟ କେଉଁଠିକୁ ଯିବାର ଇଛା ନେଇ ଚାଲିଗଲା ବୁଝି ହେଲା ନାହିଁ । ତାଙ୍କରି କଥାରେ ଅପମାନିତ ହେଇ ଚାଲିଯାଉ କି ନ ଯାଉ, ସେ ଯେ ଅପମାନିତ ହେଇଥଲା ଏଇଟା ନିଶ୍ଚିତ । ଏମିତି ଅଯଥାଟାରେ ତାକୁ ଅପମାନିତ କରିବାର କୌଣସି ଅଧିକାର ତାଙ୍କର ଥିଲା କି ?

ବରୁଣଙ୍କୁ କେବେ ପାପବୋଧ ଛୁଇଁ ନଥିଲା । ପଞ୍ଚମକାରର ଭକ୍ତ ଥିଲେ ସେ । ମଦ ଓ ନାରୀ କୌଣସିଟିକୁ ସେ କେବେ ବି ଦୂରେଇ ରଖି ନାହାନ୍ତି ତାଙ୍କ ଜୀବନରୁ । ଅଥଚ ଏ ସବୁଥିଲେ ସେ ଯେ କୌଣସି ପାପ କରିଛନ୍ତି, ସେମିତି କୌଣସି ଧାରଣା ହିଁ ଆସିନି ତାଙ୍କ ମନକୁ । ସେ ଆଜି ସୁଦ୍ଧା ଭାବି ଆସିଥିଲେ, ଯେଉଁ କର୍ମରେ ତୁମେ ଅନ୍ୟକୁ ଦୁଃଖ ଦେଉନ - ସେଇ କର୍ମଟି ହିଁ ପାପ ନୁହଁ । ସେ ତାଙ୍କର କୌଣସି ନାରୀ ବନ୍ଧୁଙ୍କୁ ବିନା ସମ୍ମତିରେ ଗ୍ରହଣ କରି ନାହାନ୍ତି । ମିଛ ପ୍ରତିଶ୍ରୁତି ଦେଇ ନାହାନ୍ତି । ମିଛ ସ୍ୱପ୍ନର ଜାଲ ବୁଣି ସେ କୌଣସି ନାରୀକୁ କରାୟତ୍ତ କରିବାର ଚେଷ୍ଟା କରି ନାହାନ୍ତି । ସବିତାକୁ ମିଛ କହି ଠକି ନାହାନ୍ତି । ତେଣୁ ସେ ସବୁକୁ କେବେ ପାପ ବୋଲି ଭାବି ନାହାନ୍ତି । କିନ୍ତୁ ଆଜି ତାଙ୍କର ମନେ ହେଲା, ଗୌରୀକୁ ଅପମାନିତ କରିବାଟା ହିଁ ପାପ ଥିଲା । ତାଙ୍କୁ ଏଭଳି ଏକ ପାପ କରିବାର ଥିଲା ସ୍ୱର୍ଗର ଦ୍ୱାର ଦେଶକୁ ଆସି ?

ପୁରା ଦଳଟି ଭିତରେ ଗୌରୀ ହିଁ ଏକମାତ୍ର ଥିଲା ଉଚ୍ଛଳ ଜୀବନର ପ୍ରତୀକ । ଆଉ ସମସ୍ତେ ଜୀବନ ଅପରାହ୍ନରେ ଅବସନ୍ନ । ଏଇ ମହାଯାତ୍ରାରେ ଯେମିତି ଗୌରୀର ସାମିଲ୍ ହେବାର ନଥିଲା । ସମୟ ହେଇ ନଥିଲା ତାର । ତେଣୁ ବାଟ ଭାଙ୍ଗି ସେ ଅନ୍ୟତ୍ର ଚାଲିଗଲା, ଜୀବନ ଖୋଜିବା ଉଦ୍ଦେଶ୍ୟ ନେଇ । ଗୌରୀ ଯେମିତି

ଥିଲା ସେମାନଙ୍କର ଅତୀତ । ସେମାନଙ୍କ ଯୌବନ । ଯାହା ସେମାନେ ଛାଡ଼ି ଆସିଛନ୍ତି ବହୁଦିନୁ । ତାଙ୍କର ମନେ ପଡ଼ିଥିଲା ସାତ ଆଠ ବର୍ଷ ପୂର୍ବର କଥା । ଗୋଟେ ପ୍ରେସ୍ କନଫରେନ୍ସରେ ସେ ଆସିଥାନ୍ତି ଶିଲଂ । ସେତେବେଳକୁ ବୈଶାଳୀ ସାଙ୍ଗରେ ତାଙ୍କର ଅନ୍ତରଙ୍ଗତା ବଢ଼ି ବଢ଼ି ଏମିତି ଏକ ପର୍ଯ୍ୟାୟକୁ ପହଞ୍ଚି ଥିଲା ଯେ କୌଣସି ଗୋପନୀୟ କାମ କରିବାକୁ ଇଚ୍ଛା ହେଉଥିଲା । ବୈଶାଳୀ ଥିଲା ଖବର କାଗଜର ଧରାବନ୍ଧା ଫିଚର୍ ଲେଖିକା । ନିଜ ସହିତ ବୈଶାଳୀ ପାଇଁ ମଧ୍ୟ ଯିବାର ବ୍ୟବସ୍ଥା କରେଇଥିଲେ ସେ ଏକାସଂଗେ । ଜଣେ ଅଧେ ଷ୍ଟାଫର ଚକ୍ଷୁଶୀଳ ହେଇଥିଲା ସେତେବେଳେ କଥାଟି । କିନ୍ତୁ ମନ ତଳର ପ୍ରଚଣ୍ଡ ଆକାଂକ୍ଷା ଓ କାମନା ପାଖରେ ସେଇ ସବୁ ଆପତ୍ତି ଅସନ୍ତୋଷ ଖୁବ ତୁଚ୍ଛ ମନେ ହେଇଥିଲା ତାଙ୍କର । ଶିଲଂର ଗେଷ୍ଟ ହାଉସ୍‌ରେ ପାଖାପାଖି ବଖରାରେ ରହିଥିଲେ ସେମାନେ । ରାତି ସାରା ବୈଶାଳୀ ରହୁଥିଲା ତାଙ୍କ ବଖରାରେ । ବୈଶାଳୀ ଉତ୍‌ଫୁଲ୍ଲିତା ଥିଲା । ସେ ମଧ୍ୟ । ନିଜ ଭିତରେ ଏତେ ଶକ୍ତି ଓ ପୌରୁଷକୁ ପଚାଶୋତ୍ତୀର୍ଣ୍ଣ ବୟସରେ ବି ଧରି ରଖି ପାରିଛନ୍ତି ଭାବି ଖୁସି ହେଇଥିଲେ ସେ । ଦିହେଁ ଥରେ ଗପୁ ଗପୁ ପାହାଡର ଅନେକ ତଳକୁ ଓହ୍ଲେଇ ଯାଇଥିଲେ । ଏତେ ତଳକୁ ଚାଲି ଆସିଥିଲେ ଯେ ଗେଷ୍ଟ ହାଉସ୍ ଆଦୌ ଦିଶୁ ନଥିଲା । ଯେତେବେଳେ ଗେଷ୍ଟହାଉସ୍‌କୁ ଫେରିବାର ପ୍ରଶ୍ନ ଆସିଥିଲା, ପାହାଡ ଚଢ଼ିବା ପାଇଁ ତାଙ୍କର ଆଉ ସାହାସ କୁଳେଇ ନଥିଲା । ବୈଶାଳୀ ଯେମିତି କୁନି ଝିଅଟେ, ହସି ହସି ପିଲା ଦିନର କଥା କେତେ କଣ ଗପି ଗପି ଆଗେଇ ଯାଉଥିଲା । ସେ ତାଠୁଁ ଦି ତିନିଫୁଟ ପଛରେ ଚାଲୁଥିଲେ । ଯେମିତି ଗୋଟେ ଅଦୃଶ୍ୟ ଡୋରରେ ବନ୍ଧା ହେଇଥିଲେ ସେ । ପୁରାଟା ପାହାଡ ଉଠି ଆସିଥିଲେ । ଗେଷ୍ଟ ହାଉସ୍‌କୁ ଫେରି ଆସି କହିଥିଲେ ବୈଶାଳୀକୁ ପୁରା ପାହାଡଟେ ଯେ ମୁଁ ଉଠି ଆସି ପାରିବି, ଏ ବିଶ୍ୱାସ ମୋର ନଥିଲା । କିନ୍ତୁ କେତେ ସହଜରେ ଉଠି ଆସିଲି ଦେଖ, ଆଦୌ ଜଣା ପଡିଲା ନାହିଁ ।

ବୈଶାଳୀ କହିଥିଲା, ଆପଣ କଣ ପାଦରେ ପାହାଡ ଚଢ଼ି ଆସିଲେ ବୋଲି ଭାବୁଛନ୍ତି ।

ତେବେ କେଉଁଥିରେ ଚଢ଼ି ଆସିଲି ମୁଁ ? ପଚାରିଥିଲେ ସେ । ବୈଶାଳୀ ହସି କି କହିଥିଲା ପ୍ରେମରେ ।

କିନ୍ତୁ ନା, ସେଗୁଡ଼ିକ ପାପର ଦିନ ନଥିଲା । ଥିଲା ପ୍ରେମର । ଯେଉଁ ପ୍ରେମ ଅସାମାଜିକ ହେଲେ ବି ଏକାନ୍ତ ବ୍ୟକ୍ତିଗତ ଥିଲା । ଏତେ ବ୍ୟକ୍ତିଗତ ଯେ ତାଙ୍କର ଓ ବୈଶାଳୀ ଛଡ଼ା ଆଉ କାହାରିକୁ ପ୍ରଭାବିତ କରିନଥିଲା । ନା ସବିତାକୁ ନା ବୈଶାଳୀର

ଭବିଷ୍ୟତ ଜୀବନକୁ ।

ବରୁଣଙ୍କ ଚିନ୍ତାରୁ ବୈଶାଳୀ ଓହରି ଯାଇ ପୁଣି ମେଜର୍ ଆସି ପହଞ୍ଚିଲେ । ତାଙ୍କର ମନେ ହେଲା, ବୋଧହୁଏ ମେଜର୍ ଏଇଠି ଯାତ୍ରା ସ୍ଥଗିତ ରଖିବେ । ଏ ଅବସ୍ଥାରେ ତାଙ୍କ ପକ୍ଷରେ ପାହାଡ ଚଢ଼ିବା ସଂଭବ ହେବନି । ମେଜରଙ୍କୁ ଏମିତି ଅସୁସ୍ଥ ଅବସ୍ଥାରେ ଛାଡି ଯିବାଟା କଣ ଉଚିତ ହେବ ତାଙ୍କ ପକ୍ଷରେ ? ଏତେ ବାଟ ଆସି, ଶେଷରେ କେଦାରନାଥ ନ ଯାଇ ସେ କଣ ଫେରିଯିବେ ? କିଏ ଜାଣେ ଆଉ କେବେ ସୁଯୋଗ ଆସିବ କି ନାହିଁ । ଏ କି ଦ୍ୱନ୍ଦ୍ୱରେ ସେ ପଡ଼ି ଯାଉଛନ୍ତି ? ଗୋଟେ ପଟେ କର୍ତ୍ତବ୍ୟବୋଧ, ଅନ୍ୟ ପଟେ ଆକାଂକ୍ଷା । ସତେ ଯେମିତି ଗୋଟେ ମସ୍ତବଡ଼ ପରୀକ୍ଷାର ସମ୍ମୁଖୀନ ହେଉଛନ୍ତି ସେ । ତାଙ୍କର ମନେ ପଡ଼ିଥିଲା, ପ୍ରଥମ ଥର ସେ ଯେତେବେଳେ ଋଷିକେଶ ଆସିଥିଲେ, ସେଇ ସମୟର କଥା । ସ୍ୱାମୀଜୀ ଥରେ କହିଥିଲେ, ଯେଉଁଠି ତମେ ଦ୍ୱନ୍ଦ୍ୱରେ ପଡ଼ି ଯାଉଛ, ଉଚିତ ମାର୍ଗ ବିଚାର କରିବାକୁ ଅସମର୍ଥ ହେଉଛ, ସେହିଠାରେ ନିରବରେ ଅପେକ୍ଷା ହିଁ କର । ଯାହା ଘଟିବାକୁ ଥିବ ତା ଘଟିବ ।

କଣ ଘଟିବାକୁ ଆଉ ବାକି ଅଛି ? ଗୋଟିଏ ମାଟିରୁ ଆସି ଏକତ୍ର ହେଇଥିଲେ ଦଳେ ଲୋକ । ଉଦ୍ଦେଶ୍ୟ ଥିଲା ଏକ । ଯିଏ ଯେଉଁ ମନଃସ୍ଥିତିର ହୁଅନ୍ତୁ ନା କାହିଁକି, ଯାହା ଭାଗ୍ୟ ଯାହାକୁ ଯେଉଁ ଭାବେ ପରିଚାଳିତ କରି ଥାଉନା କାହିଁକି, ସଭିଏଁ ନାନାପ୍ରସ୍ଥରେ ଯିବେ । ମହାପାତ୍ର ଅଟକିଗଲେ ଗୌରୀ ପରି ଗୋଟେ ଉଦ୍ଦାମ ସୁଅକୁ ରୋକିବା ପାଇଁ, ଅଧାବାଟରେ । ଆଉ ମେଜର୍ ଅସୁସ୍ଥ ହେଇ ପଡ଼ିଲେ ଯାତ୍ରା ମଝିରେ, କିଏ ଜାଣେ ପରିଡ଼ା ଦମ୍ପତି ଓ ସେ ଶେଷ ଯାଏଁ ଯାଇ ପାରୁଛନ୍ତି କି ନାହିଁ । ଶର୍ମିଷ୍ଠା କହୁଥିଲା, ମେଜରଙ୍କର ଥରେ ହାର୍ଟ ଆଟାକ୍ ହେଇଥିଲା । କୁଆଡ଼େ କେତେଦିନ ତଳେ ହେଇଥିଲା କେଜାଣି । ଯେବେବି ହେଇଥାଉ, ତାଙ୍କର ଏମିତି ଆସିବା ଉଚିତ ନଥିଲା । ବୟସ ତାଙ୍କର ସତୁରୀ ଉପରେ ହେଇଥିବ ନିଶ୍ଚୟ । ଏତେ ବଡ଼ ରିସ୍କ କେମିତି ନେଲେ କେଜାଣି ।

ବରୁଣଙ୍କୁ ବୈଶାଳୀ ବହୁତ ଚିଡାଏ । କହେ, ଆପଣ ସବୁବେଳେ କାଳ୍ପନିକ ରୋଗ ଭୋଗୁଥାନ୍ତି । ହଁ, ବରୁଣ ଅଧିକାଂଶ ସମୟରେ କାଳ୍ପନିକ ରୋଗରେ ଅସୁସ୍ଥ ହେଇ ପଡ଼ନ୍ତି । ରୋଗଟିରେ ଜୀବାଣୁ ପ୍ରବେଶଠୁଁ ଆରମ୍ଭ କରି ରୋଗରେ ପୀଡ଼ିତ ହେବା ପର୍ଯ୍ୟନ୍ତ ସବୁ ସେ ଅନୁଭବ କରି ପାରନ୍ତି । ରୋଗର ବିଭିନ୍ନ ଲକ୍ଷଣ ଗୁଡ଼ିକ ତାଙ୍କ କଳ୍ପନା ଭିତରେ ବଢ଼ି ଚାଲିଯାଏ । ଏହିଭଳି ଭାବରେ ଥରେ ସେ କାଳ୍ପନିକ କୁଷ୍ଠ ରୋଗ ବି ଭୋଗି ସାରିଛନ୍ତି । ଲିଭର୍ ଓ କିଡ୍‌ନୀ ରୋଗ ତା ତାଙ୍କୁ ବାରମ୍ବାର ହେଇ

ପାରିଛି କଳ୍ପନା ଭିତରେ । ସର୍ବଦା ହଇରାଣ ହୁଅନ୍ତି । ଡାକ୍ତର ପାଖକୁ ଦୌଡ଼ନ୍ତି ବେଳେବେଳେ । ଡାକ୍ତର ତାଙ୍କ ମୁହଁରୁ ରୋଗର ଲକ୍ଷଣ ଶୁଣିଲେ ମଧ୍ୟ ରୋଗ ଠଉରେଇ ପାରନ୍ତି ନାହିଁ । ବାରମ୍ବାର ଝାଡ଼ାରକ୍ତ ପରିସ୍ରା ପରୀକ୍ଷା ହୁଏ । ବେଳେ ବେଳେ ସବୁ କିଛି ନର୍ମାଲ୍ ଥାଏ । ସର୍ବଦା ବିରକ୍ତ ହୁଅନ୍ତି । ଅଯଥାଟାରେ ହଇରାଣ କରୁଛ । ତା ସାଙ୍ଗକୁ ଟଙ୍କା ଖର୍ଚ୍ଚ ମଧ୍ୟ । ତମର କିଛି ହେଇନି । ଅସଲରେ, ହାତରେ କିଛି କାମ ନଥିବାରୁ ତୁମେ ବସି ବସି ରୋଗୀଣା ହେଇଯାଉଛ ।

ପ୍ରକୃତରେ ତାଙ୍କ ହାତରେ କିଛି କାମ ନଥାଏ । କେବଳ ଗୋଟେ ରବରଷ୍ଟାମ୍ପ ହେଇ ଯାଇଛନ୍ତି ସେ ଖବର କାଗଜ ଅଫିସ୍‌ରେ । ତାଙ୍କୁ କିଛି କରିବାକୁ ପଡେନା । କେବେ କେମିତି ସେ ତାଙ୍କ ଚେମ୍ବରକୁ ଯାଆନ୍ତି । ନହେଲେ ପ୍ରାୟ ଘରେ ହିଁ ଥାନ୍ତି । ତାଙ୍କ ନାଁରେ ଖବର କାଗଜ ଚାଲେ । ବିତର୍କ ଚାଲେ । କ୍ଷମା ପ୍ରାର୍ଥନା ମଗା ହୁଏ । ସଂପାଦକଙ୍କ କଲମରୁ ନାଁରେ ଚିନ୍ତାଶୀଳ ସ୍ତମ୍ଭ ଲେଖାହୁଏ । ସେ କିନ୍ତୁ କିଛି କରନ୍ତି ନାହିଁ । ଆଜିକାଲି ଖବର କାଗଜଟିଏ ଖୁବ ଆରାମରେ ଚାଲେ । ବଡ଼ ବଡ଼ ଖବର କାଗଜ ମାନେ ତ ନାଁ କରା ସଂପାଦକମାନଙ୍କୁ ବି ସଂପାଦନା ପଦରୁ ହଟେଇ ସେମାନଙ୍କର ବିଜିନେସ୍ ଏକଜିକ୍ୟୁଟିଭ ମାନଙ୍କୁ ସଂପାଦକ କରି ଦେଇଛନ୍ତି, କିମ୍ବା ନିଜେ ସଂପାଦକ ହୋଇ ଯାଇଛନ୍ତି । ଖବର କାଗଜର ବିକ୍ରୀରୁ ଆଉ ଲାଭ ହେଉନି । ସମସ୍ତେ ଖବର କାଗଜର ଦାମ କମେଇବାକୁ ଲାଗିଛନ୍ତି । ଏତେ କାମ ଯେ, ସେତିକି ପଇସାରେ ସାଧା କାଗଜ ବି ମିଳିବନି । ଖବରକାଗଜର ଅସଲ ଲାଭ ବିଜ୍ଞାପନରୁ ହିଁ । ତେଣୁ ବିଜ୍ଞାପନ ଏକଜିକ୍ୟୁଟିଭ ମାନଙ୍କର ହିଁ ଚାହିଦା ବେଶୀ ।

ଅଫସେଟ ପ୍ରେସରେ ଖବରକାଗଜ ବାହାରିବାକୁ ଦି ଘଣ୍ଟା ମାତ୍ର ଲାଗେ । ଇଣ୍ଟରନେଟ ଖବର କାଗଜ ଦୁନିଆକୁ ସହଜ ଓ ସରଳ କରି ଦେଇଛି । ଯେତେବେଳେ ନିଜ କ୍ୟାସ୍‌ରେ ଆରମ୍ଭ କରିଥିଲେ ବରୁଣ, ଉତ୍ତରାଧିକାରୀ ସୂତ୍ରରେ ପାଇଥିଲେ ଗୋଟେ କୋଠାଘର, ଗୋଟେ ରୋଟାରୀ ପ୍ରେସ୍, ଅର୍ଦ୍ଧେକ ଅକ୍ଷର ଭାଙ୍ଗି ଯାଇଥିବା ପାଇକା ଓ ଇଂଲିଶ ବଡିର ଶିଶା ଅକ୍ଷର ଦି ତିନି ବସ୍ତା । ଅବାଧ ଟାଉଟର ନିୟମିତ ଦରମା ପାଉନଥିବା କିଛି କର୍ମଚାରୀଙ୍କୁ ନେଇ, ଏନ୍.ଆର୍.ଆଇ ପ୍ରଦତ୍ତ, ଗୋଟେ ରେଜିଷ୍ଟ୍ରେସନ୍ ନମ୍ବର ଓ ଗୋଟେ ଏମ୍ବଲେମ ତଳେ ସେ ଆରମ୍ଭ କରିଥିଲେ ତାଙ୍କର ପ୍ରଥମ କର୍ମମୟ ଜୀବନ ।

ସବିତା ସାମ୍ବାଦିକ ବୃତ୍ତିକୁ ଆଦୌ ପସନ୍ଦ କରି ପାରୁନଥିଲେ । ନୂଆ ବାହା ହେଇ ଆସିଥିବା ବେଳେ ସବିତା ଟିକିଏ ସଂକୋଚରେ ପଡ଼ି ଯାଉଥିଲେ, ଲୋକଙ୍କ ଆଗରେ ତା ସ୍ୱାମୀର କି ପରିଚୟ ଦେବେ ଭାବି । ସ୍ୱାମୀଟି ଓକିଲ ନୁହେଁ କି ମାଷ୍ଟର ନୁହେଁ ।

ଡାକ୍ତର ନୁହେଁ କି ଇଞ୍ଜିନିୟର ନୁହେଁ । ସାମ୍ବାଦିକ ? କି କି କାମ କରିବାକୁ ପଡେ ତାଙ୍କୁ ? ସବୁ ଖବର ଯୋଗାଡ କରି ଛାପିବାକୁ ପଡ଼ିଥାଏ, କହୁଥିଲେ ସବିତା ତାଙ୍କର ବାପଘର ସଂପର୍କୀୟମାନଙ୍କୁ । ଏଇ ଆମ ଗାଁ ବେଣୁଧର ରିପୋର୍ଟର ଅଛି ନା ସେଇଭଳି ବୋଧେ ? ବେଣୁଧର ଗୋଟେ ଚାରି ଦଉଡ଼ି କଟା ବାକୁଙ୍ଗା ଗଞ୍ଜୋଡ ପିଲା, ଯିଏ ମ୍ୟାଟ୍ରିକ୍‌ଟା ମଧ ପାଶ କରିନାହିଁ । ବଉଳ ଗଛ ମୂଳରେ ବସି ବସି ତାସ୍ ପିଟୁଥାଏ । ମଝିରେ ମଝିରେ ଖବରକାଗଜ ଅଫିସ୍ ଯାଏ । ଗାଁ ଗଣ୍ଡାରୁ ଦି ଚାରିଟା ଖବର ଧରି । ସବିତା ସେତେବେଳେ ବୁଝେଇ ପାରୁନଥିଲେ, ବେଣୁଧର ଆଉ ବରୁଣ ଭିତରେ ଯଥେଷ୍ଟ ତଫାତ୍ ଶିକ୍ଷାରେ ଆଉ ଚିନ୍ତାଧାରାରେ ବୋଲି । ସହରର ମାନ୍ୟଗଣ୍ୟ ହେଇ ଯେଉଁ ପାଞ୍ଚ ଦଶଟା ପରିବାର ଅଛନ୍ତି, ସେଇ ବୁନିଆଦୀ ପରିବାରର ପିଲା ବରୁଣ । ପୈତୃକ ସୂତ୍ରରେ ସେମାନଙ୍କ ଖବର କାଗଜର ବ୍ୟବସାୟ । ତଥାପି କେଜାଣି କାହିଁକି ଖବରକାଗଜର ସଂପାଦକ ଅଛନ୍ତି ବୋଲି ଜୋର୍‌ରେ କହି ପାରୁନଥିଲେ ସବିତା । ହୁଏତ ଖବରକାଗଜର ସଂପାଦକ ଶିରିପାଟି ବରୁଣ ମୁଣ୍ଡରେ ସେ ଖାପଖୁଏଇ ବସେଇ ପାରୁ ନଥିଲେ, ଅଥବା ବରୁଣଙ୍କ ଅଫିସ୍‌ରେ ।

ଟେଲିପ୍ରିଣ୍ଟରର ଭଡ଼ା ଦିଆ ଯାଇ ନଥିବାରୁ ବହୁତ ଦିନରୁ ନିରବ ପଡ଼ିଥିଲା ଯନ୍ତ୍ରଟି । ରେଡ଼ିଓ ପାଖରେ କାନ ଡେରି ଖବର ସବୁକୁ ଉତାରି ନେବାକୁ ପଡୁଥିଲା । ମସିଆ ନିଉଜ୍ ପ୍ରିଣ୍ଟ୍ କାଗଜ ଦେହରେ ପଢ଼ି ହେଉନଥିଲା । ଅସ୍ପଷ୍ଟ ଓଡ଼ିଆ ଅକ୍ଷର ଭିତରେ କେତେ ଚିନ୍ତାଶୀଳ ପ୍ରବନ୍ଧ ଲେଖି ଓଡ଼ିଶାର ବୌଦ୍ଧିକ ମାନସରେ ଚହଲ ସୃଷ୍ଟି କରିଥିଲେ ସେ । ଅନ୍ଧାରୁଆ, ମସିଆଁ ଘର ଭିତରେ ସେ ଆରମ୍ଭ କରିଥିଲେ ତାଙ୍କର କ୍ୟାରିଅର୍ । ଏବେ ତାଙ୍କ ଅଫିସ୍ ଘର ବଦଳି ଯାଇଛି । କାନ୍ଥରେ ସିନ୍ଥେଟିକ ଅଏଲ୍‌ପେଣ୍ଟର ଆସ୍ତରଣ, ସନ୍‌ମାଇକା ପାର୍ଟିସନ୍‌ରେ ସବ୍ ଏଡିଟର ମାନଙ୍କର କ୍ୟାବିନ, କ୍ୟାବିନ୍‌ରେ ଡେସ୍କ, କଂପ୍ୟୁଟର, ଫୋନ୍ । ଅଫିସ୍ ସାମ୍ନାରେ ରିସେପ୍‌ସନିଷ୍ଟ । ବରୁଣଙ୍କ ପାଇଁ ଉଦ୍ଦିଷ୍ଟ ସେକ୍ରେଟାରୀ ।

ଅବଶ୍ୟ ଆଜିକାଲି ବରୁଣଙ୍କୁ କିଛି କରିବାକୁ ପଡେନା । ଧରାବନ୍ଧା କଲମ ପାଇଁ ନିର୍ଦ୍ଦିଷ୍ଟ ଲେଖକ ଥାନ୍ତି । ଖବର ବିଭାଗଟି ସଂପୂର୍ଣ୍ଣ ଭାବେ ସଂଗ୍ରାମ ବୁଝାବୁଝି କରେ । ତାଙ୍କୁ ଜଣାନାହିଁ, ତାଙ୍କ ଅନ୍ତେ ଏଇ ଅନୁଷ୍ଠାନଟିର ଅବସ୍ଥା କଣ ହେବ । ତାଙ୍କର ଏକମାତ୍ର ପୁଅ ଭାରତ ସରକାରଙ୍କ ବୈଦେଶିକ ବିଭାଗରେ ଚାକିରୀ ପାଇ ବିଭିନ୍ନ ଦେଶ ବୁଲୁଥାଏ । ତା ପାଇଁ ଏଇ ସଂସ୍ଥାଟି ଏକ ସମ୍ଭ୍ରାନ୍ତୀୟ ପରିଚୟ ପ୍ରଦାନ କରୁଥିଲେ ହେଁ ବଡ ଅର୍ଥହୀନ । ଅବଶ୍ୟ ତାଙ୍କର ପ୍ରେସ୍ ଓ ଖବରକାଗଜ କିଣି ନେବାକୁ ଥରେ

ତତ୍କାଳୀନ ମୁଖ୍ୟମନ୍ତ୍ରୀ ଆଗ୍ରହୀ ଥିଲେ । ସରକାରଙ୍କ ପାଖରୁ ଲୋନ୍ ନେଇ ସେ ଯେଉଁ ଅଫିସ୍‌ର କାୟା ପରିବର୍ତ୍ତନ କରିଥିଲେ, ତାର ଋଣ ଏଯାଏଁ ସୁଝା ହୋଇ ପାରିନି । ତାଙ୍କର ଖବରକାଗଜ ଅଫିସ୍‌କୁ ସିକ୍ ଇଣ୍ଡଷ୍ଟ୍ରି ଘୋଷଣା କରିବା ଆଳରେ, ତତ୍କାଳୀନ ମୁଖ୍ୟମନ୍ତ୍ରୀ ଥରେ ତାଙ୍କୁ ପ୍ରସ୍ତାବ ଦେଇଥିଲେ: ଆପଣଙ୍କର କୌଣସି ରାଜନୈତିକ ଉଚ୍ଚାକାଂକ୍ଷା ନାହିଁ ବରୁଣବାବୁ । ଏ ଖବରକାଗଜ ଧନ୍ଦାରେ କାହିଁକି ମାତିଛନ୍ତି ? ବିକି ଦିଅନ୍ତୁ ମୋତେ । ସରକାରୀ ଲୋନ୍‌ଫୋନ୍ ମୁଁ ବୁଝିବି । ବରୁଣ ଛାଡ଼ି ପାରି ନଥିଲେ । କାହିଁକି ? କାହାପାଇଁ ?

ପୁଅଟି ତାଙ୍କର ବଡ଼ ମା ପ୍ରେମୀ । ତେଣୁ ସୁଅାଡ଼େ ଯାଉନା କାହିଁକି ମାଙ୍କୁ ନିଜ ପାଖରେ ରଖିଥାଏ ବର୍ଷରେ ଛମାସ । ଏଇ ଦେଶର ମାଟି ଓ ପୈତୃକ ସଂସ୍ଥା ବରୁଣଙ୍କୁ ଏଇଠି ବାନ୍ଧି ରଖିଥାଏ । ସଭାସମିତି, ବନ୍ଧୁ ସହଯୋଗୀଙ୍କ ସଙ୍ଗେ ବେଳ କଟିଯାଏ ତାଙ୍କର । କେବେ ବି ଖୁବ ସଂସାରୀଟେ ନଥିଲେ ସେ । ଖାଇବା ପିନ୍ଧିବାରେ ଖୁବ୍ ଗୋଟେ ଆଡମ୍ବର ନଥିଲା ତାଙ୍କର । ବାପା ଥିଲେ ଆଦର୍ଶବାଦୀ, ମିତବ୍ୟୟୀ । ସେଇ ଢାଞ୍ଚାରେ ଗଢ଼ିବାକୁ ଚାହିଁଥିଲେ ସେମାନଙ୍କୁ । ବାପା ମାଙ୍କ ପରି ଆଦର୍ଶବାଦୀ ଓ ମିତବ୍ୟୟୀ ହୋଇ ପାରିନଥିଲେ ବରୁଣ । ତେବେ କିଛି କିଛି ପ୍ରଭାବ ପଡ଼ିଥିଲା ନିଶ୍ଚୟ । ବାପା ଆସ୍ତିକ ଥିଲେ, ପ୍ରତିଟି ଭଲ ଆଉ ମନ୍ଦ ଯେ ଭଗବାନଙ୍କ ଇଚ୍ଛାରେ ଘଟିତ ହୁଏ, ଭାବୁଥିଲେ । ଘରେ ପୂଜାପାଠ ହୋମଯଜ୍ଞ ସବୁ କିଛି ଗୃହସ୍ଥର ଘର ଭଳି ହେଉଥିଲା । ତାଙ୍କ ଘରେ ସେ ନିଜେ କିନ୍ତୁ ପୂଜା ପାଠ ବାବଦରେ ବଡ଼ ଉଦାସୀନ ଥିଲେ । ଅନେକ ବନ୍ଧୁ ବାନ୍ଧବ ଅଛନ୍ତି ବରୁଣଙ୍କର, ସକାଳୁ ଗାଧୋଇ ପାଧୋଇ ଘଣ୍ଟାଟେ ପୂଜା ଘରେ କଟାଇବେ । କିନ୍ତୁ ବରୁଣ କେବେ ପୂଜା କରିବାର ଆବଶ୍ୟକତା ଅନୁଭବ କରି ପାରି ନାହାନ୍ତି । ସବିତା କିନ୍ତୁ ଠିକ୍ ସମ୍ଭାଳି ନେଇଥିଲେ ମାଙ୍କର ପୂଜାଘର । ଯେତେବେଳେ ସବିତା ପୁଅ ପାଖକୁ ଚାଲିଯାନ୍ତି, ଘର ପାଖ ଶିବ ମନ୍ଦିରର ପୂଜାରୀକୁ କିଛି ପାଉଣା ଦେଇ ଯାଇଥାନ୍ତି, ନିୟମିତ ଠାକୁର ପୂଜା କରିଦେଇ ଯିବା ପାଇଁ ।

ସବିତାଙ୍କ ଦୃଷ୍ଟିରେ ମହାପାତ୍ର ନାସ୍ତିକ । ଥରେ ଗପୁ ଗପୁ କହିଥିଲେ: ବିଷ୍ଣୁ ଭକ୍ତ ବୈକୁଣ୍ଠକୁ ଯିବେ, ଶିବ ଭକ୍ତ କୈଳାଶକୁ । ପାପୀ ଯମପୁରକୁ ଯାଇ ଦଣ୍ଡ ପାଇବେ । କିନ୍ତୁ ତୁମେ ତ ପାପୀ ନୁହଁ ନାସ୍ତିକ । ନାସ୍ତିକ କେଉଁଠିକୁ ଯିବ ?

ସେଦିନ ବହୁତ ହସିଥିଲେ ବରୁଣ । କହିଥିଲେ, ତୁମ କଥା ଭୋଳରେ ବୈକୁଣ୍ଠ ଯମପୁର ଆଦି ଥିଲା ଭଳି ନାସ୍ତିକ ମାନଙ୍କ ପାଇଁ କଣ କିଛି ପୁର ନାଇଁ ? ତେବେ, ସେତେବେଳେ ଦେଖିବି, ମୁଁ ସବୁ ଦ୍ୱାର ଠକ୍ ଠକ୍ କରି ଯାଇଥିବି । ଯେଉଁମାନେ

ଦ୍ୱାର ଫିଟେଇବେ, ବୈକୁଣ୍ଠ ହେଉ କି ଯମପୁର ହେଉ, ସେଇଠି ଧସେଇ ପଶିବି ।

ବରୁଣ ଭାବୁଥିଲେ, ତୀର୍ଥ କରିବା ପାଇଁ ତାଙ୍କର କାମନା ନଥିଲା । ତଥାପି ସେ ଆସିଥିଲେ, କିଏ ଯେମିତି ଟାଣି ଆଣିଥିଲା ତାଙ୍କୁ । ଏବେ କଣ ତାଙ୍କର ଦ୍ୱାର ଠକ୍ ଠକ୍ କରିବେ ସେ ? ତାଙ୍କୁ ଜନ୍ମ ମୃତ୍ୟୁର ରହସ୍ୟ ମୌନି ବାବା ହଠାତ୍ କାହିଁକି ଶୁଣେଇବାକୁ ଯାଉଥିଲେ ? ଗୌରୀ ହଜିବା, ମେଜର୍ ଅସୁସ୍ଥ ହେଇଯିବା ଭଳି ବିଭିନ୍ନ ଆକସ୍ମିକ ଘଟଣାମାନ ଘଟି ଚାଲିଛି । ଯା ପରେ ଆଉ କଣ ଆକସ୍ମିକ ଘଟଣା ଅପେକ୍ଷା କରି ରହିଛି ତାଙ୍କୁ ?

ବରୁଣ ଭାବିଥିଲେ, କିଛି ଅଘଟଣ ଘଟିବା ପୂର୍ବରୁ ତାଙ୍କୁ ଡାକ୍ତରଟେ ଖୋଜି ନେବାକୁ ହେବ ମେଜରଙ୍କ ପାଇଁ । ସେ ସୁଟକେଶ ଖୋଲି ଟର୍ଚ୍ଚ ବାହାର କଲେ । ଏଇ ପାଖରେ କୌଣସିଠି ଡାକ୍ତରଟେ ମିଳିବେନି ? ତାଙ୍କର ମନେ ହେଲା ଯଦି ହଠାତ୍ ମେଜରଙ୍କ ପରେ ତାଙ୍କର ପାଳି ପଡ଼େ ? ଯଦି ତାଙ୍କର ମୃତ୍ୟୁ ହୁଏ । ବରୁଣ ପୂର୍ବରୁ ମୃତ୍ୟୁ କଥା ଭାବି ଭୀଷଣ ଭୟଭୀତ ହେଇ ପଡୁଥିଲେ । କେମିତି ହେବ ମୃତ୍ୟୁ ? ନିଃଶ୍ୱାସ ନେବାକୁ କଷ୍ଟ ହେବ କି ?

ଭୀଷଣ ଯନ୍ତ୍ରଣା ହେବ ? ଖୁବ୍ ଛଟପଟ ହେବେ ସେ, କଂସେଇ ଦୋକାନରେ ଛେଳି ଯେମିତି ଛଟପଟ ହୁଏ ମୃତ୍ୟୁ ପୂର୍ବରୁ ? ମୃତ୍ୟୁ ତାଙ୍କ ପାଖରେ ଆଜି ସୁଦ୍ଧା ଭୟାନକ ଥିଲା । କିନ୍ତୁ ଆଜି ଏଇ ମୁହୂର୍ତ୍ତରେ, ତାଙ୍କର ମନେ ହେଉଥିଲା ମୃତ୍ୟୁ ଯେମିତି ଏକ ଶୀତଳ ସୁନ୍ଦର ସ୍ପର୍ଶ । ମୃତ୍ୟୁକୁ ଡରିବାର କିଛି ନାହିଁ । ଏଇ ମୁହୂର୍ତ୍ତରେ ଯଦି ମୃତ୍ୟୁ ଆସି ପହଞ୍ଚେ, ବରୁଣଙ୍କର ଦୁଃଖ, କଷ୍ଟ କିଛି ହେବ କି ?

ହିମାଳୟର ଶୀତଳ ସ୍ପର୍ଶ ତାଙ୍କ ପାଇଁ ନୂଆ ନଥିଲା । ଚାକିରୀ କାଳ ଭିତରେ, ବରଫ ଖୋଳି, ରାସ୍ତା ତିଆରି କରିଛନ୍ତି ସେ ଏଇ ହାତରେ । ବଙ୍କା, ତୀଖା ପାହାଡ଼ ଚଢ଼ିଛନ୍ତି । ପେଟେଇ ପେଟେଇ ଘୁଷୁରିଛନ୍ତି । ହିମାଳୟର କୋଳ ଅନେକ ଦିନ ଥିଲା ତାଙ୍କର ଚରାଭୂଇଁ । ସେତେବେଳେ କିନ୍ତୁ ଏମିତି ଅସୁସ୍ଥ ହେଇ ପଡୁନଥିଲେ ସେ । ବୟସଟା ଅବଶ୍ୟ ଗୋଟେ କାରଣ ହୋଇପାରେ । ସେତେବେଳେ ଯୁଆନ୍ ଅବସ୍ଥା । ରକ୍ତ ଗରମ ଥିଲା । ହାତ ମୁଠାରେ ହାଡ଼ଗୁଣ୍ଡ କରିଦେବାର ଶକ୍ତି ଥିଲା । ଆଉ ଏବେ ପୃଥିବୀରୁ ବିଦାୟ ନେବାର ବେଳ ପହଞ୍ଚିଲାଣି । ବଡ଼ କ୍ଷୀଣ ସୂତାଟିଏରେ ବନ୍ଧା ହେଇଛି ଜୀବନ । ଟିକେ ପବନରେ ଗଛରୁ ଶୁଖିଲା ପତ୍ରଟେ ଝଡ଼ି ପଡ଼ିଲା ପରି କେତେବେଳେ ଯେ ସେ ଝଡ଼ି ପଡ଼ିବେ କହି ହେବନାହିଁ ।

ମୃତ୍ୟୁକୁ ଡରୁ ନଥିଲେ ସେ ଆଉ । ମୃତ୍ୟୁ ଯେତେବେଳେ ଅନିର୍ବାଯ୍ୟ, ଆଜି ନ ହେଲେ କାଲି, ସେତେବେଳେ ମୃତ୍ୟୁରୁ ଦୂରକୁ ପଳେଇବାର ମାନେ କଣ

ହୋଇପାରେ ? ମୃତ୍ୟୁ କଥା ଭାବିଲେ, ଶର୍ମିଷ୍ଠା କଥା ଭାବି ଦୁଃଖ ଲାଗେ ତାଙ୍କୁ । ଦିଟା ରୋଷେଇ ମଧ କରି ଜାଣିନି ସେ ଠିକ୍ ଭାବରେ । ରୋଷେଇବାସ ଧନ୍ଦାଟି ତ ସେ ସମ୍ଭାଳି ନେବ ଯେକୌଣସି ଭାବରେ, କିନ୍ତୁ ତାଙ୍କ ଅନ୍ତେ ବାକି ଜୀବନଟା ସେ କଟେଇବ କେମିତି ? ଧିରେ ଧିରେ ଅନ୍ଧତ୍ୱଟେ ମାଡ଼ି ଆସୁଛି ତା ଆଖିକୁ । ବହୁ ଡାକ୍ତରଙ୍କ ପାଖରୁ ବହୁ ଜାଗାରୁ ବିଫଳ ହୋଇ ଫେରିଲେଣି । ରେଟିନାଟା ଜାଳି ହୋଇଯାଉଛି । ଦିନକୁ ଦିନ ଯା ପାଇଁ ଆଉ କୌଣସି ଉପଚାର ନାହିଁ । ଧିରେ ଧିରେ ଅନ୍ଧାର ଛଡ଼ା ଆଉ କିଛି ରହିବ ନାଇଁ ତା ପାଖରେ । ତାଛଡ଼ା ଝିଅଟାର ସ୍ୱଭାବ ଯାହା ହେଉଛି, କିଏ ତାକୁ ଆପଣେଇ ନେଇ ପାରିବ ? ଦିନସାରା ଏଣୁତେଣୁ ଗପୁଥାଏ ବୋଲି ପାଖ ପଡୋଶୀ ମଧ ଖାପଛଡ଼ା ହୋଇ ରୁହନ୍ତି । ଅତି ଦରକାର ନ ପଡ଼ିଲେ, ଘରକୁ ଆସନ୍ତି ନାହିଁ କେହି । ତେବେ ଝିଅଟାର ଦିହ ପା ଭଲ ମନ୍ଦରେ କିଏ ଆସି ଛିଡ଼ା ହେବ ପାଖରେ ?

ମେଜର ଭାବିଲେ, ମୁଁ ପାପୀ, ଅଧର୍ମୀ । ସେଇଥିପାଇଁ ଏତେବାଟ ଆସି, ଶେଷ ମୁହୂର୍ତ୍ତରେ ଭଗବାନଙ୍କ ଦର୍ଶନରୁ ବଂଚିତ ହେଉଛି । ହେ ପ୍ରଭୁ, ତମେ ତ ସବୁ ବୁଝିପାର, ଜାଣିପାର । ମୁଁ ଯେ ଆଉ ତମ ପାଖରେ ପହଞ୍ଚି ପାରିବି ନାହିଁ, ତମେ ଜାଣି ସାରିଛ । ମୁଁ ଚିର ନିଦ୍ରାରେ ଶୋଇବା ଆଗରୁ ଝିଅଟିର ବ୍ୟବସ୍ଥାଟିଏ କରିଦିଅ ପ୍ରଭୁ । ମୁଁ ମୋର କୃତକର୍ମର ଫଳରୁ ଆପଣଙ୍କର ଦର୍ଶନରୁ ବଂଚିତ ହେଉଛି ପ୍ରଭୁ । ଏଇ ପରିଣତି ମୋର ପ୍ରାପ୍ୟ । ହେଲେ ପ୍ରଭୁ, ଝିଅଟା କଣ ପାପ କରିଥିଲା ଯେ, ତା ଜୀବନଟା ଏମିତି ଅର୍ଥହୀନ ହୋଇଗଲା । ପ୍ରଭୁ, ଦୟାକର । କୂଳରେ ଲଗାଅ ତାକୁ । ମେଜର୍‌ଙ୍କ ଆଖି ସାମ୍ନାରେ ଭାସି ଉଠିଥିଲା ସେଇ ହିନ୍ଦୀଭାଷୀ ଲୋକଟିର ଚେହେରା । ଯିଏ ଶର୍ମିଷ୍ଠା ଆଡ଼କୁ ବନ୍ଧୁତାର ହାତଟେ ବଢ଼େଇ ଦେଇଥିଲା ଏଇ କିଛି ଦିନ ଭିତରେ । ପ୍ରଭୁ ସୁଯୋଗ ଦେଲ ତ ଏଇ ବୟସରେ ଦେଇ ? ଏ ବୁଢ଼ୀ ବୟସରେ ଆଉ କଣ ବାକି ଅଛି ତାର, କେବଳ ସାଥୀଟିଏ ପାଇବା ଛଡ଼ା ? ସେ ନିଜଆଡ଼ୁ ପଚାରିବେ କି ଲୋକଟିକୁ ? ଝିଅଟା ପାଗେଳୀଙ୍କ ପରି ବକ୍ ବକ୍ କରୁଥାଏ ସିନା ମନ ଭିତରେ ତାର କିଛି ନାହିଁ । ତମରି ହାତରେ ମୁଁ ଝିଅଟାକୁ ଟେକି ଦେଉଛି । ତମେ ଏକା ସମ୍ଭାଳି ପାରିବ ତାକୁ । ତାଙ୍କୁ ପୋଷିବାକୁ ପଡ଼ିବ ବୋଲି ଭାବିବ ନାହିଁ ବାପା । ସ୍ଥାବର ଅସ୍ଥାବର ହୋଇ ଆଠ ଦଶଲକ୍ଷ ଟଙ୍କାରୁ ଅଧିକ ସମ୍ପତ୍ତି ଅଛି ମୋର । କିଏ ଖାଇବ ଶର୍ମିଷ୍ଠା ଆଉ ମାଳବିକା ଛଡ଼ା ?

ମାଳବିକା ପାଇଁ ତାଙ୍କର ଚିନ୍ତା ନାହିଁ । ଝିଅଟା ହୁସିଆର । ମା ପରି ଦେଖିବାକୁ ପୁଣି ସୁନ୍ଦର । ବ୍ୟବହାର ମଧ ଠିକ୍ ସେହିପରି ମିଠା । କଥାବାର୍ତ୍ତାରେ ଯେକୌଣସି

ଲୋକର ମନ କିଣି ନେଇ ପାରିବ ଯେ ଅଳ୍ପ ସମୟରେ । ଚାକିରୀ କରୁଛି, ନାଟ ତାମସାରେ ତାର ଭାରି ସଉକ । ଗୋଟିଏ ସୌଖୀନ ନାଟ୍ୟ ସଂସ୍ଥାର ସେ ମୁଖ୍ୟ ପୁରୋଧା କହିଲେ ଚଳିବ । ବିଭିନ୍ନ ସମୟରେ ତାର ନାଟକ ମଞ୍ଚସ୍ଥ ହେଉଛି ରବୀନ୍ଦ୍ର ମଣ୍ଡପରେ, ଭଞ୍ଜ ମଣ୍ଡପରେ । କେବଳ ଓଡ଼ିଶା ଭିତରେ ନୁହଁ, ଏହ୍ଲାବାଦ, ଦିଲ୍ଲୀରେ ମଧ ଅଭିନୟ କରିଛି । ବହୁ ଜାଗାରୁ ଚିଠି ଆସେ, ଅଭିନନ୍ଦନ ଆସେ । ମାନପତ୍ର ପାଇଛି ସେ । ଇଂରାଜୀ ଖବରକାଗଜରେ ସେ ଅଭିନୟ କରିଥିବା ନାଟକର ରିଭ୍ୟୁ ଛପା ହେଇଛି ।

ମାଳବିକା କିନ୍ତୁ ବାହା ହେବାକୁ ଚାହେଁ ନାହିଁ । ଅସଲରେ ସେ ବାହା ହେଇ ପାରିବ ନାହିଁ । କିନ୍ତୁ ସେଥିପାଇଁ ତାର ଦୁଃଖ ନାହିଁ, ଗ୍ଲାନି ନାହିଁ । ଅବଶୋଷ ବୋଧରୁ ପାଗଳପଣ ନାହିଁ ଶର୍ମିଷ୍ଠା ପରି । ସେ ସମୟକୁ ଧରି ରଖିଛି ତା ହାତ ମୁଠାରେ । ହେମାଙ୍ଗିନୀ ଆଉ ସେ କେବେ ପିଲାଙ୍କୁ ଭାଗ ବାଣ୍ଟି ନେଇନଥିଲେ । ତଥାପି ଶର୍ମିଷ୍ଠା ହିନ୍ଦୁ ହେଇ ରହିଗଲେ, ମାଳବିକା ଚର୍ଚ୍ଚକୁ ଯାଉଥିଲା ପ୍ରତି ରବିବାର । ହେମାଙ୍ଗିନୀ ମଦରମେରୀ ଓ ଯୀଶୁଙ୍କ ବଡ଼ ଛବି ଦିଟା ଟାଙ୍ଗିଥିଲା ଘରେ । ଶର୍ମିଷ୍ଠା କିନ୍ତୁ ବିଭିନ୍ନ ଦେବ ଦେବୀଙ୍କ ଫଟୋ ରଖିଛି ତା ଥାକରେ । ହେମାଙ୍ଗିନୀଙ୍କ ସେଇ ଛବି ଦିଟା ମାଳବିକା ଘରେ ଏବେ । ଶର୍ମିଷ୍ଠା ଗୁରୁ ମନ୍ତ୍ର ନେଇଚି । କଲେଜରେ ଲମ୍ବା ଛୁଟି ହେଲେ ବାଙ୍ଗାଲୋର୍ ଯାଏ ଗୁରୁଙ୍କ ଆଶ୍ରମକୁ ।

ମାଳବିକା ରାଉରକେଲାରେ ରହେ । ଶର୍ମିଷ୍ଠା, ଭୁବନେଶ୍ୱରରେ । ମେଜରଙ୍କୁ ଶର୍ମିଷ୍ଠା ପାଖରେ ହିଁ ରହିବାକୁ ପଡ଼େ । ଘରର ଦୁର୍ବଳ ପିଲା ପ୍ରତି ବାପା ମାର ଅଧିକ ଆସକ୍ତି ଥାଏ । ତାଙ୍କର ସବୁବେଳେ ମନେ ହୁଏ, ମାଳବିକା ନିଜକୁ ସମ୍ଭାଳି ନେଇ ପାରିବ । କିନ୍ତୁ ଶର୍ମିଷ୍ଠା ? ଗୋଟେ ଆଡପାଗଳୀ ଝିଅକୁ କେମିତି ସେ ଛାଡ଼ି ପାରିବେ ଏକା ? ହେ ଭଗବାନ, ମୋ ଝିଅ ଦିଟା କଣ ଅଭିଶପ୍ତ ଅପସରୀ ଥିଲେ ? ନିଜ କୃତକର୍ମ ଭୋଗ କରିବାକୁ ମର୍ତ୍ତ୍ୟରେ ଜନ୍ମ ନେଇଥିଲେ ? ମେଜର୍ ଶର୍ମିଷ୍ଠାକୁ ପାଖକୁ ଡାକିଥିଲେ । ତାଙ୍କ ପାଖରୁ ଲୋକମାନେ ଟିକିଏ ଦୂରେଇ ଯିବା ପରେ ସେ କିଛି କହିବାକୁ ଚେଷ୍ଟା କରିଥିଲେ ।

ଶର୍ମିଷ୍ଠା ପଚାରିଥିଲା: କଣ ବାପା, ଭାରି କଷ୍ଟ ହେଉଛି କି ?

କଷ୍ଟ ନୁହେଁରେ ମା । ଗୋଟେ କଥା କହିବି ଯେ, କେଉଁଠୁ ଆରମ୍ଭ କରିବି ଭାବି ପାରୁନି ।

ବାପା, ତମେ କି କଥା ମୋତେ ଏମିତି କହିବ ଯେ, କେଉଁଠୁ ଆରମ୍ଭ କରିବ ବୁଝିପାରୁନ ।

ମାରେ, ମେଜର୍ ଧରିଥିଲେ ଶର୍ମିଷ୍ଠାର ହାତ, ମୁଁ ବୁଢ଼ା ହେଇ ଯାଇଛି । ଆଉ ବେଶିଦିନ ବଂଚିବି ନାହିଁ । କିଏ ଜାଣେ ଏଇ ରାସ୍ତାରେ ଯେ କିଛି ଅଘଟଣ ଘଟି ନଯିବ । କିନ୍ତୁ ତୋ ପାଇଁ ମୋ ମନରେ ଦୁଃଖ ରହିଗଲା ଜାଣ । ତୋ ଦେଖାଚାହାଁ ପାଇଁ ଯଦି କେହି ଗୋଟେ ଥାନ୍ତା, ମୁଁ ନିଶ୍ଚିନ୍ତରେ ମରି ପାରନ୍ତି ।

ସେମିତି କଥା କୁହନା । ତମର କିଛି ହେବ ନାହିଁ । ତମର କିଛି ହେଇଗଲେ ମୁଁ କଣ କରିବି ଯେ ?

ସେଇଥିପାଇଁ ତ ଚିନ୍ତା । ମାଳବିକା ପାଇଁ ମୋର କୌଣସି ଚିନ୍ତା ନାହିଁ । ସେ ନିଜେ ସବୁକିଛି ସମ୍ଭାଳି ନେଇପାରେ । ଜୀବନଟା ତା ପାଖରେ ବୋଝ ହେଇ ମାଡ଼ି ବସିନି । ଜୀବନକୁ ଉପଭୋଗ କରି ଶିଖିଛି ସେ । ତା ଭିତରେ ନିଶା । ସେଇ ନିଶାରେ ମାଡ଼ି ସେ ଦୁର୍ଭାଗ୍ୟକୁ ଆଡ଼େଇ ଦେଇ ରହି ଯାଇ ପାରିବ । କିନ୍ତୁ ତୁ ପାରିବୁ ନାହିଁ, ମୁଁ ଜାଣେ । ସେଇଥିପାଇଁ କହୁଥିଲିଃ ତୁ କାହାରିକୁ ପସନ୍ଦ କରୁ ଯଦି, ମୋତେ କହିଦେବୁ । ନଚେତ୍ ନିଜେ ନିଜର ବ୍ୟବସ୍ଥା କରିନେବୁ । ବାପା ହେଇ ଏମିତି କଥା କହିଲି ବୋଲି ମନରେ ଧରିବୁ ନାହିଁ । ମୋତେ ଆଉ କୌଣସି ରାସ୍ତା ଦିଶୁ ନାଇଁ । ଯଦି ମୁଁ ମରିଯାଏ, ମୋତେ ଏ ଗଙ୍ଗାରେ ଭସେଇ ଦେଇ ତୁ ଚାଲିଯିବୁରେ ମା ।

ଶର୍ମିଷ୍ଠା ଭାବିଥିଲା, ବାପା ପ୍ରଳାପ କରୁଛନ୍ତି ଅସୁସ୍ଥତା କାରଣରୁ । ସେ ତାଙ୍କ କପାଳରେ ହାତ ବୁଲେଇ ଦେଖିଥିଲା, ଜ୍ୱର ଅଛି । ମେଜର କହିଲେ, ନା, ମୋତେ ଜ୍ୱର ଲାଗୁନି । ବରଂ ଶ୍ୱାସଟା ଟିକିଏ ବାହାରିଛି । ସେ ଠିକ୍ ହେଇଯିବ । ତୁ ବ୍ୟସ୍ତ ହୁଅନା । ଯା ଶୋଇ ପଡ଼ିବୁ । ବହୁତ ରାତି ହେଲାଣି । କାଲି ଭୋର୍‌ରୁ ଭୋର୍‌ରୁ ତୋତେ କେଦାରନାଥ ପାଇଁ ଚାଲିବାକୁ ପଡ଼ିବ ପୁଣି ।

କି କଥା କହୁଛ ବାପା । ତମକୁ ଏଇଠି ଏ ଅବସ୍ଥାରେ ଛାଡ଼ି ଦେଇ ମୁଁ କେଦାରନାଥ ଯିବି ? ମୁଁ କେଉଁଠାକୁ ଯିବି ନାହିଁ । ଭଗବାନ ଯଦି ପ୍ରକୃତରେ ଅଛନ୍ତି, ତେବେ ତମକୁ ଏଇ ମଝି ରାସ୍ତାଟାରେ ଅସୁସ୍ଥ କରି ପକେଇ ଦେଲେ କାହିଁକି ? ସତ କହୁଚି ମୋର ଭଗବାନଙ୍କ ଉପରୁ ଆସ୍ଥା ଉଠି ଯାଇଛି । କଣ ଦେଇଛନ୍ତି ? ଅନ୍ୟ ସାଧାରଣ ପିଲା ପରି ନାଚି କୁଦି, ଡେଇଁ, ପାଣିରେ ବୁଡ଼ି ଗଛରେ ଚଢ଼ି ବସିଲି ନାହିଁ ମୁଁ । ଅନ୍ୟ ଲୋକ ପରି ମୁଁ ବାହା ହେଇ ସଂସାର କରି ପାରିଲି ନାହିଁ । ଘର ସଂସାର, ପିଲା ଛୁଆର କଳ୍ପନା କରିବାକୁ ବି ଭୟ କଲି । ଗୋଟେ ଧୂଧୂ ମରୁଭୂମି ପରି ଲମ୍ବା ଜୀବନ ଦେଇଛନ୍ତି ଯେ ପାରି ହେଉ ହେଉ ଥକିଗଲିଣି ମୁଁ । ନା, ମୁଁ ତୁମ ଭଗବାନଙ୍କ ପାଖକୁ ଯିବି ନାଇଁ । କହୁକହୁ ଛୋଟ ପିଲାଟି ଭଳି କଇଁ କଇଁ ହେଇ କାନ୍ଦି ପକେଇଲା ଶର୍ମିଷ୍ଠା । ମେଜର୍‌ଙ୍କୁ ନିଶ୍ୱାସ ନେବାରେ କଷ୍ଟ ହେଉଥିଲା । ସେ କାଛକୁ ଆଉଜି ଝୁଙ୍କି ବସିଥିଲେ

ଅତି କଷ୍ଟରେ । ହାତ ବଢ଼େଇ ଲୁହ ପୋଛିଥିଲେ ଶର୍ମିଷ୍ଠାର ।

ତୁ କାନ୍ଦନାରେ ମା । ସେ କହିଥିଲେ ଭଙ୍ଗା ଭଙ୍ଗା ଗଳାରେ । ତାଙ୍କର ଆଜି ସୁଦ୍ଧା ଧାରଣା ଥିଲା ଶର୍ମିଷ୍ଠାଟା ବୋକି । କିଛି ଆଡପାଗଳୀ । ତାଙ୍କ ଯିଦ୍‌ଖୋର୍ କୁନି ଝିଅଟେ । ତା ବୋଧ ବୁଦ୍ଧିରେ ପ୍ରେମ, ରୋମାନ୍ସ, ସଂସାର କିଛି ନଥିବ ପରା । ଆଜି ପ୍ରଥମ ଥର ପାଇଁ ସେ ଅନୁଭବ କଲେ ନାରୀଟେ ତା ଭିତରୁ କଇଁ କଇଁ ହେଇ କାନ୍ଦି ଉଠୁଛି, ବିକଳରେ ଭଗବାନଙ୍କ ସ୍ଥିତିକୁ ତୁଚ୍ଛ କରି ।

ମେଜର୍‌ଙ୍କ ପାଖରେ ଭାଷା ନଥିଲା । କେଉଁ ଭାଷାରେ ବୁଝେଇବେ ସେ ଝିଅକୁ । ଜୀବନର ଅନ୍ୟ ନାମ କଣ ଅସହାୟତା ? ତେବେ କାହିଁକି 'ମରିତେ ଚାହିଁନା ଆମି ସୁନ୍ଦର ଭୁବନେ' କଥା କୁହନ୍ତି ଅନେକେ ? ନାଇଁ ନାଇଁ କରି କିଛି ତା ସୌନ୍ଦର୍ଯ୍ୟବୋଧ ଥିବ ଜୀବନର ? ସେଇ ସୌନ୍ଦର୍ଯ୍ୟବୋଧଟି ବଡ଼ କି ଅସହାୟତା ବଡ଼ ? ଅସହାୟତା ସାମ୍ନାରେ ଜୀବନ ଭାରି ଛୋଟ ହେଇଯାଏ । ପ୍ରାପ୍ତି ସବୁ ଅର୍ଥହୀନ ହେଇଯାଏ । ତଥାପି ସଂସାର ଛାଡ଼ିକି ଯିବାକୁ ଚାହେଁନା ।

ମେଜର୍ ଦୀର୍ଘଶ୍ୱାସ ଛାଡ଼ିଲେ । ଶର୍ମିଷ୍ଠା କାନ୍ଦୁଛି କାନ୍ଦୁ । କାନ୍ଦି କାନ୍ଦି ଆଖିର ଲୁହତକ ନିଗାଡ଼ି ଦେଲେ, ଛାତି ତଳର ଦୁଃଖ ତଳ ଓଗାଳି ଦେଲେ ହୁଏତ ହାଲୁକା ଲାଗିବ । ଭାରି ବିଚିତ୍ର ଏ ଜୀବନ । ଭଗବାନ ଏତେ ବୈଚିତ୍ର୍ୟମୟ କରି ମଣିଷ ଜୀବନକୁ ନ ଗଢ଼ିଥିଲେ କଣ ଚଳିନଥାନ୍ତା ?

---

ଜୀବନ ତାଙ୍କୁ କିଛି କମ ନିର୍ଯ୍ୟାତନା ଦେଇନଥିଲା । ସ୍ୱାମୀ ପୁଅ ଝିଅ ଜମିବାଡ଼ି ସବୁକିଛି ଥାଇ ବି କିଛି ନଥିଲା ପରି । ଅସଲରେ ଜୀବନସାଥୀଟି ଯଦି ମିଠା କଥା କେଇପଦ ନ କହିଲା, ହଜାର ଲୋକଙ୍କ ସ୍ନେହ ସୋହାଗ ଅଲଣା ଜାଣ । ଆଠବର୍ଷ ବୟସରେ ବାହା ହେଇଥିଲେ । ବାହା କଣ ଜାଣିନଥିଲେ ସେତେବେଳକୁ । ଯେଉଁଦିନ ଜାଣିଲେ ଆସନ୍ତା ମାସରେ ତାଙ୍କ ବାହାଘର ହଉଛି, ନହସପଡ଼ା ଗାଁ ସରପଞ୍ଚ ଘରେ ସେଦିନ ଖୁସିରେ ଧାଇଁଥିଲେ ପାଟରା ସାହିକୁ । ପାଟରା ସାହିର ନୀଳ ପାଟର ଝିଅ ବାହା ହେଇଥିଲା ଯେ, ତା ଶାଶୁଘର ସୁନା ରୁପା କରି କେଜିଏ ଗହଣା ଆଣିଥିଲେ । ବେକକୁ ହରଡ଼ ଫାଳିଆ, ଧାନୁଆ ସୁନା କଣ୍ଠି, ହାତକୁ ବାଲା, ନାକକୁ ବସୁଣୀ, ମୁଣ୍ଡକୁ ଗୋଜିକାଠ, ଚଉଁର ମୁଣ୍ଡି, ଟଭାଫୁଲ, ପାଦକୁ ପାହୁଡ଼, ହାତକୁ ବଟଫଳ, ବାହିକୁ ତାଡ । ବଡ଼ ଫୁଲେଇ ହେଇ ଦେଖେଇଥିଲା ନୀଳ ପାଟରା ଝିଅ । ତାଙ୍କ ଶାଶୁଘର ଲୋକେ ମଧ୍ୟ କେତେ କଣ ଗହଣା ଧରି ଆସିବେ । ବଡ଼ ଖାନଦାନୀ

ଘର । ସତକୁ ସତ ବୋଝେ ଗହଣା ପିନ୍ଧି ବାହା ହେଇଥିଲେ ସେ । ବାହା ହେଉଥିଲା ବେଳେ ତାଙ୍କୁ ନିଦ ମାଡ଼ିଥିଲା । ବେଦୀଟା ଉପରେ ଶୋଇ ପଡ଼ିଥିଲେ ମାଇଁ କୋଳରେ । ମାଇଁ ମଝିରେ ମଝିରେ ଚିମୁଟି ଦଉଥିଲେ ନିଦ ଭଙ୍ଗେଇବା ପାଇଁ । କଣ କିଲୋ ମାଇଁ, ତୁ ମୋତେ ଚିମୁଟି ଦଉଛୁ କିଆଁ, ପଚାରୁଥିଲେ ସେ । କାହାକୁ ବାହା ହେଲେ, କେମିତି ବାହା ହେଲେ କିଛି ଜାଣି ନଥିଲେ ସେ । ଶାଶୁ ଘରେ ଦିନ କେଇଟା ରହି ଫେରି ଆସିଥିଲେ ସେ ବାପ ଘରକୁ । କେବଳ ପୁନିଅ ପରବରେ ସେ ମଝିରେ ମଝିରେ ଶାଶୁ ଘରକୁ ଯାଉଥିଲେ, ଦିନ କେଇଟା ରହି ଫେରି ଆସୁଥିଲେ । ଧିରେ ଧିରେ ବର୍ଷ କେଇଟାରେ ଦିହ ବଦଳିଥିଲା । ସେ ବଡ଼ କନିଆ ହେଇଥିଲେ, ପୁଆଣି ହେଇ ଚାଲି ଯାଇଥିଲେ ଶାଶୁ ଘରକୁ । ଦି କଂସା ପଖାଳ ଖାଉଥିଲେ ସେ ସେତେବେଳକୁ । ଗୋଡ଼ ହାତ ପେଣ୍ଡା ପେଣ୍ଡା ହେଇ ରହିଥିଲା । ଓଠଟା ନାଲି ଟକଟକ । ଆଖି ଗୁଡ଼ା ଫରଚା ସକାଳ ଲେଖେଁ ସଫା । କଜଳ ଟିକେ ନାଇ ଦେଲେ, ସକାଳ ପହରୁ ମେଘ ଉଠେଇଲା ପରି ଦିଶୁଥିଲା ଆଖି ଦିଟା । ବର ପିଲାକୁ ଦେଖିବାକୁ ଇଛା ହେଉଥିଲା । ବାପଘରେ ଥିଲାବେଳେ ଭାଉଜମାନେ ଟାହିଟାପରା କରି ସବୁ ଶିଖେଇ ଦେଇଥିଲେ ସେତେବେଳେକୁ । ଶ୍ୱଶୁର ଘରକୁ ଯାଇ ଯେତେବେଳେ ସେ ପ୍ରଥମେ ଅଭିବାପାଙ୍କୁ ଦେଖିଲେ, ବିଶ୍ୱାସ କରି ପାରିଲେନି ଏଇ ଜଣକ ତାଙ୍କ ବର । ଲମ୍ବା ଚଉଡ଼ା ମୁସ୍ତାଣ୍ଡ ଚେହେରା । ଦିହସାରା ଲୋମ । ମୁଣ୍ଡରେ ଗୋଛେ ବାଳ । ଦିନବେଳା କବାଟ ଫାଙ୍କରେ ଦେଖିଥିଲେ ସେ ତାଙ୍କୁ । ରାତିରେ ସେଇ ମୁସ୍ତାଣ୍ଡ ଚେହେରାର ଲୋକଟା ତାଙ୍କୁ ଅନ୍ଧାରରେ ଗ୍ରାସ କରିଥିଲା । ଖୁବ୍ ନିର୍ଦ୍ଦୟ ଭାବରେ ତାଙ୍କୁ ଯନ୍ତ୍ରଣା ଦେଇଥିଲା ।

ପ୍ରତିଟି ରାତି କଟୁଥିଲା ସେଇ ସମାନ ପୀଡ଼ନ ଭିତରେ । ଯେମିତି ସେ ଭାତ ଥାଳିଟେ, କେହି ଆସି ତାଙ୍କୁ ଖାଇଦେଇ ଚାଲି ଯାଉଛି । ପନ୍ଦର ବର୍ଷ ବୟସରେ ସେ ପ୍ରଥମ ସନ୍ତାନକୁ ଗର୍ଭରେ ଧରିଥିଲେ । ଜନ୍ମ ହେବା ଆଗରୁ ନଷ୍ଟ ହେଇଗଲା । ପରକୁ ପର ତିନିଟା ନଷ୍ଟ ହେଲା । ଦିହ ହାତ କଣ୍ଟା ହେଇଗଲା ସେଇଥିରେ । ବାପା ଡକେଇ ନେଲେ ତାଙ୍କୁ ଡାକ୍ତର କବିରାଜ କରେଇବେ ବୋଲି । ଶାଶୁ କହିଲେ, ଏଇ ବୟସରେ ମୋର ବି ଦିଟା ଛୁଆ ହେଇଥିଲେ । ବୋହୂଟାର କି ବିମାରୀ ହେଇଛି କେଜାଣି, ଛୁଆ ରହୁନି ପେଟରେ । ଭଲକରି ଡାକ୍ତର କବିରାଜ କରେଇବଟି । ବାପା ଘରେ ଛ ମାସ ରହି ସେ ଫେରିଥିଲେ ଶାଶୁ ଘରକୁ । ଅଭି ବାପାଙ୍କ ଅଭ୍ୟାସ ବଦଳି ନଥିଲା ଏଇ ଦିନ କେଇଟାରେ ବିରହରେ ଦି । ଥରେ ହେଲେ ମୁହଁରୁ ମିଠା କଥା

କେଇପଦ ୯ରିଲା ନାହିଁ । କହିଲେ ନାଇଁ, ତୁ ଯାଇଥିଲୁ ଯେ ଘରଟା ଖାଁ ଖାଁ ଲାଗୁଥିଲା ଲୋ । ରାତିଟା ସାରା ନିଦ ହଉନଥିଲା ତୋ ପାଇଁ । କେଡ଼େ କଅଁଳ ଛନଛନ ହେଇ ଫେରିଛୁ କିଲୋ ବୋଲି କହିଲେ ନାଇଁ । ତୋ ପାଇଁ ପେଡା ଦିଟା ଆଣିଛି କି ଅଳତା ଶିଶିଟେ ଆଣିଛି କହି ଲୁଚେଇ କରି ବଢ଼େଇ ଦେଲେନି । ପୂର୍ବ ପରି ଭାତ ଥାଳିଏ ଖାଇଲା ପରି ଖାଇ ଯାଇଥିଲେ ଯାହା ତାଙ୍କୁ । ମରଦଗୁଡ଼ାଙ୍କର ଭୋକ ବହୁତ । ଯେତେ ଖାଇଲେ ବି ମନ ଶାନ୍ତ ହୁଏ ନାହିଁ ତାଙ୍କର । ଆଉ ମାଇକିନା ଜାତିଠୁଁ ହୀନ ଛି ଛାକରିଆ ଜୀବନ କାହାର ଅଛି ଯେ ? ଭାତ ରାନ୍ଧି ଖୁଆଅ, ଆଉ ନିଜେ ଭାତ ଥାଳି ହୁଅ । ଛିଃ ।

ଯା ହେଉ, ଅଭିଟା ତା ବାପା ପରି ନଥିଲା । ଭାରି ନରମ ମଣିଷ ଥିଲା ସେ । ସମସ୍ତଙ୍କ ମନ କଥା, ସମସ୍ତଙ୍କ ଦୁଃଖ ବୁଝେ । କିନ୍ତୁ ମଝିଆ ପୁଅଟା ଟିକେ ବାପ ଅଂଶରେ ଗଲା । ଟିଙ୍ଗା । ଯାହା ବୁଝୁଥିବ ସେୟା । ସେଥିପାଇଁ କି କଣ ବୋହୂଟା ଦାଉ ଦଉପଟ ସହି ପାରିଲା ନାହିଁ । ସମସ୍ତେ କଣ ସେ ହେଇଛନ୍ତି ଯେ ସ୍ୱାମୀର ଗଞ୍ଜଣା ସହି ପଡ଼ି ରହିଥିବେ ? ସେ ବି ତ ଚାକିରୀ କରିଛି ପୁଅମେତେ । ଅଫିସର ହେଇଚି । ଟଙ୍କା କମଉଛି । ତାଙ୍କ ପରି ମୂର୍ଖ ହେଇଚି କି ? କାହିଁକି କେଜାଣି ତାଙ୍କର ମନେ ହେଉଥିଲା ବୋହୂଟାର କିଛି ଦୋଷ ନାହିଁ । ପୁଅଟା ତ ତାଙ୍କର ସଇତାନ । ତାରି ପାଇଁ ଯେତେ ଅଶାନ୍ତି ପାଉଥିବ ବୋହୂଟା ।

ଦିନେ ଖବର ଅଇଲା ମଝିଆ ପୁଅ ଆଉ ବୋହୂ ଅଲଗା ହେଇଯିବେ । ଏବେ ଅଲଗା ଅଲଗା ରହୁଛନ୍ତି ଯିଏ ଯାହାର । କୋର୍ଟ କଚେରୀରେ ମକଦ୍ଦମା ହେଇ ଫଇସଲା ହେବ । ଖବରଟା ଶୁଣିଲା ପରଠୁ ମନଟା ଗୋଳେଇ ଘାଣ୍ଟି ହେଇଥିଲା । ବାପା ମା ଥାଉ ଥାଉଁ ପୁଅ ବୋହୂର ବସା ଭାଙ୍ଗିବ । ହା ଦଇବ । ମନ ମାନିଲା ନାଇଁ ତାଙ୍କର । ଏ କି କଥା । କୋଳରେ ଛୁଆଟେ । ବୋହୂଟା କୁଆଡ଼ିକି ଯିବ । ସେ ଯିବେ ବୁଝେଇ ସୁଝେଇ ନେଇ ଆସିବେ ପିଲା ଦି ଟାଙ୍କୁ । କୋଉ କଥାରୁ ଗୋଟେ ମନ ଫଟାଫଟି ହେଇ ଯାଇଥିବ ପରା । କଥାକୁ ମାଜିଲେ ମୋଟା । ସେ ଅଭିବାପାଙ୍କୁ କହିଥିଲେ ଚାଲ ମଝିଆଁ ପୁଅ ପାଖକୁ ଯାଇ କିଛିଦିନ ବୁଲି ଆସିବା । ତାଙ୍କ ଜୀବନରେ ସେ ପୁରୀ ଛଡ଼ା କେଉଁଆଡ଼କୁ ଯାଇନଥିଲେ । ଅଭିବାପା ତାଙ୍କୁ କେଉଁ ଆଡ଼େ ନେଉଥିଲେ ସିନା ସେ ଯାଆନ୍ତେ । ଥରଟିଏ ଅଭିବୋହୂ ସଙ୍ଗେ ପୁରୀ ଯାଇଥିଲେ ଯାହା ସେତିକି । ଅଭିବାପାଙ୍କର କଣ୍ଠରେ ସରସ୍ୱତୀ ବିଜେ କରିଥିଲେ କି କଣ, ମଝିଆଁ ପୁଅ ଘରକୁ ଯିବା କଥାରେ ରାଜି ହେଇ ଯାଇଥିଲେ ଏକାଥରକେ । ଦି ଦିନ

କାଲ ଟ୍ରେନ୍‌ରେ ବସି ଆସି ପହଞ୍ଚିଲା ବେଳକୁ ମଝିଆ ପୁଅ ଘରଟା ଖାଁ ଖାଁ କରୁଚି । ବୋହୂ ନାତିକି ନେଇ ଅନ୍ୟ କୋଉଠି ରହୁଚି । ମନଟା ବଡ଼ ଉଦାସ ହେଲା । ଏୟା ଦେଖିବାକୁ ଆସିଥିଲେ ସେ ? ପୁଅକୁ ଅନେକ ବୁଝେଇଲେ, ବାପାରେ ନିଜ ହାତରେ ନିଜ ସଂସାରକୁ କାହିଁକି ଭାଙ୍ଗିବୁ କହିଲୁ ? କୋଉ କଥାରୁ ଭଲା ଟିକିଏ ମାନ ଅଭିମାନ ହେଇଯାଇଛି । କାହା ଘରେ ହୁଏନି, ଯା ବୋହୂକୁ ବୁଝେଇ ସୁଝେଇ ନେଇ ଆସିବୁ । ପୁଅ କିଛି କହିଲା ନାହିଁ କି ଗଲା ନାହିଁ । ପରିଡ଼ା ମାଉସୀ ବସି ରହିଲେ । ତୁ ନ ଗଲେ ନାହିଁ । ଠିକଣା ଦେ, ମୁଁ ଯିବି । ପୁଅ ମୂକ ପଡ଼ିଲା । ହପ୍ତେ ଖଣ୍ଡେ ଗଲା, ପରିଡ଼ା ମାଉସୀ ଦିଟା ଫୁଟେଇ ଖୋଇଲେ ପୁଅକୁ । ଥାକରେ ଦେଖିଲେ ଧାଡ଼ିକି ଧାଡ଼ି ମଦ ବୋତଲ ଥୁଆ ହେଇଚି । ମନ ଭଣା ହେଇଗଲା ତାଙ୍କର । ଏଇ ନିଉଁଛୁଣା ଦରବ ପାଇଁ ତାଙ୍କ ପୁଅର ଏତେ ଦୁର୍ଦ୍ଦଶା । ମନ ହଉଥିଲା, ବୋତଲଗୁଡ଼ା ପିଟି ଫୁଟା ଭାଙ୍ଗି ଦିଅନ୍ତେ ପରା । ଅଭି ବାପା ଜାଣିଲେ କଥା ବଢ଼ିବ ସିନା, ଛିଡ଼ିବ ନାହିଁ । ଏତେ ବଡ଼ ପାଟିଟାଏ କରିବେ ପୁଅ ଉପରେ, ଚାକିରୀ ଜାଗା । କେତେ ବଡ଼ ବଡ଼ିଆ ରହିଚନ୍ତି ଏତେ ବଡ଼ କୋଠାଟାରେ, ଚାଳିଶି ପଚାଶ ସରିକି ପରିବାର ରହିଥିବେ ପରା । ସେମାନେ ଶୁଣିଲେ କଣ କହିବେ ? ପୁଅର ମାନ ଇଜ୍ଜତ ଆଉ ରହିବଟି ? କାଛ ଆଲମାରୀଟାକୁ ଚିପା ତାଲାଟେ ମାରି ବନ୍ଦ କରିଦେଲେ ।

ଦିନେ ମଝିଆଁ ପୁଅ ଟିକଟ ଦି ଖଣ୍ଡ କରି ଆଣିଲା । କହିଲା, ଏତେ ବାଟ ଆସିଲୁ ବୋଉ, ଆଉ କେବେ ଆସି ପାରିବୁ କି ନାହିଁ । ତମ ଦିହିଙ୍କ ପାଇଁ ତୀର୍ଥଯାତ୍ରା ଟିକେଟ ଦିଖଣ୍ଡ କରି ଆଣିଛି । ହରିଦ୍ୱାର, ଋଷିକେଶ, କେଦାର ବଦ୍ରି ହେଇ ତୀର୍ଥ କରି ଆସିବୁ ଯା । ଏଇ ଟୁର୍‌ଟା ସାଧାରଣ ଲୋକଙ୍କ ପାଇଁ ନୁହଁ । ପଇସାବାଲାଙ୍କ ପାଇଁ । ସେମାନେ ଯେମିତି ବେଶୀ ଟଙ୍କା ନେବେ, ସେମିତି ସୁଖ ସୁବିଧା କଥା ବି ଭଲ ବୁଝିବେ । ଯାତ୍ରା କଷ୍ଟ ବାଧିବନି ।

ପୁଅ କଥା ଶୁଣି, ଏତେ ଚିନ୍ତା ଭାବନା ଭିତରେ ବି କୋଟିନିଧି ପାଇଲା ପରି ଲାଗିଲା । ସିଏ ଏତେ ଭାଗ୍ୟ କରିଥିଲେ ଯେ ଗଙ୍ଗାରେ ବୁଡ଼ ପକେଇ ଆସିବେ ? ବଡ଼ ପୁଅ ପୁରୀ ନେଇଥିଲା । ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ ପଶି ହେଲା ନାହିଁ । ମୁଣ୍ଡରେ ପାଣି ମାରି ଆସିଛନ୍ତି । ଆଉ ଏବେ ଗଙ୍ଗାରେ ବୁଡ଼ ଦେବେ । ସୌଭାଗ୍ୟ, ସୌଭାଗ୍ୟ, ନୂଆ ଶାସନର ରଥଘର ନାନୀ କେଦାର ବଦ୍ରି ଯାଇଥିଲେ ଯେ କହୁଥିଲେ, ଚଳନ୍ତି ଠାକୁର । ବରଫ ଭିତରେ ଅଛନ୍ତି । ମହା କଠିଣ ରାସ୍ତା ପାରି କରି ଯିବାକୁ ହେବ ? ପୁଣ୍ୟ ନ କରିଥିଲେ କଣ ପହଞ୍ଚି ପାରିବ ସେଠିକୁ ?

ପରିଡ଼ା ମାଉସୀ ଭାବିଥିଲେ, ଠାକୁର ଡୋର ନ ଟାଣିଲେ କେହି ଯାଇପାରିବେ ନାହିଁ । ଯା ହେଉ ଯାଉଛନ୍ତି ଯେତେବେଳେ, ପୁଅ ବୋହୂର ମଙ୍ଗଳ ମନାସି ଫେରିବେ । ହେଲେ ଅଭି ବାପାଙ୍କର କଣ ହେଲା କେଜାଣି, ସେ ମେଜର ବୁଢ଼ାକୁ ଦେଖି, ନାହିଁ ନାହିଁ ବୋଲି ଏକା ଜିଦ୍ ଲଗେଇଛନ୍ତି । ସମସ୍ତିଙ୍କର କଣ ଏକା ଦିହ ଅଛି ? ତାର ଶ୍ୱାସ ବାହାରିଲା ବୋଲି କଣ ୟାଙ୍କର ଆଉ କିଛି ହେଇଯିବ ? ମହାପ୍ରଭୁଙ୍କୁ ଦର୍ଶନ କରିବନି ଯଦି, ଏତେ ବାଟ ଆସିବ କିଆଁ ? ଏଇଗୁଡ଼ାଙ୍କୁ କୁହନ୍ତି, ପାପୀ ଲୋକ । ଅସଲରେ କି ମାନେ ସେ ମହାପ୍ରଭୁଙ୍କର ଦେଖା, ଏତେବୋଟ ଡ଼ୋର ଟାଣି ଆଣି ଶୂନ୍ୟରେ ଝୁଲେଇ ରଖି ଦିଅନ୍ତା ? ବଡ଼ ହଟିଆ ମହାପ୍ରୁ ଭାରି ମନ ବିଡ଼ନ୍ତି ଭକ୍ତର । ଅଭି ବାପା ସିନା ଫନ୍ଦି ଫିକର କରିଥିଲା ବୋଲି ଲତା ମା ବ୍ରାହ୍ମଣୀର ତତଲା ନିଃଶ୍ୱାସରେ ଜଳୁଛି ପୋଡୁଛି, ମୁଁ କଣ କରିଥିଲି ଯେ ମହାପ୍ରୁ ତୁ ମୋତେ ଶୂନ୍ୟରେ ଝୁଲେଇ ରଖିଲୁ ? ଲତା ମା ରାଣ୍ଡି ଖଣ୍ଡି ଲୋକ । କାନିରେ ଲୁହ ପୋଛି, ଯାହା ପାରିଲା ଅଭିଶାପ ଦେଲା- ତୋତେ କୋଢ଼ ହେଉ, ତୋ ପୁଅ ମରୁରେ, ବଂଉଁଶ ବୁଡୁ । ତୋତେ ପାତକ ଲାଗୁ । ମୋ ନିଶ୍ୱାସ ପଡ଼ିଲା ବୋଲି ଜାଣି ରଖଥା । ମୋ ଠାରୁ ବାରି ଖଣ୍ଡକ ହଡ଼ପେଇଲୁ, ତୋ ସବୁ ସମ୍ପତ୍ତି ହାଡ଼ି ଖାଇବ ।

ସତକୁ ସତ କୁଷ୍ଠ ହେଲା ଦେହରେ । ବଡ଼ ପୁଅଟା ମରିଗଲା ଅଦିନରେ । ବ୍ରାହ୍ମଣୀର ଲୁହ କେବେ ଅନ୍ୟଥା ହେବ ? କିନ୍ତୁ ସେ କଣ କରିଛନ୍ତି ? ହାତ ଧରିଛନ୍ତି ସିନା । ଧର୍ମର ଅଧା ଭାଗ ନେବେ, ପାପର ବି । କିନ୍ତୁ କାହିଁକି ? ତମର ଏ କି ବିଚାର ମହାପ୍ରୁ ? ମୁଁ କଣ ବାଛିଥିଲି, ଖୋଜି ଲୋଡ଼ି ଯାଇଥିଲି, ନିଜ ଇଚ୍ଛାରେ କରିଥିଲି । ମୋତେ ଗୋଟେ ପାପୀ ସାଂଗରେ ଜୋର ଜବରଦସ୍ତ ଯୋଡ଼ିଲ କିଆଁ ? ଆଉ ଏବକୁ କହିବ, ସେ ପାପୀର ଅଧା ପାପ ଭାର ତୁ ନେ । ଏଥକୁ ମୋର ଉପାୟ କଣ ? ମୁଁ ନିରିମାୟ, ତମର ବିଚାରରେ ମହାପ୍ରୁ, ଏମିତି ଅବିଚାର, ଅତ୍ୟାଚାର ପାଇବି ତେବେ ?

ସେ ଯାଆନ୍ତୁ, ନ ଯାଆନ୍ତୁ, ମୁଁ ଯାଉଛି । ଭାବିଥିଲେ ପରିଡ଼ା ମାଉସୀ । ଏତେଗୁଡ଼େ ଲୋକ ଚାଲି ଚାଲି ଯାଉଛନ୍ତି ପାହାଡ଼ ଉପରକୁ । ମୁଁ ସେମାନଙ୍କ ସାଂଗରେ ଯିବି, ସେମାନଙ୍କ ସାଂଗରେ ଏଇଠିକୁ ଫେରିବି । ଯିବିନି କିଆଁ ? ମୋ ଧରମ ମୋତେ । ତୁମ ଧରମ ତୁମର । ତମ ପାପର ଭାଗୀ ମୁଁ କିଆଁ ହେବି ?

ଅଭି ବାପା ଏତୁଟେ ମାନ ଆଖି କରି କହିଥିଲେ, କଣ କହିଲୁ ମାଇକିନା, ତୁ ଯିବୁ ଏକା । ସେ ମେଜର୍ ଯାଉନି । ତା ଝିଅ ଯାଉନି । ଆଉ ତୁ କା ସଂଗେ ଯିବୁ ।

ସେ ମଦୁଆ ସାଙ୍ଗେ ? ରାତି ଆଡ଼କୁ ଲୁଚେଇ କରି ପିଉଛି ଯେ କଥା କହିଲେ ଗନ୍ଧ ବାହାରୁଛି ମୁହଁରୁ । ତୋର ମାନ ଇଜ୍ଜତ କିଛି ଅଛିକି ନାହିଁ ?

ପୁଅ ଝିଅ ବାହା କରି ନାତି ନାତୁଣୀ ଦେଖିଲେଣି ସେ । ଦିହରେ ଚମ ଦି ଖଣ୍ଡ ଓହଳିଛି । ନା ରୂପ ଅଛି, ନା ଭେକ । ଏ ବୁଢ଼ୀ ହାଡ଼ିକୁ କିଏ ଛୁଇଁ ଯାଉଛି ଯେ ? ସେ ଲୋକ ତାର ଲୁଚେଇ ଲୁଚେଇ ପିଇଲା ତ କଣ ହେଲା ? ତମକୁ କିଛି କହିଛି କେବେ ? ନା ଧରି ଗାଳି ଦେଇଛି ? ଚୁପଚାପ ଏକା ଏକା ପିଉଥାଏ । ବଡ଼ ବଡ଼ିଆ ଲୋକ । ଖବରକାଗଜ କାଢ଼ନ୍ତି । ତାଙ୍କର ଠାଣିମାଣି ଅଲଗା । ଆମ ସାଂଗରେ ପଳେଇ ଆସିଚନ୍ତି ବୋଲି ଆମ ପରି ଗାଉଁଲି ହେଇଚନ୍ତି ନା କଣ ? ସାନ ପୁଅ ଘରେ କାଛ ଆଲମାରୀରେ ଥାକରେ ଧାଡ଼ି କି ଧାଡ଼ି ମଦ ବୋତଲ ଥୁଆ ହେଇଚି । ଯୋଉଠି ଯୋଉ ଚଳଣି ନା । ଖାଲି ଦେହ ପା କୁ ଜଗିବା କଥା । ପରିଡ଼ା ମାଉସୀ ଭାବିଥିଲେ, ସେ ଯିବେ । କାଲି ଭୋର୍‌ରୁ ଏକଲା ହେଇ ବରଂ ସେ ବାହାରିବେ । ଏତେ ଦିନକେ ଅଭିବାପା ସଙ୍ଗେ ବାହା ହେଇଥିବା ଡୋରଟା କାଟିବେ । ଖଚର ଉପରେ ବସି କେତେ ଲୋକ ଯାଉଛନ୍ତି । ସେ ଯାଇ ପାରିବେନି ? କେତେଦିନ ଆଉ ଅଭିବାପା ମନକୁ ନେଇ ଚଳିବେ ? କେତେ ଦିନ ଆଉ ଦାଉ ଦପ୍ତର ସହିବେ ? କ'ଣ କରିବେ ସେ କରି କରି ? ଘରୁ ତଡି ଦେବେ ତ ? ଦିଅନ୍ତୁ । ପୁଅ ବୋହୂ, ଝିଅ ଜ୍ୱାଇଁ ହେଇ ବଂଶ ମାଡିଛି ତାଙ୍କର । କେହି ମା' ବୋଲି କ'ଣ ଆଶ୍ରା ଦେବେ ନାହିଁ ? ଆଶ୍ରା ନ ଦେଲେ ନ ଦେବେ, ପୁରୀରେ ମହାପ୍ରୁ ଆଶ୍ରାକରି କେତେ ମାଇପି ଲୋକ ମଠରେ ରହୁଛନ୍ତି । ସେ ମଧ ରହିବେ । ମହାପ୍ରୁ ବି କ'ଣ ଆଶ୍ରା ଦେବେ ନାହିଁ ତାଙ୍କୁ ?

ପରିଡ଼ା ମାଉସୀ ଠିକ୍ କରି ନେଇଥିଲେ ଯିବେ ବୋଲି । ଗୋଟିଏ ବସ୍ତ୍ରରେ ହିଁ ଯିବେ ସେ ଠାକୁରଙ୍କ ପାଖକୁ । ସବୁକିଛି ସୀତାପୁରରେ ଛାଡ଼ି ଦେଇ ଯିବେ । ଫେରିଲା ବେଳକୁ ଯଦି ଅଭି ବାପା ଫେରି ଯାଇଥିବେ ଓଡ଼ିଶା ? କା' ସାଂଗରେ ଫେରିବେ ସେ ? ହଅ... ସାନପୁଅ ପାଖକୁ କେହି ଜଣେ ପହୁଁଚାଇ ଦେବନି ?

ପରିଡ଼ା ମାଉସୀ ଅସ୍ଥିର ହେଇଗଲେ । ଅଭିବାପାଙ୍କର ବାରଣ ନ ମାନି ଏଥର ପ୍ରଥମ କରି ସେ ବାହାରକୁ ପାଦ କାଢ଼ିବେ । ବହୁତ ହେଇଗଲାଣି ଜୋର୍ ଜୁଲମ । ଆଉ ସହି ପାରିବେନି । ଅଭି ବାପା ହୋ, ତମେ ଥାଅ । ମୁଁ ଚାଲିଲି । ଆଉ କେତେଦିନର ସଂସାର ଲେଖାଥିଲା, ସଂସାର କଲି । ଏବେ ତୁମେ ମୋତେ ତେଜ୍ୟ କଲେ କି କିଛି କର ଭୟ ନାଇଁ । ମୁଁ ଚାଲିଲି କାଲି ସକାଳୁ ମହାପ୍ରୁଙ୍କ ପାଖକୁ ।

ଅଭିବାପା ରାଗିଯାଇ କହି ପକାଇଲେ ! ହ୍ୟାପ ଶାଳୀ । କୁଆଡେ ଗୋଡ

କାଢ଼ିଛୁ ? ମନେ ରଖିଥା ଏଇ ସତ୍ୟ ସତ୍ୟ ସତ୍ୟ । ତ୍ରିବାର ସତ୍ୟ କରି ରାଣ ଦେଉଛି ତୁ ଯଦି ଏଇଠୁ କେଦାର ଆଡକୁ ପାଦେ ଆଗେଇବୁ- ମହାପ୍ରଭୁଙ୍କ ସାକ୍ଷୀ ରଖି ରାଣ ଦେଉଛି - ମୁଁ ଯଦି ତୋ ସ୍ୱାମୀ ହୋଇଥିବି, ତୋ ଇହକାଳ ପରକାଳର ଦେବତା ହୋଇଥିବି - ମୋ କଥା ସତ୍ୟ ହେବ - ତୁ ପୁଅ ମୁଣ୍ଡ ଖାଇବୁ । କେଦାରରୁ ଫେରି ନଥିବୁ, ତୋ ପୁଅ ମରିଯିବ । ମରିଯିବ । ମରିଯିବ ।

ପରିଡ଼ା ମାଉସୀ ଥ ହୋଇଗଲେ । ବଡ଼ପୁଅ ତ ଅଦିନରେ ମାରା ଯାଇଥିଲା । ସାନ ପୁଅର ରାଣ ବି ଏ ରାକ୍ଷସଟା ଦେଇଦେଲା ? ୟାପରେ କେମିତି ତମ ପାଖକୁ ଯିବି ଠାକୁରେ ? ମୁଁ ମା' ପରା । କେମିତି ଏତେ ବଡ଼ ରାଣ ଅମାନ୍ୟ କରି ଯିବି ? ପଛେ ନର୍କଗାମୀ ହେବି, ଠାକୁରେ- ମୋ ପୁଅର କିଛି ନ ହେଉ । ବଡ଼ ଦୁଃଖୀ ପିଲାଟା ସିଏ । ଏବେ ଏବେ ସଂସାର ଉଜୁଡ଼ି ଯାଇଚି । ଏତେ ଦୁଃଖ ଦେଇଛ ତାକୁ, ମୃତ୍ୟୁ ଦିଅନା ପ୍ରଭୁ । ବଂଚି ବର୍ତ୍ତି ଥାଉ । ମୁଁ ପଛେ ନଯାଏ ତମ ପାଖକୁ । ମୁଁ ପଛେ ରାକ୍ଷସଟା ପାଖରେ କଇଁଳ ହେଉଥାଏ । ମୋ ପୁଅ ବଂଚି ବର୍ତ୍ତି ଥାଉ ମହାପ୍ରଭୁ ।

ପରିଡ଼ା ମାଉସୀ ଆଖିରୁ ଲୁହ ପୋଛିଲେ । ମାଇପି ଜନମଟା ପାପୀ ଜନ୍ମ । ସ୍ତ୍ରୀ ଲୋକଙ୍କୁ ଜନ୍ମ କରି ଏମିତି ନିଷ୍ଠୁର ଖେଳଟେ ନ ଖେଳିଲେ ଚଳନ୍ତା ନାହିଁ ମହାପ୍ରଭୁ ???

---

ଦଉଡି ଖଟିଆରେ ଗଡ଼ପଡ଼ ହେଉ ହେଉ ଆଖି ଲାଗିଯାଇଥିଲା ବରୁଣଙ୍କର । ପାହାଡ ଚଢ଼ିବା ବହୁତ ଦିନରୁ ଛାଡ଼ି ଦେଇଛନ୍ତି । ସେଇ କେତେବର୍ଷ ତଳେ, ଶିଲଂରେ ବୈଶାଳୀ ସାଂଗରେ ପାହାଡ ଚଢ଼ିଥିଲେତ ? ତାଙ୍କର ମନେ ପଡ଼ିଗଲା ବୈଶାଳୀର କଥା- ଆପଣ ପାଦରେ ପାହାଡ ଚଢ଼ି ନାହାନ୍ତି, ପ୍ରେମରେ ଚଢ଼ିଛନ୍ତି ।

କାହା ପ୍ରେମରେ ଏତେ ବାଟ ଉଠି ଆସିଲେଣି ସେ ? ବୈଶାଳୀ ନାହିଁ ସାଂଗରେ । ସବିତା ବି ନାଇଁ । ପ୍ରଫେସର ମହାପାତ୍ର, ମେଜର କିମ୍ବା ଗୌରୀ କେହି ନାହିଁ । ସେଇ ଗାଉଁଲି ବୁଢ଼ୀଟା, ଯା'ର ପୁଅ ଗୋଟେ ଆଇ.ଏ.ଏସ୍ ନା ଆଇ.ପି.ଏସ୍ ଅଫିସର ସେ ବୁଢ଼ୀଟା ବି ତ ନାଇଁ । ଯେଉଁମାନେ ତାଙ୍କ ସାଂଗରେ ଯାତ୍ରା ଆରମ୍ଭ କରିଥିଲେ, ସମସ୍ତେ କିଏ କୁଆଡେ ଅଟକି ଗଲେଣି । କା' ପ୍ରେମରେ ସେ ଏତେ ବାଟ ଉଠି ଆସିଲେଣି ?

ବିଭୂପ୍ରେମ ତାଙ୍କର କେବେ ନଥିଲା । ଆଜି ବି ସେ ଏତେ ବାଟ ଉଠି ଆସିଲେଣି, ଈଶ୍ୱରଙ୍କ ପ୍ରେମରେ ନୁହଁ । କେଦାର ଅଳ୍ପ ଦୂର । କିଏ ଜଣେ କହୁଥିଲା ଆଉ ଭକ୍ତିଭାବ ସେମିତି ଜାଗୁନି ତ ? ନା ତାଙ୍କ ମନ ଅଥୟ ହେଉନି । ଗଦଗଦ ହେଉନି ।

ପ୍ରେରଣାହୀନ ଭାବରେ ତଥାପି ଆଗେଇ ଚାଲିଛନ୍ତି ତ ଫେରିବା କଥା ଭାବି ନାହାନ୍ତି ଏପର୍ଯ୍ୟନ୍ତ ।

ତାଙ୍କର ପୂର୍ବରୁ ଧାରଣା ଥିଲା ତୀଖା ଗୋଟେ ପାହାଡ ଥିବ, ସେଇଠି ପାଦଚଲା ରାସ୍ତାଟେ ଉଠି ଯାଇଥିବ ପାହାଡ ଉପରକୁ । କିନ୍ତୁ ପାହାଡ ଚଢ଼ିବାଟା ଏଠି ଅନ୍ୟ ପ୍ରକାର । ଖୁବ୍ ପ୍ରଶସ୍ତ ରାସ୍ତା ନ ହେଲେ ବି ପାଦଚଲା ରାସ୍ତାଠୁ ଯଥେଷ୍ଟ ସୁବିଧାଜନକ । ରାସ୍ତାରେ ମଝିରେ ମଝିରେ ଦୋକାନ, ବଜାର ଓ ଚଟିଘର । ବିଶ୍ରାମ କରାଯାଇ ପାରେ । ତାଙ୍କ ବସ୍‌ର ଅନ୍ୟ ଅଣ ଓଡ଼ିଆ ଯାତ୍ରୀମାନେ କିଏ କୁଆଡେ ବିଚ୍ଛିନ୍ନ ହେଇ ପଡ଼ିଲେଣି । ଗୋଟେ ହୋଟେଲ ସାମ୍ନାରେ ଦଉଡ଼ି ଖଟିଆରେ ବସୁ ବସୁ ଶୋଇ ପଡ଼ିଥିଲେ ବରୁଣ । ନା, ତାଙ୍କୁ ଉଠିବାକୁ ପଡ଼ିବ । ଆଉ ଘଣ୍ଟେ ଦେଢ଼ ଘଣ୍ଟାର ପାହାଡ଼ ଚଢ଼ିଦେଲେ, କାମଟା ସରିଯିବ ।

କାମ ସରିଯିବ ? ମନକୁ ମନ ହସିଲେ ବରୁଣ । ତାଙ୍କୁ ଯେମିତି କେହି ରାଣ ନିୟମ ପକେଇ କହିଛି, କେଦାର ଯାଅ । ଆଚ୍ଛା, ସେ କ'ଣ ପ୍ରକୃତରେ ନାସ୍ତିକ ? ବରୁଣ ଭାବିଲେ, ତାଙ୍କୁ ନା ଆସ୍ତିକ କୁହାଯିବ ନା ନାସ୍ତିକ କୁହାଯିବ । ଆସ୍ତିକ ମାନେ ଭଗବାନରେ ବିଶ୍ୱାସ କରନ୍ତି ଆଉ ନାସ୍ତିକ ମାନେ କରନ୍ତି ନାହିଁ । ବରୁଣ ଭଗବାନ ଅଛନ୍ତି କି ନାହିଁ ସେ ବିଷୟରେ ଆଦୌ କିଛି ଭାବି ନାହାନ୍ତି । କିମ୍ୱା ଭାବିବାକୁ ଫୁର୍ସତ ପାଇନାହାନ୍ତି । କିମ୍ୱା ଆଡେଇ ଯାଇଛନ୍ତି । ଏଇ ଭଳି ଲୋକମାନଙ୍କୁ ବି କ'ଣ ଗୋଟେ କହନ୍ତି ତ ଇଂରାଜୀରେ । ବରୁଣ କେଉଁଠି ପଢ଼ିଥିଲେ ତ ? କେଉଁଠି ? ମନେ ପକେଇ ପାରିଲେ ନାହିଁ ।

ବରୁଣଙ୍କର କେଦାର ନାଥ ଆସିବାର ନଥିଲା । ତା'ଠୁ ମେଜର୍ ଆସିବା ଉଚିତ ନଥିଲା କି ? ଏତେ ବାର୍ଦ୍ଧକ୍ୟ ସତ୍ତ୍ୱେ ସେ କେଦାର ନାଥର ଦ୍ୱାରରୁ ଫେରିଗଲା ଭଳି କଥା ହେଲାନି ? କେଦାରରୁ ଫେରି ଆସି ଯଦି ସେ ଶୁଣିବେ ମେଜର୍‌ର କିଛି ହେଇଯାଇଛି, ତେବେ ? ସେ ନିଜକୁ କ'ଣ କ୍ଷମା କରି ପାରିବେ ? ଏତେ ବାଟ ସାଂଗ ହେଇ ଆସି, ଏଇଠି ତାଙ୍କୁ ଛାଡ଼ି ଦେଇ ଏକା ଚାଲିଯିବାଟା କ'ଣ ଠିକ୍ ହେଲା ? ତାଙ୍କର ମନେ ପଡ଼ିଥିଲା, ଥରେ ଶୀତ ଦିନେ, ପ୍ରାତଃ ଭ୍ରମଣରେ ଗଲାବେଳେ ଝୁଣ୍ଟି ପଡ଼ିଥିଲେ ମେଜର ଯେ ଖସିପଡ଼ି ମୁଣ୍ଡ ଫାଟି ଯାଇଥିଲା । ସେତେବେଳେ ବରୁଣ ମେଜରଙ୍କଠୁ କିଛି ପାହୁଣ୍ଡ ଆଗରେ ଥା'ନ୍ତି । ଡାକ ଶୁଣି ସେ ବୁଲିପଡ଼ି ଦେଖିଲା ବେଳକୁ ମେଜର୍ ସେମିତି ଫୁଟପାଥରେ ପଡ଼ି ରହିଥାନ୍ତି । ତାଙ୍କୁ ଉଠାଉଠି କରି ଘରକୁ ଆଣିବାକୁ ପଡ଼ିଥିଲା । ଅଧିକାଂଶ ଦିନ, ମର୍ଣ୍ଣିଂ ୱାକ୍ ବେଳେ ମେଜର୍

କହୁଥିଲେ, ବରୁଣ ବାବୁ, ଟିକେ ଧିରେ ଚାଲିବେ । ଆପଣ ଭାରି ଜଲ୍‌ଦି ପାହୁଣ୍ଡ ପକାନ୍ତି ।

ଖାଲି ମେଜର୍ କାହିଁକି, ତାଙ୍କର ମନେ ହେଲା ସେ ବୋଧେ ଆଉ କେବେ ଗୌରୀକୁ ବି ଦେଖି ପାରିବେ ନାହିଁ । ଆଉ ଭେଟ ହେବକି ଜୀବନରେ ତା' ସାଂଗରେ ? କ୍ଷମା ମାଗି ନେଇଥାନ୍ତେ ବରୁଣ ତା' ପାଖରୁ, ଆଉ ଥରେ ଦେଖା ହେଲେ ପଚାରିଥା'ନ୍ତେ, କାହିଁକି ଏମିତି ଉଭାନ୍ ହେଇ ଗଲା ସେ ? ସେ କ'ଣ ତୀର୍ଥଯାତ୍ରାରେ ଚାଲିଗଲା, ନା ଜୀବନ ଯାତ୍ରାରେ ? ବରୁଣ ଜାଣନ୍ତି, ଗୌରୀ ସାଧାରଣ ଟୋକା ନଥିଲା । ଶିକ୍ଷିତ ପିଲା ଥିଲା । ହୁଏତ କିଛିଟା ତା'ର ପରିବାରର ଦାୟିତ୍ୱ ପାଇଁ, କିମ୍ବା ବେକାରୀତ୍ୱ ପାଇଁ କିମ୍ବା ମହାପାତ୍ର ଘରର ସ୍ନେହ ବନ୍ଧନରେ ବନ୍ଧା ହେଇ ରହି ଯାଇଥିଲା । କିନ୍ତୁ ସେ ଥିଲା ଉଚ୍ଛଳ ଜୀବନ ଯୌବନର ପ୍ରତୀକ । ସେଇଥିପାଇଁ କ'ଣ ରୁଦ୍ରପ୍ରୟାଗରୁ ବାଟ ଭାଙ୍ଗି ସେ ଗଙ୍ଗାର ଉତ୍ସ ଖୋଜିବା ପାଇଁ ଚାଲିଗଲା । ଆଉ ଥରେ ସ୍ରୋତସ୍ୱିନୀ ହେଇ ପ୍ରବାହିତ ହେବ ବୋଲି ? ଯିବା ପୂର୍ବରୁ ସେ ବରୁଣଙ୍କୁ କ୍ଷମା କରି ଦେଇଗଲା କି ନାହିଁ ?

ଗୌରୀ ହୁଏତ ଈଶ୍ୱର ଥିଲା । ଏଇ ମହାଯାତ୍ରାରେ ତାଙ୍କର ସହଯାତ୍ରୀ ହେଇଥିଲା, ମଣିଷମାନଙ୍କୁ ପରଖିବାକୁ । ସେମାନେ କେହି ଈଶ୍ୱରଙ୍କୁ ଚିହ୍ନି ପାରିଲେନି ଠିକ୍ ଟଲଷ୍ଟୟଙ୍କ ଗଳ୍ପ ଭଳି । ଅର୍ଦ୍ଧେକ ଯାତ୍ରାରୁ ହିଁ ନିରୁଦ୍ଦିଷ୍ଟ ହେବା ପରେ ହିଁ ଯେମିତି ବିପର୍ଯ୍ୟୟ ମାଡି ଆସିଲା । ସମସ୍ତେ ଯେମିତି ଅଲଗା ଅଲଗା ହେଇଗଲେ । ଗୋଟେ ମାଟି, ଗୋଟେ ଭାଷା, ଗୋଟେ ପାଣିପବନ, ଗୋଟେ ଇତିହାସ, ଗୋଟେ ଗୋଷ୍ଠୀମତ ମିଥ୍‌ଚେତନା ସେମାନଙ୍କୁ ବାନ୍ଧି ରଖିବା ପାଇଁ ଯଥେଷ୍ଟ ନଥିଲା । କେବଳ ଗୋଟେ କୋଡ଼ିଏ କି ବାଇଶି ବର୍ଷର ଯୁବକ ସେମାନଙ୍କୁ ବାନ୍ଧି ରଖିପାରିଥିଲା ।

ବରୁଣଙ୍କର ମନେ ପଡ଼ିଲା ପ୍ରଫେସର ମହାପାତ୍ରଙ୍କ କଥା । ବରୁଣ କେବେ ବି ପ୍ରଫେସର୍ ମହାପାତ୍ରଙ୍କୁ ଶ୍ରଦ୍ଧାର ଆଖିରେ ଦେଖି ନଥିଲେ । ପ୍ରଫେସରଙ୍କ ଡାକ୍ତରାଣୀ ସ୍ତ୍ରୀ ପ୍ରତି ଅସୂୟା ଭାବରୁ ହେଉ କିମ୍ବା ଡାକ୍ତରାଣୀ ସ୍ତ୍ରୀର ଉଦ୍ଧତ ପଣିଆକୁ ମାନି ନେଇଥିବାରୁ ହେଉ, ପ୍ରଫେସରଙ୍କ ପ୍ରତି ତା'ଙ୍କ ମନରେ ଗୋଟେ ହେୟ ଭାବ ଥିଲା । ଆଜି ଏଇ ମୁହୂର୍ତ୍ତରେ ତାଙ୍କର ମନେ ହେଲା, ନା ପ୍ରଫେସର ମହାପାତ୍ରଙ୍କ ପାଖରେ ଯେଉଁ କୋମଳ ମନଟେ ରହିଛି, ସେଇଟାର ଭାରି ଅଭାବ ବରୁଣଙ୍କ ନିଜ ଭିତରେ । ସେ କେବେ ଏତେଟା ସ୍ନିଗ୍ଧ, ଏତେଟା କୋମଳ, ଏତେଟା ସ୍ୱଚ୍ଛ ହେଇ ପାରିଲେନି ଆଜି ଯାଏଁ । କଅଁଳ ପତ୍ରର ଶୁଦ୍ଧତା ତାଙ୍କୁ ସ୍ପର୍ଶ କରି ପାରିଲାନି ତ । ଗୌରୀ ପାଇଁ

ଅଟକି ଗଲେ ମହାପାତ୍ର । ଅଥଚ ମେଢରଙ୍କ ପାଇଁ ବରୁଣ କ'ଣ ଅଟକି ଯାଇ ପାରି ନଥା'ନ୍ତେ ?

ସେଇ ଗାଉଁଲି ବୁଢ଼ାବୁଢ଼ୀ ଦିଜଣ ? ପରିଡ଼ା ଦମ୍ପତ୍ତି ? ଚିଡିଚିଡା ବୁଢ଼ାଟି ପ୍ରତି ବରୁଣଙ୍କର ଆଦୌ କେବେ ବି ସହାନୁଭୂତି ନଥିଲା । କିନ୍ତୁ କେବେ ବି ସେ ନିଜକୁ ସେଇ ଗାଉଁଲି ଲୋକଟି ଭୂମିକାରେ ଛିଡ଼ା କରେଇ ନାହାନ୍ତି । କେବେ ବି ଭାବି ନାହାନ୍ତି, ଲୋକଟି କାହିଁକି ଚିଡିଚିଡା ହେଲା ? ସେଇ ସ୍ତ୍ରୀ ଲୋକଟି ଶେଷ ପର୍ଯ୍ୟନ୍ତ ଆସି ପାରିଲାନି ଆଉ । କାହିଁକି ଆସିଲାନି ? ବୁଢ଼ାଟା ଆସିଲାନି ବୋଲି ? ଅଥଚ ସବିତାକୁ ଛାଡ଼ି ତ ବେଶ୍ ଆସି ପାରିଲେ ସେ । ସବିତାଙ୍କର ଭାରି ମନଥିଲା କେଦାରନାଥ ଆସିବାକୁ । ବରୁଣ କ'ଣ ଚାହିଁଥିଲେ, ଆଉ ଥରେ କେବେ ଯୋଜନା କରି, ତାଙ୍କୁ ଆଣି ପାରନ୍ତେ ନାଇଁ ? ସେଇ ସାଧାରଣ ସ୍ତ୍ରୀ ଲୋକଟି ଭିତରେ ଯେଉଁ ପ୍ରେମ ଟିକକ ଅଛି, ତା'ର କାଣିଚାଏ ବି ଅଛି କି ବରୁଣଙ୍କ ପାଖରେ ? ବୟସର ତାରତମ୍ୟ ଭୁଲି ଯାଇ, ନିଜ ଦେହକୁ ସମର୍ପି ଦେଇଥିବା ବୈଶାଳୀକୁ, ଅତି ଅନ୍ତରଙ୍ଗ ମୁହୂର୍ତ୍ତରେ ବି ସେ କହିଛନ୍ତି, କି 'ବୈଶାଳି, ମୁଁ ତମକୁ ଭଲପାଏ ବୋଲି ।'

ଅଥଚ ତାଙ୍କ ଭଳି ଜଣେ ଲୋକ, ଯାହା ପାଖରେ ମାୟା ମମତା ସମବେଦନା ମଣିଷ ପଣିଆ କିଛି ବି ନାହିଁ, ସେ ଆସିଗଲେ ଏତେ ବାଟ । ଆଉ ଘଣ୍ଟେ ଦେଢ଼ଘଣ୍ଟାରେ ପାହାଡ ଚଢ଼ା ପରେ ସେ ପହଞ୍ଚି ଯିବେ ବରଫାବୃତ୍ତ ଆଉ ଗୋଟେ ଦୁନିଆକୁ । ସେଠି ଏମିତି ଏକ ଜଗତ ଭେଟିବେ, ଯେଉଁ ଜଗତକୁ ସେ କେବେ ବି ଯିବାର କଳ୍ପନା କରି ନଥିଲେ । ଅଥଚ ସେଇ ଲୋକମାନେ ଅଟକି ଗଲେ ତଳରେ, ସୀତାପୁର ସହରରେ, ଯେଉଁମାନେ ଦୀର୍ଘ ଦିନରୁ ସେଇ ଜଗତକୁ ଆସିବା ପାଇଁ ଅପେକ୍ଷାରେ ଥିଲେ । ସ୍ୱପ୍ନ ଭିତରେ, କାମନା ଭିତରେ, ଦିନ ଚର୍ଯ୍ୟା ଭିତରେ ସେମାନେ ହୁଏତ ଭଗବାନଙ୍କୁ ଡାକୁଥିବେ, ଭେଟିବାର ପ୍ରାର୍ଥନା କରୁଥିବେ । କିନ୍ତୁ ବରୁଣ ତ ନିଜ ଅଜାଣତରେ ବି ସେମିତି ଆକାଂକ୍ଷାଟିଏର ବି ଅଙ୍କୁରୋଦ୍‌ଗମ କରାଇ ନାହାନ୍ତି କେବେ ।

କିଏ ଜଣେ ହିନ୍ଦୀଭାଷୀ ଲୋକ ତାଙ୍କୁ ଆସି ଉଠାଇଲେ- ବାବୁଜୀ, ଉଠନ୍ତୁ । ଆଉ ଅଳ୍ପବାଟ । ବମ୍ ବମ୍ ଭୋଲେ କହି, ଓଁ ନମୋ ଶିବାୟ ମନ୍ତ୍ର ଜପି ଉଠି ଆସନ୍ତୁ । ଦେଖୁ ଦେଖୁ ରାସ୍ତା କଟି ଯିବ । କେଦାରନାଥ ମହାପ୍ରଭୁ ଏଇ ଅଳ୍ପ ଟିକିଏ ରାସ୍ତା ପାରି କରେଇ ଦେବେ । ଉଠି ଆସନ୍ତୁ । ଆଉ ଡେରି କଲେ, ପହଞ୍ଚୁ ପହଞ୍ଚୁ ଅନ୍ଧାର ହେଇଯିବ ।

ବରୁଣ ଉଠିବାକୁ ଚେଷ୍ଟା କଲେ । ତାଙ୍କର ମନେ ହେଲା, ଦେହଟା ଭାରି ହାଲ୍‌କା ହେଇଯାଇଛି । ନା, ଏବେ ବି ଏତେ ଥକି ନାହାନ୍ତି ସେ । ମର୍ଣ୍ଣିଂୱାକ୍‌ର ଅଭିଜ୍ଞତା ଅଛି ତାଙ୍କର । ମଦ, ମାଂସ, ନାରୀ ତିନିହେଁ ଏଯାଏଁ ତାଙ୍କ ଶରୀରରେ ବାର୍ଦ୍ଧକ୍ୟ ଆସିବାକୁ ଦେଇ ନାହାନ୍ତି । ସେ ଠିକ୍ ଯାଇ ପାରିବେ । ବରୁଣ ଉଠି ବସିଲେ ଦଉଡ଼ି ଖଟିଆ ଉପରେ, ଆଖପାଖରେ ଚା' ପିଉଥିବା, ଜଳଖିଆ ଖାଉଥିବା ଲୋକମାନେ ଚାଲିବାକୁ ପ୍ରସ୍ତୁତ ହେଲେଣି । ନୂଆ ଲୋକମାନେ ଆସି ପହଞ୍ଚୁଛନ୍ତି ତଳରୁ । ତାଙ୍କୁ ଏଥର ଉଠିବାକୁ ପଡ଼ିବ ।

ଭାରି ଶୀତ ଶୀତ ଲାଗୁଛି । ଦୂରରେ ବରଫ ବିଜଡ଼ିତ ପାହାଡ଼ । ଜଣେ ପଚାରିଲା ହୋଟେଲ ବାଲାକୁ, କେଦାରରେ ବରଫ ଦେଖିବାକୁ ମିଳିବ ।

ହୋଟେଲ ବାଲାଟି କହିଲା, ଆଉ ଅଧ ଘଣ୍ଟାଏ ପରେ ଆପଣମାନେ ବରଫ ଦେଖିବା ଆରମ୍ଭ କରିଦେବେ । ସାତ ଆଠ ଦିନ ତଳେ, ଏଇ ଜାଗାରେ ବି ବରଫ ଥିଲା । ଏବେ ତ ସିଜନ୍ ଆରମ୍ଭ ହେଇଚି । ବରଫ କଟୁ କଟୁ ଆହୁରି ମାସେ ଦେଢ଼ମାସ ଲାଗିଯିବ ।

ବରୁଣ ଉତ୍‌ଫୁଲ୍ଲିତ ହେଇଥିଲେ ଟିକିଏ । ବରଫ ପାହାଡ ଦେଖିବାର ଆଗ୍ରହ ତାଙ୍କୁ ଟିକିଏ ଚଞ୍ଚଳ କରି ପକାଇଥିଲା । କିନ୍ତୁ କ'ଣ ଦେଖିବା ପାଇଁ ଆସିଥିଲେ ବରୁଣ ? ବରଫ ପାହାଡ ନା ଭଗବାନ ? ସେ କ'ଣ କିଛି ଦେଖିବାକୁ ଆସିଥିଲେ ପ୍ରକୃତରେ ? ଆଜି ସୁଦ୍ଧା କ'ଣ ସେ ଜୀବନରେ କିଛି ଲକ୍ଷ୍ୟ ରଖି ଆଗେଇଛନ୍ତି ? ତାଙ୍କର ମନେ ହେଲା, ସେ ଆଜି ସୁଦ୍ଧା ଭୁଲ ଭାବରେ ଜୀବନ ଜୀଇଁ ଆସିଛନ୍ତି । କେମିତି ହେବା କଥାଥିଲା ତାଙ୍କର ? ମେଜରଙ୍କ ଭଳି କିଛିଟା ସାହସ, କିଛିଟା ଜୀବନୀ ଶକ୍ତି, ପ୍ରଫେସର ମହାପାତ୍ରଙ୍କ ଭଳି କିଛିଟା ପ୍ରେମ ଓ ସହନଶୀଳତା ଭରା ମନ, ଗୌରୀ ଭଳି କିଛିଟା କୋମଳତା । ଏ ସବୁ ତାଙ୍କର ପୂର୍ବରୁ ସଂଗ୍ରହ କରି ନେବାର ଥିଲା । ଏବେ କ'ଣ ସେ ଫେରିଯିବେ ଆଉଥରେ ତଳକୁ ? ପୁଣି ନୂଆ କରି ଜୀବନ ଆରମ୍ଭ କରିବେ ? ସମୁଦ୍ର ପତନରୁ ଆରମ୍ଭ କରିବେ ଯାତ୍ରା ଯେ ପାହାଡର ଚୂଡାରେ ଶେଷ ହେବ ? ଏଥର ସେ ନିଶ୍ଚେ ତାଙ୍କ ସାଂଗରେ ପ୍ରେମ, କୋମଳତା, ସ୍ନିଗ୍ଧତା, ଆସ୍ଥା, ବିଶ୍ୱାସ, ସୌନ୍ଦର୍ଯ୍ୟ ବୋଧ, ଜୀବନ ବୋଧର ବେଦମନ୍ତ୍ର ଶିଖି ନେଇ ଆସିବେ । ସମୁଦ୍ର ପତନରୁ ଆସିବା ବେଳେ ସବିତାକୁ, ବୈଶାଳୀକୁ, ଗୌରୀକୁ, ମେଜରଙ୍କୁ ଓ ପ୍ରଫେସର ମହାପାତ୍ରଙ୍କୁ ପୁଣି ଥରେ କହି ଆସିବେ । ମୁଁ ତମ ମାନଙ୍କୁ ନିବିଡ଼ ଭାବରେ ଭଲପାଏ ବୋଲି । କହିବେ, ତମେ

ମାନେ ଅଛ ବୋଲି ତ ମୁଁ ଅଛି । ତମେ ମାନେ ନଥିଲେ, ମୁଁ ଆଉ କେଉଁଠି ଥା'ନ୍ତି ।

ସେ କ'ଣ ଫେରିଯିବେ ତଳକୁ ? ପୁଣି ସେଇ ମସିଆଁ କାନ୍ଥର, ଅନ୍ଧାରୁଆ କୋଠାଘରର ଚାଳିଶ ୱାଟ ବଲ୍ବ ପାଖରେ ମୁଣ୍ଡ ଗୁଞ୍ଜି ବସି ଭଂଗା ଭଂଗା ପାଇକା ଓ ଇଂଲିଷବଡିର ଅକ୍ଷର ଖଞ୍ଜୁଥିବା କଂପୋଜିଟର ପାଖରୁ ଆରମ୍ଭ କରିବେ ଜୀବନ ? ସେଇ ସମୟରୁ ସେ ଛାତି ଭିତରେ, ସୂର୍ଯ୍ୟୋଦୟ ଭିତରେ, ଧଳା ଧଳା ପାରଦଶ୍ରୀ ବରଫ ଟପୋଣରେ ଲାଲ୍ ଲାଲ୍ କିରଣର ପ୍ରତିବିମ୍ବିତ ଛାଇରେ ଖୋଜିବାକୁ ଚାହିଁବେ ବଂଚିରହିବାର ସାର୍ଥକତା । ସମୁଦ୍ର ପତନରୁ ହିଁ ଭଗବାନଙ୍କୁ ଭଲ ପାଇବାର ଚେଷ୍ଟା କରିବେ ଓ କେଦାର ନାଥର ମନ୍ଦିର ଭିତରକୁ ପଶିଯାଇ କହିବେ ମୋର ଯାତ୍ରା ଶେଷ ହେଲା ହେ ପ୍ରଭୁ, ଏବେ ମୋତେ ମୁକ୍ତି ଦିଅ ।

ଚାଳିଶି ବର୍ଷ ତଳେ ଥରେ ଋଷିକେଶକୁ ପଳେଇ ଆସିଥିଲେ । କିନ୍ତୁ ସେଠାରେ ରହି ପାରିଲେନି । ବିନା ଉପଲବ୍ଧିରେ ହିଁ ଫେରିଗଲେ । ଏଥର ବି କେଦାରନାଥ ପାଖରୁ ଫେରି ଯିବେ, ଶିବ ଦର୍ଶନ ନକରି ? ନା, ଏଥର ସେ ଆଉ ପୂର୍ବର ଭୁଲ ହେବା ପାଇଁ ଦେବେନି । ହୁଏତ ସେ ଫେରିଗଲେ ବି ଜୀବନ ବଦଳି ଯିବନି । ତାଠାରୁ ଭଲ ଆଗକୁ ଯିବା । କେଦାରନାଥରେ ପହଞ୍ଚି ସେ ଖୋଜିବେ ଯୁଗ ଯୁଗରୁ ଚାଲି ଆସିଥିବା ସେଇ ସନାତନୀ ଆସ୍ଥା ଓ ବିଶ୍ୱାସକୁ, ଯାହା ଉପରେ ନିର୍ଭର କରି କେଉଁ ଯୁଗ ଯୁଗାନ୍ତରରୁ ମଣିଷ ମାନେ ଧାଉଁଛନ୍ତି ବରଫାବୃତ୍ତ ପାହାଡ ଆଡ଼କୁ । କ'ଣ ଖୋଜିବା ପାଇଁ ଧାଇଁ ଥାନ୍ତି ସେମାନେ ? ଈଶ୍ୱର ନା ଶାନ୍ତି ? କିମ୍ବା ମୋକ୍ଷ ? କିମ୍ବା ଜୀବନ୍ମୁକ୍ତି ?

ମନେ ପଡ଼ିଗଲା ମୌନି ବାବାଙ୍କ କଥା । ଆଉ କୌଣସି ପ୍ରାଣୀ ଯୋନିରେ ଜନ୍ମ ନ ନେବାଟାହିଁ ପରା ମୋକ୍ଷ ? ବରୁଣ ପଢ଼ିଛନ୍ତି, ଅକ୍ସିଜେନ, ହାଇଡ୍ରୋଜେନ୍, ନାଇଟ୍ରୋଜେନ୍ ଓ କାର୍ବନ ଭଳି ଚାରୋଟି ମୌଳ ବସ୍ତୁମାନଙ୍କର ସମ୍ମିଶ୍ରଣରୁ ହିଁ ଜୀବନ ପ୍ରକ୍ରିୟା ଆରମ୍ଭ ହେଇଚି । ଅଥଚ ସେ ବିଷୟରେ ବି ସେ ଭାବିବାର ଫୁରସତ ପାଇ ନାହାନ୍ତି । ଆତ୍ମା ଫାତ୍ମା, ଇହଜନ୍ମ ପରଜନ୍ମ ବିଷୟରେ ବି ତାଙ୍କର କୌଣସି ମତାମତ ନାହିଁ । ତେବେ, ମୋକ୍ଷ ଅଛି କି ପ୍ରକୃତରେ ? ଥିଲେ ଚାହାନ୍ତି କି ବରୁଣ ? ବୋଧେ ନା । ତାଙ୍କର ଯଦି କେହି ସାକ୍ଷାତ୍କାର ନିଅନ୍ତା ଓ ପଚାରନ୍ତା, ଆଗାମୀ ଜନ୍ମରେ କ'ଣ ହେବା ପାଇଁ ଚାହାନ୍ତି ଆପଣ, ତେବେ ବିନା ଚିନ୍ତାରେ ସେ କହନ୍ତେ, ମଣିଷଟିଏ ହେଇ ଜନ୍ମ ହେବାକୁ ଚାହିଁବି ।

ସେ ଟଳମଳ ପାଦରେ ଠିଆ ହେଲେ । ପାଦ ଦିଟାରୁ ଜୀବନ ଛାଡ଼ି ଛାଡ଼ି ଆସୁଛି

ଯେମିତି । ନିଃଶ୍ୱାସ ନେବାକୁ କଷ୍ଟ ହେଉଚି । ଥଣ୍ଡାରେ ଦାନ୍ତ ଠକ୍ ଠକ୍ ହେଇ ବାଜୁଛି । ଯିବାକୁ ହେବ । କିନ୍ତୁ କୁଆଡ଼େ ଯିବେ ସେ ? ତଳର ସମୁଦ୍ର ପତ୍ତନ ଆଡ଼କୁ ନା ଉପରର ପାହାଡ ଚୂଡା ଆଡ଼କୁ ??

